ପଣ୍ଡିତ ମୃତ୍ୟୁଞ୍ଜୟ ରଥ କୃତ

# ବ୍ରହ୍ମଙ୍କ ମଧୁସୂଦନ



ସମ୍ପାଦନା

ଡଃ. ମହେଶ୍ୱର ମହାନ୍ତି

ସ୍ମରଣ କୁମାର ନାୟକ

ପଣ୍ଡିତ ମୃତ୍ୟୁଞ୍ଜୟ ରଥ କୃତ

# ବ୍ରହ୍ମଙ୍କ ମଧୁସୂଦନ

(ଭକ୍ତକବି ମଧୁସୂଦନ ରାଓଙ୍କର ସମ୍ପୂର୍ଣ୍ଣ ଜୀବନଚରିତ)

ସମ୍ପାଦନା

ଡକ୍ଟର ମହେଶ୍ୱର ମହାନ୍ତି

ସ୍ମରଣ କୁମାର ନାୟକ



**ବ୍ରହ୍ମଜ୍ଞ ମଧୁସୂଦନ**
**Brahmagyan Madhusudan**

ସମ୍ପାଦନା : ଡକ୍ଟର ମହେଶ୍ୱର ମହାନ୍ତି, ସ୍ମରଣ କୁମାର ନାୟକ
Edited by : Dr. Maheswar Mohanty, Smaran Kumar Nayak



ପ୍ରକାଶକ : ସହଦେବ ପ୍ରଧାନ
ଫ୍ରେଣ୍ଡସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ
Publisher : Sahadev Pradhan
*Friends' Publishers,* Binodbehari,
Cuttack-753 002, Orissa (India)

ପ୍ରଥମ ସଂସ୍କରଣ : ୨୦୦୫
First Edition : 2005

ପ୍ରଚ୍ଛଦ : ଅସିତ୍ ମୁଖାର୍ଜୀ
Artist : Asit Mukherjee

ଅକ୍ଷରସଜ୍ଜା : ୟୁନିଟେକ୍, କଟକ
Typeset : Unitech, Cuttack

ମୁଦ୍ରଣ : କାଳିଆ ପ୍ରିଣ୍ଟର୍ସ, କଟକ
Printer : Kalia Printers, Cuttack

ISBN 81-7401-557-4

Price : **Rs. 95**

# ସୂଚୀପତ୍ର





## 'ଉତ୍କଳ ସାହିତ୍ୟ'ରେ 'ବ୍ରହ୍ମାଙ୍କ ମଧୁସୂଦନ'ର ପ୍ରକାଶନ ସମୟ ।

୧. ପ୍ରଥମ ଭାଗ - ଉତ୍କଳ ସାହିତ୍ୟ—ଷୋଡ଼ଶ ବର୍ଷ, ଦଶମ ସଂଖ୍ୟା,
ପୃ- ୩୦୪-୩୧୨

୨. ଦ୍ୱିତୀୟ ଭାଗ - ଉତ୍କଳ ସାହିତ୍ୟ—ଷୋଡ଼ଶ ବର୍ଷ, ଏକାଦଶ ସଂଖ୍ୟା,
ପୃ- ୩୧୩-୩୧୯

୩. ତୃତୀୟ ଭାଗ - ଉତ୍କଳ ସାହିତ୍ୟ—ସପ୍ତଦଶ ବର୍ଷ, ପ୍ରଥମ ସଂଖ୍ୟା,
ପୃ- ୧୯-୨୫

୪. ଚତୁର୍ଥ ଭାଗ - ଉତ୍କଳ ସାହିତ୍ୟ—ସପ୍ତଦଶ ବର୍ଷ, ତୃତୀୟ ସଂଖ୍ୟା,
ପୃ- ୮୪-୯୦

୫. ପଞ୍ଚମ ଭାଗ - ଉତ୍କଳ ସାହିତ୍ୟ—ସପ୍ତଦଶ ବର୍ଷ, ପଞ୍ଚମ ସଂଖ୍ୟା,
ପୃ- ୧୫୦-୧୫୭

୬. ଷଷ୍ଠ ଭାଗ - ଉତ୍କଳ ସାହିତ୍ୟ—ସପ୍ତଦଶ ବର୍ଷ, ଷଷ୍ଠ ସଂଖ୍ୟା,
ପୃ- ୧୮୫-୧୮୮

୭. ସପ୍ତମ ଭାଗ - ଉତ୍କଳ ସାହିତ୍ୟ—ସପ୍ତଦଶ ବର୍ଷ, ଅଷ୍ଟମ ସଂଖ୍ୟା,
ପୃ-୨୫୭-୨୬୦

୮. ଅଷ୍ଟମ ଭାଗ - ଉତ୍କଳ ସାହିତ୍ୟ—ସପ୍ତଦଶ ବର୍ଷ, ନବମ ଓ ଦଶମ ସଂଖ୍ୟା,
ପୃ- ୩୭୦-୩୭୨

୯. ନବମ ଭାଗ - ଉତ୍କଳ ସାହିତ୍ୟ—ଅଷ୍ଟାଦଶ ବର୍ଷ, ପ୍ରଥମ ସଂଖ୍ୟା,
ପୃ- ୬-୧୪

୧୦. ଦଶମ ଭାଗ - ଉତ୍କଳ ସାହିତ୍ୟ—ଅଷ୍ଟାଦଶ ବର୍ଷ, ଦ୍ୱିତୀୟ ସଂଖ୍ୟା,
ପୃ- ୯୧-୯୫

୧୧. ଏକାଦଶ ଭାଗ - ଉତ୍କଳ ସାହିତ୍ୟ—ଅଷ୍ଟାଦଶ ବର୍ଷ, ପଞ୍ଚମ ସଂଖ୍ୟା,
ପୃ- ୨୩୭-୨୪୩

୧୨. ଦ୍ୱାଦଶ ଭାଗ - ଉତ୍କଳ ସାହିତ୍ୟ—ଅଷ୍ଟାଦଶ ବର୍ଷ, ଷଷ୍ଠ ସଂଖ୍ୟା,
ପୃ- ୨୮୬-୨୯୧

୧୩. ତ୍ରୟୋଦଶ ଭାଗ - ଉତ୍କଳ ସାହିତ୍ୟ—ଅଷ୍ଟାଦଶ ବର୍ଷ, ଅଷ୍ଟମ ସଂଖ୍ୟା,
ପୃ- ୩୬୯-୩୭୪

୧୪. ଚତୁର୍ଦ୍ଦଶ ଭାଗ - ଉତ୍କଳ ସାହିତ୍ୟ—ଅଷ୍ଟାଦଶ ବର୍ଷ, ଦ୍ୱାଦଶ ସଂଖ୍ୟା,
ପୃ- ୫୦୨-୫୦୭



# ସୂଚନା

ଭକ୍ତକବି ମଧୁସୂଦନଙ୍କ ସାରସ୍ୱତ କୃତିଗୁଡ଼ିକ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଯେତିକି ମୂଲ୍ୟବାନ୍, ତାଙ୍କ ଜୀବନଚରିତ ହେଉଛି ତତୋଧିକ ମହାର୍ଘ ଓ ମହନୀୟ । କାରଣ କାୟ ମନୋବାକ୍ୟରେ ସେ ଥିଲେ ଜଣେ ଆଦର୍ଶ ମଣିଷ, ସାଧୁ, ସତ୍ୟନିଷ୍ଠ, କର୍ତ୍ତବ୍ୟପରାୟଣ ତଥା ସାତ୍ତ୍ୱିକ ଭାବାପନ୍ନ, ସ୍ନେହଶୀଳ ପରମାର୍ଥୀ ପୁରୁଷ । ମୃତ୍ୟୁପରେ ତାଙ୍କର ସ୍ମୃତିଚାରଣ କରିବାକୁ ଯାଇ ପଣ୍ଡିତ ନୀଳକଣ୍ଠ ଦାସ ଯଥାର୍ଥରେ କହିଥିଲେ– ''ଉତ୍କଳର ସାହିତ୍ୟ ପିତା ମଧୁସୂଦନ ସାହିତ୍ୟପାଇଁ ଯେତେ ବଡ଼ ଥିଲେ, ଚରିତ୍ର, ମନୁଷ୍ୟତା, ଉନ୍ମୁକ୍ତତା, ଧର୍ମବିଶ୍ୱାସ, ସତ୍ୟ ସ୍ପୃହା, ନିଷ୍ଠାର ଗାରିମା ଓ ପବିତ୍ରତା ପ୍ରଭୃତିରେ ତାଠାରୁ ଅନେକ ବଡ଼ ଥିଲେ ।''

ବଙ୍ଗସାହିତ୍ୟର ଜଣେ ସୁପରିଚିତ ବ୍ୟକ୍ତିତ୍ୱ ସ୍ୱର୍ଗତ ଦ୍ୱିଜେନ୍ଦ୍ରଲାଲ ରାୟ ମଧୁସୂଦନଙ୍କ ଚରିତ୍ରର ମାହାତ୍ମ୍ୟ ତଥା ଆଧ୍ୟାତ୍ମିକତା ଦେଖି କହିଥିଲେ ''ସେ ହେଉଛନ୍ତି ବ୍ରାହ୍ମସମାଜରେ ଦ୍ୱିତୀୟ ରାମତନୁ ଲାହିଡ଼ି ।'' ସେଇଭଳି ବଙ୍ଗଳାର ପ୍ରଖ୍ୟାତ ବ୍ରାହ୍ମନେତା ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କର ପିତା ପଣ୍ଡିତ ହରାନନ୍ଦ, ମଧୁସୂଦନଙ୍କୁ 'ଉତ୍କଳର ବିଦ୍ୟାସାଗର' ବୋଲି କହିଥିଲେ । ଏହା କମ୍ ଗୌରବର କଥା ନୁହେଁ । ବଙ୍ଗଳା ଭାଷାରେ ଭକ୍ତକବିଙ୍କ ଜୀବନୀ ଲେଖିକା ତାହାଙ୍କର ଦ୍ୱିତୀୟା କନ୍ୟା ଅବନ୍ତୀ ଦେବୀ ନିଜ ଶ୍ୱଶୁର ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ସଂପର୍କରେ ଯାହା କହିଥିଲେ, ''ଜ୍ଞାନେ ଗଭୀରତା, ପ୍ରେମେ ବିଶାଳତା, ଚରିତ୍ରେ ସଂଯମ, କର୍ତ୍ତବ୍ୟ ଦୃଢ଼ତା, ମାନବେ ପ୍ରେମ ଓ ଭଗବାନେ ଭକ୍ତି''– ତାହା ଅଧିକତର ଭାବେ ନିଜ ପିତା ମଧୁସୂଦନଙ୍କ ପ୍ରତି ପ୍ରଯୋଜ୍ୟ । ଅବନ୍ତୀ ଦେବୀ ସେହି ପୁସ୍ତକର ଉତ୍ସର୍ଗପତ୍ରରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାକୁ ଯାଇ ଲେଖିଛନ୍ତି– ''ଯାହାଙ୍କର ଅମୂଲ୍ୟ ଜୀବନର ମହତ ଦୃଷ୍ଟାନ୍ତ ଜନ୍ମଭୂମି ଉତ୍କଳରେ ନବଯୁଗ ଆନୟନରେ ବିଶେଷ କାର୍ଯ୍ୟକର ହୋଇଥିଲା, ଯାହାଙ୍କର ଜୀବନରେ ଭଗବଦ୍‌ଭକ୍ତିର ଅପୂର୍ବ ବିକାଶ ଦେଖି ଉତ୍କଳବାସୀ ଯାହାଙ୍କୁ ଏକ ବାକ୍ୟରେ 'ଭକ୍ତକବି' ନାମରେ ଆଖ୍ୟାତ କରିଅଛନ୍ତି, ଯାହାଙ୍କର ବାଣୀରେ, ଆଚରଣରେ ଓ ସମଗ୍ର ଜୀବନରେ ଭୂମା ଓ ଭୁବନେଶ୍ୱରର ଅପୂର୍ବ ମହିମା ଉଜ୍ଜ୍ୱଳ ରୂପେ ପ୍ରକାଶିତ...'' ଇତ୍ୟାଦି । ପ୍ରକୃତରେ ମଧୁସୂଦନଙ୍କର ସାରସ୍ୱତ ଜୀବନ ଅପେକ୍ଷା ବ୍ୟକ୍ତିଗତ ଜୀବନର ଆଦର୍ଶ ଅଧିକ ଉଜ୍ଜ୍ୱଳ ଅଟେ । ସାହିତ୍ୟ ଜଗତରେ ସେ ଯେଉଁଳି ସତ୍ୟ, ଶିବ, ସୁନ୍ଦରର ଉପାସକ ଥିଲେ, ବ୍ୟକ୍ତିଗତ ଜୀବନରେ ମଧ୍ୟ ସେହି ଆଦର୍ଶକୁ ନିଜର ବ୍ରତ ରୂପେ ଗ୍ରହଣ କରିନେଇଥିଲେ ।

ମଧୁସୂଦନ ତାହାଙ୍କର ଆତ୍ମଜୀବନୀ ଲେଖିନାହାନ୍ତି । ଆତ୍ମଜୀବନୀ ଲେଖିବାର ଏକ ଅଭିଳାଷ ଥିଲା ବୋଲି କବିଙ୍କର ପୁତ୍ର ସୁକାନ୍ତ ରାଓ ସୂଚନା ଦେଇଥିଲେ; ମାତ୍ର ଅକାଳ ବିୟୋଗ ଯୋଗୁଁ ସେ ଅଭିଳାଷ ଚରିତାର୍ଥ ହୋଇପାରିଲା ନାହିଁ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଥିଲେ କବିଙ୍କର ଅତ୍ୟନ୍ତ ପ୍ରିୟ ତଥା ଅନୁଗତ ଛାତ୍ର । ମଧୁସୂଦନଙ୍କ ପରଲୋକ ପରେ ସେ ମାସିକ 'ଉତ୍କଳ ସାହିତ୍ୟ' ପତ୍ରିକାରେ 'ବ୍ରହ୍ମଜ୍ଞ ମଧୁସୂଦନ' ଶିରୋନାମାରେ ଧାରାବାହିକ ଭାବେ ତାଙ୍କ ଜୀବନୀ ଲେଖି ପ୍ରକାଶ କରିଥିଲେ । ଏହା ଏକ ମହତ କାର୍ଯ୍ୟ । କାରଣ ତାହା ହୋଇ ନ ଥିଲେ କବିଙ୍କର ବ୍ୟକ୍ତିଗତ ଜୀବନର ବହୁ କାହାଣୀ ହୁଏତ ସବୁଦିନ ପାଇଁ ଅନ୍ଧକାରରେ ରହିଯାଇଥାଆନ୍ତା । କନ୍ୟା ଅବନ୍ତୀ ଦେବୀଙ୍କ ସମେତ ପରବର୍ତ୍ତୀ କାଳରେ ଅନ୍ୟ ଯେଉଁମାନେ ଭକ୍ତକବିଙ୍କ ଜୀବନୀ ଲେଖାରେ ପ୍ରବୃତ୍ତ ହୋଇଛନ୍ତି, ବସ୍ତୁତଃ ସେମାନେ ସମସ୍ତେ ମୃତ୍ୟୁଞ୍ଜୟଙ୍କ ଲିଖିତ ଜୀବନୀକୁ ଉପଜୀବ୍ୟ ଭାବରେ ଗ୍ରହଣ କରିଛନ୍ତି ।

'ବ୍ରହ୍ମଜ୍ଞ ମଧୁସୂଦନ' ରଚନାଟି ଓଡ଼ିଆ ସାହିତ୍ୟ ଜଗତରେ ଏକ ମହାର୍ଘ ସଂପଦ । ମଧୁସୂଦନଙ୍କ ମୃତ୍ୟୁପରେ 'ଉତ୍କଳ ସାହିତ୍ୟ' ପୃଷ୍ଠାରେ ଏଇଟି ପ୍ରକାଶିତ ହେବାର ପ୍ରାୟ ୮୦ ବର୍ଷ ଅତିକ୍ରାନ୍ତ ହୋଇଯାଇଥିଲେ ମଧ ଏହାର ପୁନରୁଦ୍ଧାର କରାଯାଇପାରି ନ ଥିଲା । ମୁଁ କଟକ ଖ୍ରୀଷ୍ଟ କଲେଜର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଥିବାବେଳେ ଏଇ ଉପାଦେୟ ରଚନାଟିକୁ ଜଣେ ପୁରାତନ ଛାତ୍ରଙ୍କ ସାହାଯ୍ୟରେ 'ଉତ୍କଳ ସାହିତ୍ୟ'ର ଜୀର୍ଣ୍ଣ ପୃଷ୍ଠାରୁ ଉଦ୍ଧାର କରି କଲେଜର ବିଭାଗୀୟ ବାର୍ଷିକ ମୁଖପତ୍ର 'ସୃଷ୍ଟି ଓ ସମୀକ୍ଷା' (୧୯୯୭-୯୮)ରେ ପ୍ରକାଶ କରିଥିଲି । ମୂଳ ପୃଷ୍ଠାର ଜୀର୍ଣ୍ଣତା ଓ ପାଠୋଦ୍ଧାର ବେଳେ ଜେରକ୍ସ କପିର ଅସ୍ପଷ୍ଟତା କାରଣରୁ କେତେକ ସ୍ଥାନରେ ଅବଶ୍ୟ କିଛି କିଛି ପାଠ୍ୟ ବାଦ୍ ଦେବାକୁ ହୋଇଥିଲା । ଏବେ କଳିଙ୍ଗ ଗବେଷଣା ଏକାଡେମୀ ପକ୍ଷରୁ ମୋର ଛାତ୍ର ଶ୍ରଦ୍ଧେୟ ସ୍ମରଣ କୁମାର ନାୟକଙ୍କ ଆଗ୍ରହ ଓ ଉଦ୍ୟମ ଯୋଗେ ଏଇଟି ଏକ ପୁସ୍ତକ ଆକାରରେ ପ୍ରକାଶ ପାଉଛି । ସେ ପୁନରାୟ ମୂଳ କପିଟିଏ ସଂଗ୍ରହ କରି ଏବଂ ବହୁ ଶ୍ରମ ସ୍ୱୀକାର କରି ପ୍ରକାଶକଙ୍କ ସହାୟତାରେ ଏଇଟିକୁ ପୂର୍ଣ୍ଣାଙ୍ଗ ରୂପରେ ପ୍ରକାଶ କରୁଥିବାରୁ ସମସ୍ତଙ୍କର ଧନ୍ୟବାଦର ପାତ୍ର । ଏହି ପୁସ୍ତକରେ ପ୍ରଦତ୍ତ ଭକ୍ତକବିଙ୍କର ପିତା ଭାଗୀରଥି ରାଓ ଏବଂ ଅନୁଜ ଜଗନ୍ନାଥ ରାଓଙ୍କ ସହିତ ଅନ୍ୟ କେତେକ ଫଟୋ ପାଇଁ ଆମେ ଅବନ୍ତୀ ଦେବୀଙ୍କ ରଚିତ 'ଭକ୍ତକବି ମଧୁସୂଦନ ଓ ଉତ୍କଳେ ନବଯୁଗ' ପୁସ୍ତକର ସହାୟତା ନେଇଛୁ । ସେହି ପୁସ୍ତକର ପ୍ରକାଶକଙ୍କ ନିକଟରେ ଆମେ କୃତଜ୍ଞ ।

ତା ୧.୧.୨୦୦୫

**ମହେଶ୍ୱର ମହାନ୍ତି**
ଗବେଷଣା ନିର୍ଦ୍ଦେଶକ
କଳିଙ୍ଗ ଗବେଷଣା ଏକାଡ଼େମୀ

# ମୁଖବନ୍ଧ

## (୧)

ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କର ଜନ୍ମ ୧୮୮୨ ମସିହା ମେ ମାସ ୧୪ ତାରିଖରେ ଓ ତିରୋଧାନ ୧୯୨୪ ମସିହା ଏପ୍ରିଲ ୧୦ ତାରିଖରେ । ମାତ୍ର ୪୧ବର୍ଷ ୧୦ମାସ ୧୬ଦିନ ଜୀବିତ ଥିଲେ । ଓଡ଼ିଆ ସାହିତ୍ୟର ଅନାଲୋଚିତ ସାରସ୍ୱତ ସାଧକମାନଙ୍କ ମଧ୍ୟରୁ ସେ ଜଣେ । ତାଙ୍କର ମୃତ୍ୟୁପରେ କେତୋଟି ମାତ୍ର ସ୍ମୃତିଚାରଣ, ଗୋଟିଏ ଜୀବନୀ ପ୍ରକାଶିତ ହୋଇଥିବାବେଳେ ପରବର୍ତ୍ତୀ ସମୟରେ ଡକ୍ଟର ନଟବର ସାମନ୍ତରାୟ 'ଓଡ଼ିଆ ସାହିତ୍ୟରେ ପଣ୍ଡିତ ମୃତ୍ୟୁଞ୍ଜୟ' ଓ ଅଧ୍ୟାପକ ଡକ୍ଟର ଗୋପାଳଚନ୍ଦ୍ର ମିଶ୍ର 'ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଜୀବନୀ' ଲେଖିଥିଲେ ।

ଅଧ୍ୟାପକ ସାମନ୍ତରାୟଙ୍କର ପ୍ରବନ୍ଧଟି ଗବେଷଣାତ୍ମକ ଦୃଷ୍ଟିଭଙ୍ଗୀରୁ ଲିଖିତ ହୋଇଥିବାବେଳେ ଅଧ୍ୟାପକ ମିଶ୍ରଙ୍କର ପୁସ୍ତକଟି କୁଳମଣି ଦାଶ ଲେଖିଥିବା ''ସ୍ୱର୍ଗତଃ ମୃତ୍ୟୁଞ୍ଜୟ'' ପ୍ରବନ୍ଧର ସାମାନ୍ୟ ପରିବର୍ତ୍ତିତ ପ୍ରତିଲିପି ମାତ୍ର ।

ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟଙ୍କର ପ୍ରବନ୍ଧଟି ୧୯୭୫ ମସିହା ଅକ୍ଟୋବର ମାସରେ ପ୍ରକାଶ ପାଏ । ପଣ୍ଡିତ ରଥଙ୍କ ସାରସ୍ୱତ କୃତିକୁ ନେଇ ଅଧ୍ୟାପକ ସାମନ୍ତରାୟଙ୍କ ପୂର୍ବରୁ ଏ ପ୍ରକାର ଆଲୋଚନା ହୋଇଥିବାର ମନେହୁଏ ନାହିଁ ।

ପଣ୍ଡିତ ରଥ ଏକାଧାରରେ ଥିଲେ ଜଣେ ପାଠ୍ୟପୁସ୍ତକ ପ୍ରଣେତା, ଜୀବନଚରିତକାର, ପ୍ରତ୍ନତତ୍ତ୍ୱବିତ୍, ଅନୁବାଦକ, ଗବେଷକ, କବି, ଭ୍ରମଣକାର, ଭାଷାବିଜ୍ଞାନୀ, ପ୍ରାବନ୍ଧିକ, ସଂସ୍କୃତ ସାହିତ୍ୟବିତ୍ ଓ ଔପନ୍ୟାସିକ । ରାଶି ରାଶି ମୂଲ୍ୟବାନ ରଚନା ଦ୍ୱାରା ଓଡ଼ିଆ ସାହିତ୍ୟକୁ ସେ ସମୃଦ୍ଧ କରିଯାଇଅଛନ୍ତି । (୧) ତାଙ୍କ ଲିଖିତ ସବୁଠାରୁ ଦୀର୍ଘ ଜୀବନଚରିତଗୁଡ଼ିକ ମଧ୍ୟରେ ଆଦିକବି ସାରଳାଦାସ (ମୁକୁର ୫/୧ରୁ ୫/୫), ବ୍ରହ୍ମର୍ଷି ମଧୁସୂଦନ (ଉତ୍କଳ ସାହିତ୍ୟ ୧୬/୯ରୁ ୧୮/୧୨), ଅଭିମନ୍ୟୁ

---

୧ । କଳିଙ୍ଗ ଗବେଷଣା ଏକାଡ଼େମୀ ପକ୍ଷରୁ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କର ସମସ୍ତ ସାରସ୍ୱତ ସୃଷ୍ଟି'ର ସାରଣୀ ଓ ଏହାର ପ୍ରକାଶ ସମୟ ସମ୍ପାଦିତ ହୋଇ 'ସୃଷ୍ଟି ସଂଗ୍ରହ' ନାମରେ ପ୍ରକାଶ ପାଇଛି । (ସଂ.)

ସାମନ୍ତସିଂହାର (ଉତ୍କଳ ସାହିତ୍ୟ ୧୮/୧ରୁ/୧୮/୮) ଓ କର୍ମବୀର ଗୌରୀଶଙ୍କର (୧୯/୯ ରୁ କ୍ରମଶଃ ପ୍ରକାଶିତ) ପ୍ରଧାନ । ଏତଦ୍‌ବ୍ୟତୀତ ସାମନ୍ତ ଚନ୍ଦ୍ରଶେଖର (ଉତ୍କଳ ସାହିତ୍ୟ ୬/୧୦), କବି ରାଧାନାଥ (ମୁକୁର ୩/୯), ଅଚ୍ୟୁତାନନ୍ଦ ଦାସ (ଉତ୍କଳ ସାହିତ୍ୟ ୧୩/୬), କବିବର ରାଧାନାଥ (ମୁକୁର ୪/୧୨), ମଧୁସୂଦନ ରାଓ (ଗ୍ରନ୍ଥାବଳୀର ମୁଖବନ୍ଧ-୧.୧୧.୧୯୧୫), ଦୀନକୃଷ୍ଣ ଦାସ (ଉତ୍କଳ ସାହିତ୍ୟ ୨୨/୧୨), ରାଧାନାଥ ସ୍ମୃତି (ଉତ୍କଳ ସାହିତ୍ୟ ୨୪/୧), ଅରକ୍ଷିତ ଦାସ ଓ ମହୀମଣ୍ଡଳଗୀତାରେ (ଉତ୍କଳ ସାହିତ୍ୟ ୨୪/୪,୬) ଅରକ୍ଷିତ ଦାସଙ୍କ ଜୀବନୀ, ରାଧାନାଥ ସ୍ମୃତି (ଉତ୍କଳ ସାହିତ୍ୟ ୨୫/୨୩), ବଳରାମ ଦାସ ଓ ବ୍ରହ୍ମାଣ୍ଡ ଭୂଗୋଳରେ (ଉତ୍କଳ ସାହିତ୍ୟ ୨୬/୩) ବଳରାମ ଦାସଙ୍କ ଜୀବନୀ ବିଭିନ୍ନ ସମୟରେ ପ୍ରକାଶିତ ।

(୨)

ପଣ୍ଡିତ କୁଳମଣି ଦାଶ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମୃତ୍ୟୁ ପରେ 'ଉତ୍କଳ ସାହିତ୍ୟ' (୨୮/୧)ରେ 'ସ୍ୱର୍ଗତ ମୃତ୍ୟୁଞ୍ଜୟ' ନାମରେ ପଣ୍ଡିତ ରଥଙ୍କର ଜୀବନଚରିତ ଲେଖିଥିଲେ । ପାଠକମାନଙ୍କର ଅବଗତି ନିମନ୍ତେ ସେହି ଜୀବନଚରିତଟି ଏଠାରେ ପ୍ରଦାନ କରାଗଲା –

*"ଆହା, କରାଳ କାଳର କ୍ରୂର କବଳରେ କେତେ କେତେ ମହାପ୍ରାଣୀ ଅକାଳରେ କବଳିତ ହେଉଅଛନ୍ତି ! ନିୟତିର ନିଦାରୁଣ ଶାସନରେ ଜୀବକୁଳ ନିତ୍ୟ ନିପୀଡ଼ିତ । ଏହି ଶାସନପ୍ରଣାଳୀର ମୂଳ-ନୀତି ମନୁଷ୍ୟବୁଦ୍ଧିର ଅଗମ୍ୟ, ମନୁଷ୍ୟ ନିଜ ଅସାଧାରଣ ପ୍ରତିଭା ବଳରେ ଜଗତରେ ବହୁ ବିସ୍ମୟଜନକ ବ୍ୟାପାରମାନ ସଂସାଧନ କରୁଅଛି – ପୃଥିବୀରେ ବସି ଆକାଶଚାରୀ ଗ୍ରହନକ୍ଷତ୍ରାଦିର ଗତି ଅଭ୍ରାନ୍ତରୂପେ ପର୍ଯ୍ୟବେକ୍ଷଣ କରୁଅଛି – କଠୋର ଯୋଗ ସାଧନଦ୍ୱାରା ଭୂତ ଭବିଷ୍ୟତ୍ ବର୍ତ୍ତମାନର କଥା ଜାଣି ପାରୁଅଛି; ମାତ୍ର ନିୟତିର ସେହି ଦାରୁଣ ଶାସନ-ନୀତିର ରହସ୍ୟ ବୁଝିବାରେ ଏକାନ୍ତ ଅକ୍ଷମ । କେତେ ଶତ ଶତ ସୁକୁମାର ଶିଶୁ ତଦ୍ଗତପ୍ରାଣ ସ୍ନେହମୟ ଜନକ ଜନନୀଙ୍କୁ ଶୋକସାଗରରେ ଭସାଇ ଦେଇ ଅକାଳରେ ସେହି ଅଜ୍ଞାତ ପ୍ରଦେଶକୁ ଚାଲି ଯାଇଅଛନ୍ତି – କେତେ ଜୀବନସର୍ବସ୍ୱଭୂତ ଗୁଣବାନ୍ ଯୁବକ ପୁତ୍ର ଅନନ୍ୟାଶ୍ରୟ ବୃଦ୍ଧ ଜନକ ଜନନୀଙ୍କୁ ଅତି ନିର୍ଦ୍ଦୟ ଭାବରେ ତ୍ୟାଗ କରୁଅଛନ୍ତି, କେତେ ପୁଣ୍ୟାତ୍ମା ଅକାଳରେ କାଳସମୁଦ୍ରରେ ବୁଦ୍‌ବୁଦ ପରି ଲୀନ ହୋଇ ଯାଉଅଛନ୍ତି, ଅଥଚ କେତେ ପାପାତ୍ମା ଲକ୍ଷ ଲକ୍ଷ ପ୍ରାଣିଙ୍କୁ ଘୋର ଯନ୍ତ୍ରଣା ଦେଇ ମୂର୍ତ୍ତିମାନ୍ ପାପରୂପେ ବଜ୍ରଦୃଢ଼ ଶରୀରରେ ସଂସାରରେ ବିଚରଣ*

କରୁଅଛନ୍ତି । ନିୟତିର ଶାସନ-ନୀତିର ଏହି ନିଗୂଢ଼ ରହସ୍ୟ ଭେଦ କରିବା ମନୁଷ୍ୟବୁଦ୍ଧିର ଅସାଧ । କେତେ ସହସ୍ର ସହସ୍ର ବର୍ଷ ହେଲା ମନୁଷ୍ୟ ଏ ଜଗତରେ ଆବିର୍ଭୂତ ହୋଇଅଛି – କେତେ ସହସ୍ର ସହସ୍ର ବର୍ଷ ହେଲା ସେ ସମାଧି, ଧ୍ୟାନ, ଧାରଣାଦ୍ୱାରା ଆଧ୍ୟାତ୍ମିକ ଜଗତରେ ଅଭିନବ ତତ୍ତ୍ୱମାନ ଆବିଷ୍କାର କରିଅଛି ଓ ଅଭାବନୀୟ ମନୀଷା ସାହାଯ୍ୟରେ ଦର୍ଶନର ସୂକ୍ଷ୍ମ ତତ୍ତ୍ୱମାନ ଅବଧାରଣ କରିଅଛି, କିନ୍ତୁ ବିଧିବିଧାନର ସେହି 'ମରଣ ରହସ୍ୟ' ସମ୍ବନ୍ଧରେ କିଛି ମାତ୍ର ଜାଣିପାରି ନାହିଁ । ମାନବ-ଧର୍ମଶାସ୍ତ୍ରପ୍ରଣେତାମାନେ ଏ ବିଷୟରେ ଆଲୋଚନା କଲାବେଳେ ସତେ ଯେପରି ହତବୁଦ୍ଧି ହୋଇ ପଡ଼ିଅଛନ୍ତି । ଆହା, କିଏ କହିବ, ଜୀବନ-କୁସୁମ ଶୈତ୍ୟୋତ୍ତାପର ଅଳ୍ପତା ବା ଆଧିକ୍ୟ ବ୍ୟତିରେକେ କାହିଁକି ଅକାଳରେ ସୁକୁମାର ଶରୀର-ବୃନ୍ତରୁ ଭ୍ରଷ୍ଟ ହୋଇ ପଡ଼େ ? ଆହା, କିଏ କହିବ, ସ୍ୱଚ୍ଛପୂତ ଜୀବନ-ମନ୍ଦାକିନୀ-ଧାରା କଳକଳନାଦରେ ସୁମନୋଜ୍ଞ ଉପୋପଳ ମଧ୍ୟରେ ପ୍ରବାହିତ ହେଉ ହେଉ ଅନନ୍ତ ସାଗରସଙ୍ଗମର ବହୁଦୂରରେ କାହିଁକି ଅକସ୍ମାତ୍ ଶୁଷ୍କ ହୋଇଯାଏ ? ଯୋଗାଚାର୍ଯ୍ୟ ବିଶ୍ୱଗୁରୁ ସ୍ୱୟଂ ଭଗବାନ୍ ଶ୍ରୀକୃଷ୍ଣଙ୍କର ଭାଗିନେୟ, ମହାବୀର ସବ୍ୟସାଚୀଙ୍କ ହୃଦୟନନ୍ଦନ ଷୋଡ଼ଶ-ବର୍ଷବୟସ୍କ ମହାରଥ ଅଭିମନ୍ୟୁ ଅକସ୍ମାତ୍ ରଣାଙ୍ଗନରେ ମହାନିଦ୍ରାଭିଭୂତ ହେଲେ ! ! ! ନିୟତିର ନିର୍ମମ ମରଣ-ବିଧାନ ଅପ୍ରତିକାର୍ଯ୍ୟ ଓ ଅନିବାର୍ଯ୍ୟ । ଏହି ସବୁ ଦେଖିଲେ ଅନେକ ସମୟରେ ମନେ ହୁଏ, ସୃଷ୍ଟିର ଅନ୍ତରାଳରେ ଯେଉଁ ପ୍ରଚ୍ଛନ୍ନ ଶକ୍ତି ଅଲକ୍ଷିତରୂପେ ସ୍ୱୀୟ କାର୍ଯ୍ୟ ସାଧନ କରୁଅଛି, ସେ ବଡ଼ ନିଷ୍ଠୁର ଓ ବଡ଼ ନିର୍ମମ, ତାହାର ହୃଦୟରେ ବିନ୍ଦୁ ମାତ୍ର ଦୟାନାହିଁ । ନିର୍ବୋଧ ମାନବ ! ତୁମ୍ଭେ ହସ ବା କାନ୍ଦ, ପୃଥିବୀ ଆନନ୍ଦରେ ନାଚୁ ବା ଦୁଃଖରେ ଛାରଖାର ହୋଇ ବିକଟ ଚିତ୍କାର କରୁ, ତତ୍‌ପ୍ରତି ତାହାର ଭ୍ରୂକ୍ଷେପ ନାହିଁ । ତେବେ ସୃଷ୍ଟିର ଅନ୍ତରାଳରେ ଯେ ଅଛି, ସେ କଣ ସଇତାନ ? ମନୁଷ୍ୟର କ୍ଷୁଦ୍ରବୁଦ୍ଧି କି ସାହସରେ ଏପରି ସିଦ୍ଧାନ୍ତରେ ଉପନୀତ ହୋଇ ପାରେ ? ଶେଷରେ ଏହି ଦୁରଧିଗମ୍ୟ ବିଷୟର ସିଦ୍ଧାନ୍ତ ନିରୂପଣରେ ହତବୁଦ୍ଧି ହୋଇ ମାନବ ନିର୍ଣ୍ଣୟ କରିଅଛି –

ଅଥ ଚୈନଂ ନିତ୍ୟଜାତଂ ନିତ୍ୟଂ ବା ମନ୍ୟସେ ମୃତଂ ।
ତଥାପି ତ୍ୱଂ ମହାବାହୋ ନୈନଂ ଶୋଚିତୁମର୍ହସି ।
ଜାତସ୍ୟ ହି ଧ୍ରୁବୋ ମୃତ୍ୟୁର୍ଧ୍ରୁବଂ ଜନ୍ମ ମୃତସ୍ୟ ଚ ।
ତସ୍ମାଦପରିହାର୍ଯ୍ୟେଽର୍ଥେ ନ ତ୍ୱଂ ଶୋଚିତୁମର୍ହସି ।

ଏହିପରି ଭାବି ଭାବି ଶେଷରେ ମନୁଷ୍ୟ ସ୍ଥିର କରିଅଛି ଯେ, "ମୃତ୍ୟୁହିଁ ଅମୃତତ୍ୱ ପ୍ରାପ୍ତିର ଏକମାତ୍ର ଦ୍ୱାର ।" ଏପରି ଅବସ୍ଥାରେ ଶୋକ ମୋହର ଅବସର କାହିଁ ? ମାତ୍ର ଏହି

ଅପରିହାର୍ଯ୍ୟ ଓ ଅପ୍ରତିକାର୍ଯ୍ୟ ବିଷୟରେ ଏହା ଆଶାମୟ ସାନ୍ତ୍ୱନା ଛଡ଼ା ଆଉ କିଛି ବୋଲି ବୋଧ ହୁଏ ନାହିଁ ।

ସୁଧୀ ମୃତ୍ୟୁଞ୍ଜୟଙ୍କର ଅକାଳବିୟୋଗରେ ତଦୀୟ ବନ୍ଧୁ ସମାଜ ଆଜି ଏହି ଭାବରେ ନଶ୍ୱର ସଂସାର ପ୍ରତି ଏକାନ୍ତ ଉଦାସୀନ ହୋଇ ପଡ଼ିଅଛନ୍ତି ଏବଂ କାଳର ନିର୍ମମ କଶା(ଷା)ଘାତର ତୀବ୍ର ଯନ୍ତ୍ରଣା ହୃଦୟର ଗଭୀରତମ ପ୍ରଦେଶରେ ଅନୁଭବ କରୁଅଛନ୍ତି । ଶାରଦ ପୂର୍ଣ୍ଣିମାର ସୁଧାକର ବିମଳ ଗଗନଦେଶରେ ଅର୍ଦ୍ଧାଂଶ ମାତ୍ର ଅତିକ୍ରମ କରି ଚନ୍ଦ୍ରିକା-ପୀୟୁଷ-ଧାରାରେ ବିଶ୍ୱଚରାଚର ପ୍ରହ୍ଲାଦନ କରୁଥିଲେ, ଅକସ୍ମାତ୍ କାଳରାହୁଗ୍ରାସରେ ନିପତିତ ହୋଇ ଚତୁର୍ଦ୍ଦିଗ ଅନ୍ଧକାରମୟ କରି ଅସ୍ତ ହୋଇଗଲେ । ଉତ୍କଳବାସୀ ତଦୀୟ ସାହିତ୍ୟିକ ବନ୍ଧୁ ବର୍ଗ ଆଜି ଠିକ୍ ଏହି ଅନ୍ଧକାର ମଧ୍ୟରେ ନିପତିତ ହୋଇଅଛନ୍ତି । ଉତ୍କଳର ବର୍ତ୍ତମାନ ମୁଷ୍ଟିମେୟ ସାହିତ୍ୟସେବିଙ୍କ ମଧ୍ୟରେ ମୃତ୍ୟୁଞ୍ଜୟହିଁ ଆଦର୍ଶ ଥିଲେ । କେହି କେହି ଏଥିରେ ଈର୍ଷା ଓ ଅସୂୟାଦ୍ୱାରା ବିକୃତମୁଖ ହୋଇପାରନ୍ତି, ମାତ୍ର ମୁଁ ଦୃଢ଼ରୂପେ କହି ପାରେଁ ଯେ, ଏହା ସତ୍ୟର ଅପଳାପ ନୁହେଁ । ଯେଉଁମାନେ ମୃତ୍ୟୁଞ୍ଜୟଙ୍କୁ ଜାଣିଅଛନ୍ତି ଓ ତାଙ୍କ ଯୋଗ୍ୟତା ପରୀକ୍ଷା କରିବାର ଅବସର ପାଇଅଛନ୍ତି, ସେମାନେ ନିଶ୍ଚୟ ଏଥିରେ ଏକମତ ହେବେ ସନ୍ଦେହ ନାହିଁ । ନବ୍ୟଯୁଗର ଉଚ୍ଚ ଇଂରାଜୀ ଶିକ୍ଷାରୁ ବଞ୍ଚିତ ହୋଇ ମୃତ୍ୟୁଞ୍ଜୟ କିପରି ଆତ୍ମଚେଷ୍ଟାରେ ଏଭଳି ଉନ୍ନତ ଓ ନିର୍ମଳ ଜ୍ଞାନ ଅର୍ଜ୍ଜନ କରିଥିଲେ, ତାହା ଦ(ତ)ଦୀୟ ଅନୁବର୍ତ୍ତିମାନଙ୍କର ସର୍ବଥା ଆଲୋଚନୀୟ ଓ ଅନୁକରଣୀୟ । ଗତ ୨୫ ବର୍ଷ ମୁଁ ତାଙ୍କ ସଙ୍ଗେ ବନ୍ଧୁତ୍ୱସୂତ୍ରରେ ଆବଦ୍ଧ ଥିଲି ଓ ନାନା ଭାବରେ ତାଙ୍କର ଯୋଗ୍ୟତା ଜାଣିବାର ଅବସର ପାଇଥିଲି । ଏହି ସୁଦୀର୍ଘ କାଳ ମଧ୍ୟରେ ମୁଁ ତାଙ୍କ ସମ୍ବନ୍ଧରେ ଯାହା ଜାଣିଅଛି ଏବଂ ତାଙ୍କର ଯେଉଁ ବିଶିଷ୍ଟତା ହୃଦୟଙ୍ଗମ କରି ତାଙ୍କ ଆଦର୍ଶର ଅନୁକରଣ କରୁଅଛି, ସେ ସମ୍ବନ୍ଧରେ ଦୁଇଚାରି କଥା ଲେଖିବାପାଇଁ ଆଜି ଏ ପ୍ରବନ୍ଧର ଅବତାରଣା କରୁଅଛି ।

ପୁରୀ ଜିଲ୍ଲାରେ ପୁଣ୍ୟତୋୟା ଭାର୍ଗବୀର ଉଭୟ ତୀରରେ ଅନେକ ବ୍ରାହ୍ମଣ-ଶାସନ ଅଛି । ମୃତ୍ୟୁଞ୍ଜୟ ସେହି ଭାର୍ଗବୀର ପୂର୍ବ ତୀରବର୍ତ୍ତୀ ଦକ୍ଷିଣରାଜସନାମକ କ୍ଷୁଦ୍ର ବ୍ରାହ୍ମଣ-ଶାସନରେ ଶ୍ରୋତ୍ରିୟ ବ୍ରାହ୍ମଣବଂଶରେ ୧୮୮୨ ମସିହା ମେ ମାସରେ ତଦୀୟ ପିତା ମାତାଙ୍କ ଜ୍ୟେଷ୍ଠପୁତ୍ର ରୂପେ ଜନ୍ମ ଗ୍ରହଣ କରିଥିଲେ । ଏହି ଗ୍ରାମଟି କୋଠଦେଶ ପ୍ରଗନା ଓ ପିପିଲି ଥାନାର ଅନ୍ତଃପାତୀ ଏବଂ ପିପିଲିର ଦକ୍ଷିଣ-ପୂର୍ବ କୋଣରେ ପ୍ରାୟ ୪ ମାଇଲ ଦୂରରେ ଅବସ୍ଥିତ । ଅଦ୍ୟାପି ନବ୍ୟଶିକ୍ଷାର ଆଲୋକ ସେ ଗ୍ରାମରେ ବା

ତନ୍ନିକଟବର୍ତ୍ତୀ ଅନ୍ୟ କୌଣସି ଗ୍ରାମରେ ପ୍ରବେଶ କରିନାହିଁ କହିଲେ ଚଳେ । ପ୍ରାଚୀନ ସଂସ୍କୃତର ଆଲୋଚନା ସେ ଅଞ୍ଚଳରେ ବହୁକାଳରୁ ଲୋପ ପ୍ରାପ୍ତ ହୋଇଅଛି । ଆଜି କାଲି ଅଧିକାଂଶ ବ୍ରାହ୍ମଣ ଯେପରି ସ୍ୱବୃତ୍ତି ତ୍ୟାଗ କରି ଭୂମିକର୍ଷଣ ଦ୍ୱାରା ଜୀବିକାନିର୍ବାହ କରୁଅଛନ୍ତି, ମୃତ୍ୟୁଞ୍ଜୟଙ୍କ ପିତୃବଂଶମାନଙ୍କର ତାହାହିଁ ମୁଖ୍ୟ ବୃତ୍ତି ଥିଲା । ପୌରୋହିତ୍ୟ ତଦ୍‌ବଂଶର ଗୌଣ ବୃତ୍ତି ମାତ୍ର । ଦକ୍ଷିଣରାଜସ କୋଠଦେଶ ଜମିଦାରୀ ଅନ୍ତର୍ଗତ ପ୍ରସିଦ୍ଧ ସାଇଂସୋ ଗ୍ରାମର ଅନ୍ତର୍ବର୍ତ୍ତୀ ଗୋଟିଏ ମକଦମି ମାହାଲ ମୃତ୍ୟୁଞ୍ଜୟଙ୍କ ପୂର୍ବପୁରୁଷମାନେ ସେହି ଗ୍ରାମର ମକଦମ ଓ ଲାଖେରାଜଦାର ଥିଲେ । ସୁତରାଂ ତାଙ୍କର ଆର୍ଥିକ ଅବସ୍ଥା ଶୋଚନୀୟ ନଥିଲା । ତାଙ୍କର ପିତା ଏବଂ ପିତୃବ୍ୟ ପ୍ରାୟ ୬୦ ଏକର ବୃତ୍ତି ଚାଷ କରୁଥିଲେ । ତଦ୍‌ବ୍ୟତୀତ ଭାର୍ଗବୀତୀର ସୁଲଭ ନାରିକେଳ, ପୁନ୍ନାଗ, ଆମ୍ର, ପନସ ପ୍ରଭୃତିର ଉଦ୍ୟାନରୁ ସେମାନେ ପ୍ରଚୁର ଆୟ କରି ସୁଖରେ ପରିବାର ପ୍ରତିପୋଷଣ କରୁଥିଲେ ।

ଦକ୍ଷିଣରାଜସ ଗ୍ରାମରେ ଦୁଇ ଜାତୀୟ ରଥ ବ୍ରାହ୍ମଣଙ୍କର ଗୋଷ୍ଠୀ ଅଛି । ମୃତ୍ୟୁଞ୍ଜୟ ଯେଉଁ ବଂଶରେ ଜନ୍ମ ଗ୍ରହଣ କରିଥିଲେ, ତାହା ପାର୍ବତୀପୁର-ଦହିଣସାହି ରଥ ବଂଶର ଗୋଟିଏ ଶାଖା । ଆତ୍ରେୟଗୋତ୍ରୀୟ ରଥମାନଙ୍କ ମଧ୍ୟରେ ଏମାନେ କୁଳୀନ ଭଟ୍ଟମିଶ୍ରଶ୍ରେଣୀୟ । ସୁତରାଂ ବଂଶମର୍ଯ୍ୟାଦାରେ ଏହି ରଥଗୋଷ୍ଠୀର ଖ୍ୟାତି ସେ ଅଞ୍ଚଳରେ ସୁବିଦିତ । ସାଧାରଣତଃ ପୁରୀର ରାଜାମାନେ ଯେଉଁ ସବୁ ଶାସନର ପ୍ରତିଷ୍ଠାତା, ସେ ଶାସନମାନଙ୍କରେ ଉଚ୍ଚ ଶ୍ରେଣୀର ବ୍ରାହ୍ମଣମାନେହିଁ ବାସ କରନ୍ତି । ଦକ୍ଷିଣରାଜସ ଶାସନ ଯେ ରାଜ-ପ୍ରତିଷ୍ଠିତ, ଏ ସମ୍ବନ୍ଧରେ ଖଣ୍ଡିଏ ପ୍ରାଚୀନ ତାମ୍ରଶାସନ ଅଳ୍ପଦିନ ପୂର୍ବେ ପ୍ରକାଶିତ ହୋଇଅଛି । ପଣ୍ଡିତ ମଧୁସୂଦନ ଦାଶ B.A. ମହୋଦୟ ଏହି ତାମ୍ରଶାସନ ସମ୍ବନ୍ଧରେ ପ୍ରାୟ ୨୫ ବର୍ଷ ପୂର୍ବେ ଉତ୍କଳ ସାହିତ୍ୟସମାଜରେ ଗୋଟିଏ ପ୍ରବନ୍ଧ ପାଠ କରିଥିଲେ ।

ମୃତ୍ୟୁଞ୍ଜୟଙ୍କ ପିତା ଦୁଇ ଭାଇ । ଜ୍ୟେଷ୍ଠ ବିଦ୍ୟାଧର ଏବଂ କନିଷ୍ଠ ଦାମୋଦର । ମୃତ୍ୟୁଞ୍ଜୟ ଏହି କନିଷ୍ଠ ଦାମୋଦରଙ୍କର ଜ୍ୟେଷ୍ଠ ପୁତ୍ର । ଦାମୋଦର ସ୍ୱଗ୍ରାମର ଅନତିଦୂରବର୍ତ୍ତୀ ରୂପଦେଇପୁର ଗ୍ରାମର ମିଶ୍ରଗୋଷ୍ଠୀରେ ବିବାହିତ ହୋଇଥିଲେ । ମୃତ୍ୟୁଞ୍ଜୟଙ୍କ ଜନନୀଙ୍କର ବାଲ୍ୟକାଳରୁ ଗୋଟିଏ ଚକ୍ଷୁ ନଷ୍ଟ ହୋଇଥିଲା ଏବଂ ତତ୍‌ପିତା ଦାମୋଦର ସାଂସାରିକ ବିଷୟରେ ଏକାନ୍ତ ଉଦାସୀନ ଥିବାରୁ ଜ୍ୟେଷ୍ଠ ବିଦ୍ୟାଧର ସମଗ୍ର ପରିବାରର ଚାଳକ ଥିଲେ । ବିଦ୍ୟାଧର ଆଧୁନିକ ଶିକ୍ଷା ପ୍ରାପ୍ତ ହୋଇ ନ ଥିଲେହେଁ ସେ ଅଞ୍ଚଳର ଗ୍ରାମ୍ୟ ଭଦ୍ରଲୋକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ତାଙ୍କ କର୍ତ୍ତୃତ୍ୱରେ ତଦୀୟ

ପାରିବାରିକ ଅବସ୍ଥା ପୂର୍ବାପେକ୍ଷା ଉନ୍ନତତର ହୋଇଥିଲା । କନିଷ୍ଠ ଦାମୋଦର ଜ୍ୟେଷ୍ଠଙ୍କର ସର୍ବଥା ଅନୁଗତ ଥିଲେ । ଜ୍ୟେଷ୍ଠଙ୍କ ନିଦେ(ର୍ଦେ)ଶରେ ଭୃତ୍ୟମାନଙ୍କ ସହ କୃଷିକର୍ମ ପର୍ଯ୍ୟବେକ୍ଷଣ କରିବା ବ୍ୟତୀତ ତାଙ୍କର ଅନ୍ୟ କୌଣସି କାର୍ଯ୍ୟ ନ ଥିଲା । ଦୁଇ ଭାଇଙ୍କ ମଧ୍ୟରେ ଅଭେଦ୍ୟ ପ୍ରୀତି ଥିଲେହେଁ କାଳକ୍ରମେ ଅଶିକ୍ଷିତା ସ୍ତ୍ରୀଲୋକମାନଙ୍କ ଦୌରାତ୍ମ୍ୟରୁ ପରିବାରର ଶାନ୍ତି ନଷ୍ଟ ହେଲା । ପରିଣାମରେ ଶକ୍ତି ଓ ସାଂସାରିକ କୂଟବୁଦ୍ଧିର ଅଭାବରୁ ଦାମୋଦର ପଦେ ପଦେ ପରିବାର ମଧ୍ୟରେ ସର୍ବଥା ଲାଞ୍ଛିତ ଓ ଅପଦସ୍ଥ ହେଉଥିଲେ । କିନ୍ତୁ ଭଗବାନ୍ ସର୍ବଦା ଦୁର୍ବଳ ପକ୍ଷହିଁ ଅବଲମ୍ବନ କରିଥାନ୍ତି । ନିରୀହ ଦାମୋଦରଙ୍କର କରୁଣ କ୍ରନ୍ଦନଧ୍ୱନି ଦୀନବନ୍ଧୁଙ୍କର କର୍ଣ୍ଣକୁହରରେ ପ୍ରବେଶ କଲା । ସତେ ଯେପରି ସେ ଜ୍ୟେଷ୍ଠ ଭ୍ରାତା ଓ ଜ୍ୟେଷ୍ଠ ଭ୍ରାତୃଜାୟାଙ୍କର ଉତ୍ପୀଡ଼ନରୁ ତାଙ୍କୁ ରକ୍ଷା କରିବାପାଇଁ ମୃତ୍ୟୁଞ୍ଜୟଙ୍କୁ ତାଙ୍କ ସନ୍ତାନରୂପେ ଜନ୍ମପ୍ରଦାନ କଲେ । ପ୍ରକୃତରେ ମୃତ୍ୟୁଞ୍ଜୟ ଯେତେବେଳେ ଶିକ୍ଷିତ ଓ ଉପାର୍ଜନକ୍ଷମ ହୋଇ ପରିବାର ମଧ୍ୟରେ ଦଣ୍ଡାୟମାନ ହେଲେ, ସେତେବେଳେ ବିଦ୍ୟାଧର ଓ ତଦୀୟ ପତ୍ନୀଙ୍କ ଅତ୍ୟାଚାର ସ୍ୱତଃ କମି ଆସିଲା । କନିଷ୍ଠଙ୍କ ସନ୍ତାନମାନଙ୍କ ପ୍ରତି ସେ ବାଧ୍ୟ ହୋଇ ସ୍ନେହଦୃଷ୍ଟି ନିକ୍ଷେପ କଲେ । ତଥାପି ଅଶିକ୍ଷାଜନିତ ଈର୍ଷାନଳ ସେମାନଙ୍କ ହୃଦୟରେ ନିରନ୍ତର ପ୍ରଜ୍ୱଳିତ ହେଉଥିଲା । ଯେଉଁ ବିଦ୍ୟାଧର କନିଷ୍ଠଙ୍କୁ ପଶୁ ଅପେକ୍ଷା ହୀନ ମନେକରି ସର୍ବଦା ଉପେକ୍ଷା କରିଥିଲେ, ଶେଷରେ ମୃତ୍ୟୁଞ୍ଜୟଙ୍କ ବିନା ପରାମର୍ଶରେ ସେ ସାଂସାରିକ କୌଣସି ଗୁରୁତର କାର୍ଯ୍ୟର ସମାଧାନ କରିବାକୁ ସାହସୀ ହେଲେନାହିଁ । ମୃତ୍ୟୁଞ୍ଜୟଙ୍କ ପିତା ମାତା ୬ଟି ପୁତ୍ର ଓ ଗୋଟିଏ କନ୍ୟାର ଜନକ ଜନନୀ ହୋଇ ସୁଖରେ କାଳ ହରଣ କରିବାକୁ ମନଃସ୍ଥ କରିଥିଲେ, ମାତ୍ର ଦାରୁଣ ବିଧି ତାହା କରିଦେଲା ନାହିଁ । ସେମାନଙ୍କ ଜୀବଦ୍ଦଶାରେ ତାଙ୍କର ୪ଗୋଟି ପୁତ୍ର ଅକାଳରେ କାଳଗ୍ରାସରେ ପତିତ ହେବାରୁ ସେହି ନିରୀହ ସ(ଦ)ମ୍ପତି ଘୋର ଦୁଃଖରେ ଶେଷଜୀବନ ଅତିବାହିତ କରୁଥିଲେ ।

ଦକ୍ଷିଣ ରାଜସ ଗ୍ରାମରେ ବହୁକାଳରୁ ଗୋଟିଏ ଉ:ପ୍ରା: ବିଦ୍ୟାଳୟ ପ୍ରତିଷ୍ଠିତ ଅଛି । ସେଠାରେ ମୃତ୍ୟୁଞ୍ଜୟ ପ୍ରାଥମିକ ଶିକ୍ଷା ସାଙ୍ଗ କରି ତଦୀୟ ବାଲ୍ୟଗୁରୁ ସମରାଇ ଗ୍ରାମନିବାସୀ ସ୍ୱର୍ଗୀୟ ଅନନ୍ତଚରଣ ମହାନ୍ତିଙ୍କ ପ୍ରରୋଚନାରେ ମାତୁଳଗ୍ରାମ ରୂପଦେଇପୁରରେ ପ୍ରତିଷ୍ଠିତ ଥିବା ମଧ୍ୟ ଭର୍ଣ୍ଣାକୁଲାର ସ୍କୁଲକୁ ପ୍ରେରିତ ହେଲେ । ବୃଦ୍ଧ ଅନନ୍ତ ଛାତ୍ରଟିର ବୁଦ୍ଧିମତ୍ତାର ପରିଚୟ ପାଇ ଯେତେବେଳେ ଉଚ୍ଚଶିକ୍ଷା ନିମିତ୍ତ ତଦୀୟ ଜ୍ୟେଷ୍ଠତାତଙ୍କୁ ଅନୁରୋଧ କଲେ, ତେତେବେଳେ ବିଦ୍ୟାଧର ଅନିଚ୍ଛା ସତ୍ତ୍ୱେ କେବଳ

ଲୋକନିନ୍ଦା ଭୟରେ ଭ୍ରାତୁଷ୍ପୁତ୍ରକୁ ରୂପଦେଇପୁର ଯିବାକୁ ଅନୁମତି ଦେଲେ । ଆହୁରି ମଧ୍ୟ ଏଥିରେ ବ୍ୟୟାଧିକ୍ୟର ସମ୍ଭାବନା ଥିଲେ ସେ ଏ କାର୍ଯ୍ୟରେ କେବେହେଁ ସମ୍ମତ ହୋଇ ନ ଥାନ୍ତେ । ମାତ୍ର ଯେତେବେଳେ ଦେଖିଲେ ଯେ, ପୁତୁରା ତାହାର ମାମୁଘରେ ରହି ପଢ଼ିଲେ ଅତି ଅଳ୍ପ ବ୍ୟୟରେ କାର୍ଯ୍ୟୋଦ୍ଧାର ହେବ, ସେତେବେଳେ ସେ ବାଧ ହୋଇ ତାହା ଅଙ୍ଗୀକାର କଲେ । ସେଠାରେ ଦୁଇ ବର୍ଷ ଅଧ୍ୟୟନ କରି ମୃତ୍ୟୁଞ୍ଜୟ ୧୮୯୭ ମସିହାରେ ମଧ୍ୟ ଭର୍ଣ୍ଣାକ୍ୟୁଲାର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଟକ ଟ୍ରେନିଂ ସ୍କୁଲରେ ପ୍ରବେଶ କଲେ । ସେତେବେଳେ କଟକ ଟ୍ରେନିଂ ସ୍କୁଲ ବିଶେଷତଃ ପୁରୀ ଜିଲ୍ଲାର ଉଚ୍ଚଶିକ୍ଷାର୍ଥୀ ଦରିଦ୍ର ବ୍ରାହ୍ମଣସନ୍ତାନମାନଙ୍କର ଆଶ୍ରୟସ୍ଥଳ ଥିଲା । ଅଦ୍ୟାପି ପୁରୀ ଜିଲାର ପ୍ରାଚୀନ ଲୋକମାନେ ଏହି ସ୍କୁଲକୁ 'ବ୍ରାହ୍ମଣାଶ୍ରୟ' 'ପଣ୍ଡିତବିଭାଗ' ନାମରେ ଅଭିହିତ କରିଥାନ୍ତି । ମୃତ୍ୟୁଞ୍ଜୟ ଦରିଦ୍ର ବ୍ରାହ୍ମଣ ସନ୍ତାନ ନ ଥିଲେହେଁ ଅଭିଭାବକମାନଙ୍କ ଅଶିକ୍ଷା ଦୋଷରୁ ଚାରିଟଙ୍କା ବୃତ୍ତି ଆଶାରେ ଟ୍ରେନିଂ ସ୍କୁଲରେ ପ୍ରବିଷ୍ଟ ହେଲେ । ସେତେବେଳେ ଓଡ଼ିଶାରେ ରେଳପଥ ବିସ୍ତୃତ ହୋଇନଥିଲା । ସୁତରାଂ ପଞ୍ଚଦଶବର୍ଷୀୟ ବାଳକ ମୃତ୍ୟୁଞ୍ଜୟ ଏକାକୀ ଗୃହରୁ ବହିର୍ଗତ ହୋଇ ୩୦ ମାଇଲ ଦୂରବର୍ତ୍ତୀ କଟକକୁ ପଦବ୍ରଜରେ ଆଗମନ କଲେ । ବାଲ୍ୟକାଳରୁ ଏକାନ୍ତ ନିଃସହାୟ ହୋଇ ଉଚ୍ଚଶିକ୍ଷା ଆଶାରେ ଏତେ କଷ୍ଟ ସ୍ୱୀକାର କରିବା ତାଙ୍କ ଜୀବନର ଭାବୀ ମହତ୍ତ୍ୱର ପରିଚାୟକ । ସେତେବେଳେ ପୁଣ୍ୟାତ୍ମା ମଧୁସୂଦନ କଟକ ଟ୍ରେନିଂ ସ୍କୁଲର ପ୍ରଧାନ ଆଚାର୍ଯ୍ୟ ପଦ ଅଳଙ୍କୃତ କରୁଥିଲେ । ତାଙ୍କର କରୁଣାକୋମଳ ଦୃଷ୍ଟିରେ ବାଳକ ମୃତ୍ୟୁଞ୍ଜୟଙ୍କର କମନୀୟ ମୁଖକାନ୍ତି ଉଜ୍ଜ୍ୱଳତର ହୋଇଉଠିଲା, ସେ ତାଙ୍କୁ ଶିଷ୍ୟରୂପେ ଗ୍ରହଣ କରିବାର ଅନୁମତି ଦିଅନ୍ତେ ମୃତ୍ୟୁଞ୍ଜୟ ଆପଣାକୁ କୃତକୃତ୍ୟ ମନେ କରି କଟକରେ ଅବସ୍ଥାନ କରିବାକୁ ଲାଗିଲେ । ସେ କାଳ ଆଜି ସତ୍ୟଯୁଗ ପରି ଆମ୍ଭମାନଙ୍କ ଚକ୍ଷୁରେ ପ୍ରତିଭାତ ହେଉଅଛି । ଚାରି ଟଙ୍କା ବୃତ୍ତିରେ ଗୋଟିଏ ଛାତ୍ର ଅକ୍ଲେଶରେ କଟକ ସହରରେ ଚଳି ଯାଉଥିଲା । ଆଜି କୋଡ଼ିଏ ଟଙ୍କା ବୃତ୍ତି ସୁଦ୍ଧା ଛାତ୍ରମାନଙ୍କୁ ଅଣ୍ଟୁ ନାହିଁ । ସୁତରାଂ ମୃତ୍ୟୁଞ୍ଜୟଙ୍କୁ ସାହାଯ୍ୟାନ୍ତର ପାଇଁ ଅପେକ୍ଷା କରିବାକୁ ହେଉ ନଥିଲା ।

ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରାଣା, ମଧୁସୂଦନ ଦାଶ ଓ ପଣ୍ଡିତ ଗଦାଧର ତ୍ରିପାଠୀ ତତ୍କାଳୀନ ଟ୍ରେନିଂ ସ୍କୁଲର ସହକାରୀ ଶିକ୍ଷକ ଥିଲେ । ମୃତ୍ୟୁଞ୍ଜୟ ସ୍ୱୀୟ ଅଧ୍ୟବସାୟ ଓ ବୁଦ୍ଧିମତ୍ତାଦ୍ୱାରା ଶିକ୍ଷକ ଓ ସହାଧ୍ୟାୟିମାନଙ୍କ ପ୍ରୀତି ଆକର୍ଷଣ କଲେ । ବିଶେଷତଃ ସାହିତ୍ୟ ଅଧ୍ୟାପକ ପୁଣ୍ୟାତ୍ମା ମଧୁସୂଦନ ତାଙ୍କର ସାହିତ୍ୟିକ ସୂକ୍ଷ୍ମ ଗବେଷଣାର ସୂଚନା ପାଇ

ତାଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ସେତେବେଳେ ଟ୍ରେନିଂ ସ୍କୁଲରେ ଉଚ୍ଚ ଶ୍ରେଣୀର ସାହିତ୍ୟ ଗଣିତ ଆଲୋଚିତ ହେଉଥିଲା ଏବଂ ସଂସ୍କୃତ କୁମାରସମ୍ଭବ ଓ ଉତ୍ତରରାମଚରିତ ମଧ୍ଯ ତୃତୀୟବର୍ଷୀୟ ଶ୍ରେଣୀର ପାଠ୍ୟ ଥିଲା । ଏତଦ୍‌ବ୍ୟତୀତ ଖଗୋଳ ବିବରଣ, ଅର୍ଥନୀତି ପ୍ରଭୃତି ଅନ୍ୟ କେତେକ ବିଷୟ ପାଠ୍ୟର ଅନ୍ତର୍ଭୁକ୍ତ ଥିଲା । ଏ ସକଳ ବିଷୟର ଆଲୋଚନାରେ ମୃତ୍ୟୁଞ୍ଜୟଙ୍କର ବିକାଶୋନ୍ମୁଖ ବୁଦ୍ଧିବୃତ୍ତି ଉନ୍ମେଷିତ ହୋଇଉଠିଲା । ସେ ପ୍ରତି ଶ୍ରେଣୀରେ ପ୍ରାୟ ପ୍ରତ୍ୟେକ ବିଷୟରେ ଶୀର୍ଷସ୍ଥାନ ଅଧିକାର କରି ତୃତୀୟ ବର୍ଷୀୟ ଶ୍ରେଣୀକୁ ଉନ୍ନୀତ ହେଲେ । ଏ ଶ୍ରେଣୀରେ ଶିକ୍ଷକମାନେ ଛାତ୍ରମାନଙ୍କୁ ସ୍ୱାଧୀନ ଭାବରେ ବିଭିନ୍ନ ବିଷୟମାନଙ୍କର ଆଲୋଚନା କରିବାକୁ ଉତ୍ସାହିତ କରିଥାନ୍ତି । ସେତେବେଳେ ସାହିତ୍ୟର ଆଲୋଚନା ନିମିତ୍ତ ଟ୍ରେନିଂ ସ୍କୁଲର ଛାତ୍ରମାନେ ''ଆଲୋଚନା ସଭା'' ନାମରେ ଗୋଟିଏ ସଭା ପ୍ରତିଷ୍ଠିତ କରିଥିଲେ । ପ୍ରତି ସପ୍ତାହରେ ଛାତ୍ରାବାସରେ ଏହାର ଅଧିବେଶନ ହେଉଥିଲା ଏବଂ କେବେ କେବେ ରେଭେନ୍ସା କଲେଜ ଓ ସ୍କୁଲର କୌଣସି କୌଣସି ଛାତ୍ର ଏଥିରେ ଯୋଗ ଦେଉଥିଲେ । ହେଡ୍ ମାଷ୍ଟର ମହାଶୟ ଛାତ୍ରମାନଙ୍କର ଏହି ସାଧୁ ଚେଷ୍ଟା ଦେଖି ଅତ୍ୟନ୍ତ ପ୍ରୀତ ହୋଇ ତାହାର ସୁପରିଚାଳନାର ବନ୍ଦୋବସ୍ତ କରିଦେଲେ ଏବଂ ପ୍ରତି ଶନିବାର ସ୍କୁଲରେ ଶିକ୍ଷିତ ଓ ଛାତ୍ରମାନେ ସମ୍ମିଳିତ ହୋଇ ଏହାର ଅଧିବେଶନ କରିବେ ବୋଲି ଆଦେଶ ଦେଲେ । ମୃତ୍ୟୁଞ୍ଜୟ ଏହି ସଭାର ସମ୍ପାଦକତ୍ୱ ଗ୍ରହଣ କଲେ ଏବଂ ତାଙ୍କର ସହାଧ୍ୟାୟିମାନଙ୍କ ପରି ଭିନ୍ନ ଭିନ୍ନ ବିଷୟରେ ପ୍ରବନ୍ଧ ଲେଖି ସଭାରେ ପାଠ କରୁଥିଲେ । ଏହି ଭାବରେ ପ୍ରବନ୍ଧ ଲେଖିବାର ପ୍ରବୃତ୍ତି ତାଙ୍କର ଉଦ୍ରିକ୍ତ ହେଲା । ତାଙ୍କର ଅଧିକାଂଶ ପ୍ରବନ୍ଧ ଶିକ୍ଷକ ଓ ସହାଧ୍ୟାୟିମାନଙ୍କର ମନୋମତ ହେବାରୁ ସେ ଏଥିରେ ଅଧିକତର ଉତ୍ସାହିତ ହୋଇ କାର୍ଯ୍ୟ କରିବାକୁ ଲାଗିଲେ । ଛାତ୍ରାବସ୍ଥାରେ ଏହି ସମୟରେ ସେ ''ଡ୍ରଇଂ'' ବା ''ଚିତ୍ରବିଦ୍ୟା'' ବୋଲି ଗୋଟିଏ ପ୍ରବନ୍ଧ ଲେଖିଥିଲେ, ତାହା ପାଠ କରି ଶିଷ୍ୟବତ୍ସଳ ମଧୁସୂଦନ ଏପରି ପ୍ରୀତ ହୋଇଥିଲେ ଯେ, ତାହା ''ଉତ୍କଳ ସାହିତ୍ୟ''ରେ ପ୍ରକାଶଯୋଗ୍ୟ ବୋଲି ମତ ଦେଇଥିଲେ । ତଦନୁସାରେ ତାହା ''ଉତ୍କଳ ସାହିତ୍ୟ''ରେ ପ୍ରକାଶିତ ହୋଇଥିଲା । ଟ୍ରେନିଂ ସ୍କୁଲର ଛାତ୍ରଜୀବନରେ ଅନ୍ୟ କୌଣସି ଛାତ୍ରର ଭାଗ୍ୟରେ ଏପରି ସୁଯୋଗ କେବେ ଘଟି ନାହିଁ । ୧୯୦୩ ମସିହାଯାଏ ଟ୍ରେନିଂ ସ୍କୁଲରେ ପୂର୍ବୋକ୍ତ ଆଲୋଚନା ସଭା ନିୟମିତରୂପେ ପରିଚାଳିତ ହେଉଥିଲା । ମଧୁସୂଦନଙ୍କ ପ୍ରରୋଚନାରେ କଟକର କେତେଜଣ ବିଶିଷ୍ଟ ସାହିତ୍ୟସେବୀ ଏଥିରେ ଯୋଗ ଦେଉଥିଲେ । ସ୍ୱୟଂ ମଧୁସୂଦନ ଏଥିରେ ଅନେକ ସମୟରେ ନାନା ବିଷୟରେ

ବକ୍ତୃତା କରୁଥିବାରୁ ତତ୍କାଳୀନ ସାହିତ୍ୟିକମାନେ ଏଥିପ୍ରତି ସ୍ୱଭାବତଃ ଆକୃଷ୍ଟ ହୋଇଥିଲେ । କ୍ରମେ ଏହି ସଭାର କାର୍ଯ୍ୟାବଳୀକୁ ଅପେକ୍ଷାକୃତ ପ୍ରଶସ୍ତ ଭାବରେ ପରିଚାଳନ କରିବାକୁ ଇଚ୍ଛା କରି ମାନନୀୟ ସାହିତ୍ୟପ୍ରାଣ ଶ୍ରୀଯୁକ୍ତ ବାବୁ ବିଶ୍ୱନାଥ କରଙ୍କ ପରାମର୍ଶରେ ମଧୁସୂଦନ ଏହାକୁ ଉତ୍କଳ ସାହିତ୍ୟସମାଜ ନାମରେ ଅଭିହିତ କଲେ । ଟ୍ରେନିଂ ସ୍କୁଲରୁ ଆଲୋଚନା ସଭାହିଁ ଉତ୍କଳ ସାହିତ୍ୟସମାଜର ମୂଳଭିତ୍ତି । ମୃତ୍ୟୁଞ୍ଜୟ ଏହି ଭାବରେ ଛାତ୍ରାବସ୍ଥାରେ ନାନା ସୁଖ୍ୟାତି ଲାଭ କରି ୧୯୦୦ ଖ୍ରୀଷ୍ଟାବ୍ଦରେ କଟକ ଟ୍ରେନିଂ ସ୍କୁଲର ତୃତୀୟବର୍ଷୀୟ ଶ୍ରେଣୀର ଶେଷ ପରୀକ୍ଷାରେ ପ୍ରଥମ ବିଭାଗରେ ପ୍ରଥମ ସ୍ଥାନ ଅଧିକାର କରି ଉତ୍ତୀର୍ଣ୍ଣ ହେଲେ । ସେତେବେଳେ କଟକ ଟ୍ରେନିଂ ସ୍କୁଲରୁ ପ୍ରଥମ ବିଭାଗରେ ଉତ୍ତୀର୍ଣ୍ଣ ହେବା ବଡ଼ ଗୌରବର ବିଷୟ ଥିଲା । କାରଣ ଅଧୀତ ବିଷୟମାନଙ୍କର ଜଟିଳତା, ବହୁତ୍ୱ ଓ ପରୀକ୍ଷାର କଠୋର ନିୟମାବଳୀ ଅନେକଙ୍କୁ ସେ ଆଶାରୁ ବଞ୍ଚିତ କରୁଥିଲା । ମଧୁସୂଦନଙ୍କ ଟ୍ରେନିଂ ସ୍କୁଲରେ ଦ୍ୱାଦଶବର୍ଷ କାର୍ଯ୍ୟକାଳ ମଧ୍ୟରେ ବୋଧହୁଏ ୩/୪ଜଣ ମାତ୍ର ଛାତ୍ର ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଥିଲେ । ମାସିକ ପନ୍ଦର ଟଙ୍କା ବେତନରେ ମଧ-ଭର୍ଣ୍ଣାକ୍ୟୁଲର ସ୍କୁଲରେ ପ୍ରଥମ ବା ଦ୍ୱିତୀୟ ପଣ୍ଡିତ କାର୍ଯ୍ୟ କରିବା ବା ସେହି ବେତନରେ ଡିଷ୍ଟ୍ରିକ୍ଟ ବୋର୍ଡ଼ ଅଧୀନ ଇନ୍‌ସେକ୍ଟିଂ ପଣ୍ଡିତ କାର୍ଯ୍ୟ କରିବା ସେତେବେଳେ ନର୍ମାଲ ତୃତୀୟବର୍ଷୀୟ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲା । ଗଭର୍ଣ୍ଣମେଣ୍ଟ ଜିଲ୍ଲା ସ୍କୁଲମାନଙ୍କରେ ସେତେବେଳେ ଟ୍ରେନିଂ ପରୀକ୍ଷୋତ୍ତୀର୍ଣ୍ଣ ଛାତ୍ରମାନଙ୍କର ସ୍ଥାନ ନ ଥିଲା । ସ୍କୁଲରୁ ବହିର୍ଗତ ହୋଇ ମୃତ୍ୟୁଞ୍ଜୟ ତାଙ୍କର ଅନ୍ୟାନ୍ୟ ସହାଧ୍ୟାୟିଙ୍କ ପରି ପଲ୍ଲୀଗ୍ରାମରେ କର୍ମପ୍ରୟାସୀ ନ ହୋଇ ସହରରେ ରହିବାର ସ୍ଥିର କଲେ । ସେ ତାଙ୍କର ପୂଜନୀୟ ଗୁରୁଦେବ ମଧୁସୂଦନଙ୍କ ପରାମର୍ଶ ଅନୁସାରେ କଟକରେ ରହି ସଂସ୍କୃତ ପଢ଼ିବାକୁ ଯତ୍ନ କଲେ । ଏହି ସମୟରେ କେତେ ଦିନ ପାଇଁ ସେ ଅସ୍ଥାୟି-ଭାବରେ କଟକ ପ୍ୟାରୀମୋହନ ଏକାଡ଼େମିରେ ନିମ୍ନଶିକ୍ଷକ କାର୍ଯ୍ୟ କରିଥିଲେ ଏବଂ ଅନେକତ୍ର ଗୃହ-ଶିକ୍ଷକ (Private tutor) କାର୍ଯ୍ୟ କରି କିଛି କିଛି ଉପାର୍ଜନ କରୁଥିଲେ । ତାହାର କେତେକ ବର୍ଷ ପୂର୍ବରୁ ମଧୁସୂଦନ ଟାଉନ୍ ମାଇନର୍ ସ୍କୁଲ୍‌କୁ ହାଇ ସ୍କୁଲରେ ପରିଣତ କରିଥିଲେ । କେତେକଦିନ ପରେ ସେ ତାଙ୍କର ପ୍ରିୟଛାତ୍ର ମୃତ୍ୟୁଞ୍ଜୟଙ୍କୁ ସେହି ସ୍କୁଲରେ ଗୋଟିଏ କାର୍ଯ୍ୟ ପ୍ରଦାନ କଲେ । ଏହି ସମୟରୁ ମୃତ୍ୟୁଞ୍ଜୟଙ୍କର କର୍ମମୟ ଜୀବନର ସୂତ୍ରପାତ ହେଲା । କାବ୍ୟ ଦ୍ୱିତୀୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ କାବ୍ୟ ଉପାଧି ପଢ଼ିବାକୁ ଆରମ୍ଭ କଲେ । ପ୍ରତ୍ୟହ ସ୍କୁଲ କାର୍ଯ୍ୟ ଓ ଏକାଧିକ ଟିଉସନ୍ କରିବା

ପରେ ଯେଉଁ ସମୟ ପାଉଥିଲେ, ସେଥିରେ ସେ ଉପାଧି ପରୀକ୍ଷାର କଠିନ ସୁପ୍ରକାଣ୍ଡ ପୁସ୍ତକମାନଙ୍କର ଆଲୋଚନା କରୁଥିଲେ ଏବଂ ମାସିକ ଓ ସାପ୍ତାହିକ ପତ୍ରିକାମାନଙ୍କରେ ନିୟମିତରୂପେ ପ୍ରବନ୍ଧ ଲେଖୁଥିଲେ । ''ଉତ୍କଳ ସାହିତ୍ୟ''ର ସମ୍ପାଦକ ମାନନୀୟ ବାବୁ ବିଶ୍ୱନାଥ କର ମହାଶୟ ଏହି ନବୀନ ଯୁବକଙ୍କର ଉଦୀୟମାନ ପ୍ରତିଭା ଦେଖି ଏକ ତତ୍‌କର୍ତ୍ତୃକ ଲିଖିତ ପ୍ରବନ୍ଧାବଳୀର ସାରବତ୍ତା ଓ ଉପାଦେୟତା ଅନୁଭବ କରି ସେଗୁଡ଼ିକୁ ନିୟମିତ ରୂପେ ଉତ୍କଳ ସାହିତ୍ୟରେ ପ୍ରକାଶ କରିବାଦ୍ୱାରା ତାଙ୍କ ଜୀବନକୁ ପବିତ୍ର ସାହିତ୍ୟ ସେବା ପଥରେ ଅଗ୍ରସର କରିଥିଲେ । ତାଙ୍କର କ୍ଷୀଣ ଓ ଦୁର୍ବଳ ଶରୀର କଠିନ ପରିଶ୍ରମ କରିବାରେ ଏପରି ଅଭ୍ୟସ୍ତ ହୋଇଗଲା ଯେ, ସେ ମୃତ୍ୟୁର ପୂର୍ବପର୍ଯ୍ୟନ୍ତ ଦୈନିକ ୩/୪ ଘଣ୍ଟାରୁ ଅଧିକ ବେଳ ବିଶ୍ରାମ ନ କରି ସୁଦ୍ଧା ବେଶ୍ ସୁସ୍ଥ ଓ ପ୍ରଫୁଲ୍ଲ ଥିଲେ । ଉପାଧି ପରୀକ୍ଷାର ପୁସ୍ତକମାନ ସେ ସ୍ୱୟଂ ଆଲୋଚନା କରୁଥିଲେ ଏବଂ ଯେଉଁ ଯେଉଁ ସ୍ଥାନରେ ତାଙ୍କର ସନ୍ଦେହ ରହୁଥିଲା, ସେ ସ୍ଥାନ ତତ୍କାଳୀନ ରେଭେନ୍ସା କଲେଜିଏଟ୍ ସ୍କୁଲର ହେଡ୍‌ପଣ୍ଡିତ ପୁରୁଷୋତ୍ତମ ତର୍କାଳଂକାରଙ୍କ ନିକଟରୁ ବୁଝି ନେଉଥିଲେ । ଉପାଧୀ ପରୀକ୍ଷାରେ ସାହିତ୍ୟଦର୍ପଣ ନାମକ ଅଳଙ୍କାର ଶାସ୍ତ୍ର ଗୋଟିଏ ପ୍ରଧାନ ପାଠ୍ୟ ଗ୍ରନ୍ଥ ଏବଂ ଅଧ୍ୟାପକଙ୍କ ସାହାଯ୍ୟ ବ୍ୟତୀତ ଯେ କୌଣସି ଶିକ୍ଷାର୍ଥୀ ନିଜ ଚେଷ୍ଟାରେ ଏହା ପଢ଼ିପାରେ ନାହିଁ । ସମୟ ଅଳ୍ପତାବଶତଃ ମୃତ୍ୟୁଞ୍ଜୟ ଏ ଗ୍ରନ୍ଥଖଣ୍ଡି ନିୟମିତ ରୂପେ ଅଧ୍ୟୟନ କରି ପାରି ନ ଥିବାରୁ ଉତ୍ତର କାଳରେ ଅନେକ ସମୟରେ ଦୁଃଖ ପ୍ରକାଶ କରୁଥିଲେ ଏବଂ ଆଳଙ୍କାରିକ ଜ୍ଞାନର ଅଭାବ ଅନୁଭବ କରି ଉପାଧିର ଅନ୍ୟ ଗ୍ରନ୍ଥମାନଙ୍କ ଆଲୋଚନା କରିଥିଲେହେଁ ପରୀକ୍ଷା ଦେବାପାଇଁ ସାହସୀ ଦେଉନଥିଲେ । ଏହି ସମୟରେ ସେ ''ଉତ୍କଳ ସାହିତ୍ୟ''ରେ ''ଚତୁଷ୍ପାଠୀ'' ଶୀର୍ଷକ ଗୋଟିଏ ସୁନ୍ଦର ପ୍ରବନ୍ଧ ଲେଖିଥିଲେ । ସ୍ୱର୍ଗୀୟ କବିବର ରାଧାନାଥ ଏହି ପ୍ରବନ୍ଧଟି ପାଠ କରି ଏପରି ମୁଗ୍ଧ ହୋଇଥିଲେ ଯେ, ସେ ଦିନେ ପ୍ରଭାତରୁ ମୃତ୍ୟୁଞ୍ଜୟଙ୍କୁ ଦେଖିବା ପାଇଁ ବାଙ୍କାବଜାରର ପୁରୁଣା ଭିକ୍ଟୋରିଆ ସ୍କୁଲ ବୋର୍ଡ଼ିଂରେ ତାଙ୍କ ବସାରେ ଆସି ଉପସ୍ଥିତ ହେଲେ ରାଧାନାଥଙ୍କ ମୁଖରୁ ଭୂୟସୀ ପ୍ରଶଂସା ଶ୍ରବଣ କରି ମୃତ୍ୟୁଞ୍ଜୟ ନବୀନ ଉତ୍ସାହରେ ପ୍ରବନ୍ଧ ଲେଖିବାରେ ପ୍ରବୃତ୍ତ ହେଲେ । ଏହି ସମୟରେ ଗଞ୍ଜାମ ଜିଲ୍ଲାର ରମ୍ଭାରୁ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ କର୍ତ୍ତୃକ ସମ୍ପାଦିତ ''ପ୍ରଜାବନ୍ଧୁ'' ନାମରେ ଖଣ୍ଡିଏ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଥିଲା । ମୃତ୍ୟୁଞ୍ଜୟ ତହିଁରେ ଅନେକଗୁଡ଼ିଏ ସାମୟିକ ପ୍ରବନ୍ଧ ଓ ଜାତୀୟ ସଙ୍ଗୀତ ଲେଖିଥିଲେ । ତାଙ୍କର ଏହିସବୁ ଗବେଷଣା ଦେଖି କଟକର ଶିକ୍ଷିତ ମଣ୍ଡଳୀ ତାଙ୍କ ପ୍ରତି ଏକାନ୍ତ ଆକୃଷ୍ଟ

ହୋଇଥିଲେ ଏବଂ ସେମାନଙ୍କ ମଧ୍ୟରୁ କେତେକ ତାଙ୍କୁ "ବାଣୀଭୂଷଣ" ଉପାଧି ପ୍ରଦାନ କରିବାକୁ ଅଭିଳାଷ କଲେ । ମାତ୍ର ଅନ୍ୟ କେତେକ ଲୋକ ନାନା କାରଣରୁ ଏଥିରେ ବାଧା ଦେଲେହେଁ କବିବର ରାଧାନାଥ ଓ ମଧୁସୂଦନ ଏହି ବାଣୀଭୂଷଣ ପଦ ପାଇବାରେ ମୃତ୍ୟୁଞ୍ଜୟ ସର୍ବଥା ଉପଯୁକ୍ତ ପାତ୍ର ବୋଲି ସ୍ପଷ୍ଟ ଭାବରେ ମତ ବ୍ୟକ୍ତ କଲେ । ଏଥିରେ ତାଙ୍କର ବିପକ୍ଷ ଦଳ ଏକପ୍ରକାର ପରାସ୍ତ ହେଲେ ଏବଂ ୧୯୦୪ ଖ୍ରୀଷ୍ଟାବ୍ଦରେ କଟକର ଭଦ୍ରମଣ୍ଡଳୀ ସ୍ଥାନୀୟ ପ୍ରସିଦ୍ଧ ଜମିଦାର ଲକ୍ଷ୍ମୀନାରାୟଣ ଚଉଧୁରୀଙ୍କ ପ୍ରାଙ୍ଗଣରେ ଗୋଟିଏ ସାଧାରଣ ସଭା ଆହ୍ୱାନ କରି ସୁପଣ୍ଡିତ ଶଙ୍କରାନନ୍ଦ ମଠର ସ୍ୱାମୀଙ୍କ ସଭାପତିତ୍ୱରେ ତାଙ୍କୁ "ବାଣୀଭୂଷଣ" ଉପାଧି ପ୍ରଦାନ କଲେ । ମାତ୍ର ତାଙ୍କର ଶତ୍ରୁଦଳ ଏଥିରେ ଈର୍ଷାନ୍ୱିତ ହୋଇ ନାନାଭାବରେ ତାଙ୍କର କୁତ୍ସା ରଚନା କରିବାକୁ ଲାଗିଲେ । କେହି କେହି କହିଲେ —

"ଅମଙ୍ଗଳସ୍ୟ ବାରସ୍ୟ ଯଥା ମଙ୍ଗଳବାରତା ।
ଅବାଣୀଭୂଷଣସ୍ୟାପି ବାଣୀଭୂଷଣତା ତଥା ।"

ଅର୍ଥାତ୍ ଅମଙ୍ଗଳସୂଚକ ବାରକୁ ଯେପରି ମଙ୍ଗଳବାର ନାମ ଦିଆ ଯାଇଅଛି, ସେହିପରି ଅବାଣୀଭୂଷଣଙ୍କୁ ବାଣୀଭୂଷଣ ପଦ ପ୍ରଦତ୍ତ ହୋଇଅଛି । ଆଉ ମଧ୍ୟ କେହି କେହି ପ୍ରଚାର କଲେ, ମୃତ୍ୟୁଞ୍ଜୟ ଉପାଧି ପରୀକ୍ଷାରେ ପାଶ୍ କରି ଉପାଧି ପାଇପାରିବେ ନାହିଁ ଦେଖି ଏପରି କୌଶଳରେ ଗୋଟାଏ "କାଠଯୋଡ଼ିକୂଳିଆ" ଉପାଧି ନେଲେ । ଏଥିରେ ସେ ଏକାନ୍ତ ମର୍ମାହତ ହୋଇ କାବ୍ୟୋପାଧି ପରୀକ୍ଷା ନିମିତ୍ତ ପୁନର୍ବାର ଚେଷ୍ଟା ଆରମ୍ଭ କଲେ ଏବଂ ୧୯୦୬ ମସିହାରେ ଉପାଧି ପରୀକ୍ଷାରେ ଉପସ୍ଥିତ ହେଲେ । ଏତେବେଳେ ମଧ୍ୟ ତାଙ୍କର ବିପକ୍ଷ ଦଳ ତାଙ୍କ ଯୋଗ୍ୟତାରେ ସନ୍ଦିହାନ ହୋଇ ନାନାଭାବରେ ତାଙ୍କୁ ଉପହାସ କରୁଥିଲେ । ମାତ୍ର ଯେତେବେଳେ ଦେଖିଲେ ଯେ, ମୃତ୍ୟୁଞ୍ଜୟ ବଙ୍ଗ ବିହାର ଓଡ଼ିଶା ଛୋଟନାଗପୁରର ପରୀକ୍ଷାର୍ଥିମାନଙ୍କର ଶୀର୍ଷସ୍ଥାନ ଅଧିକାର କରି ଏକାକୀ ପ୍ରଥମ ବିଭାଗରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି, ସେତେବେଳେ ସେମାନଙ୍କ ମୁଖ ମଳିନ ହୋଇଗଲା ଏବଂ ସେମାନେ ସ୍ୱୀୟ ପ୍ରତିକୂଳ ମତ ବିପକ୍ଷରେ ସ୍ୱୟଂ ସାକ୍ଷୀ ହୋଇ ମୃତ୍ୟୁଞ୍ଜୟଙ୍କର ଭୂୟସୀ ପ୍ରଶଂସା କରିବାକୁ ଲାଗିଲେ । ଉପାଧି ପରୀକ୍ଷାରେ ପ୍ରଥମ ସ୍ଥାନ ପାଇଥିବାରୁ ମୃତ୍ୟୁଞ୍ଜୟ ଏ ସମୟରେ ସରକାରରୁ ଟ ୪୦/- ପୁରସ୍କାରରୂପେ ପାଇଥିଲେ । ସେହିଦିନ ଠାରୁ ସେ ମୃତ୍ୟୁଞ୍ଜୟ ରଥ ବାଣୀଭୂଷଣ କାବ୍ୟତୀର୍ଥ ନାମରେ ସର୍ବତ୍ର ପରିଚିତ ।

ଚିତ୍ରବିଦ୍ୟା ବା ଡ୍ରଇଁରେ ମୃତ୍ୟୁଞ୍ଜୟ ସେପରି ବ୍ୟୁତ୍ପନ୍ନ ନ ଥିଲେହେଁ ଏକାବେଳେକେ ଅକ୍ଷମ ନ ଥିଲେ । ୧୯୦୫ ମସିହା ଫେବୃୟାରୀ ମାସରେ କଟକ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଜଣେ ସହକାରୀ ଡ୍ରଇଁ ଶିକ୍ଷକ ଆବଶ୍ୟକ ହେବାରୁ ମୃତ୍ୟୁଞ୍ଜୟ ସେଥିପାଇଁ ପ୍ରାର୍ଥୀ ହେଲେ । ପୂର୍ବରୁ ସ୍ଥାନୀୟ ରେଭେନ୍ସା କଲେଜର ପ୍ରଫେସର୍ ଓ ପ୍ରିନ୍ସିପାଲ ମହଲରେ ତାଙ୍କର ଖ୍ୟାତି ପ୍ରଚାରିତ ହୋଇଥିଲା । ସେମାନଙ୍କ ଯତ୍ନରେ ମୃତ୍ୟୁଞ୍ଜୟ ମାସିକ ଟ ୧୫/- ମାତ୍ର ବେତନରେ ସେହି ପଦ ପ୍ରାପ୍ତ ହେଲେ । ସେତେବେଳେ କଟକ ଟ୍ରେନିଂ ସ୍କୁଲ ପରୀକ୍ଷୋତ୍ତୀର୍ଣ୍ଣ ଲୋକମାନଙ୍କ ପକ୍ଷରେ କୌଣସି ଗଭର୍ଣ୍ଣମେଣ୍ଟ ହାଇ ସ୍କୁଲରେ, ବିଶେଷତଃ କଲେଜିଏଟ୍ ସ୍କୁଲରେ ଶିକ୍ଷକତା ଲାଭ କରିବା ସ୍ୱପ୍ନର ବିଷୟ ଥିବାରୁ ମୃତ୍ୟୁଞ୍ଜୟ ଅତ୍ୟଳ୍ପ ବେତନରେ ସେ ପଦ ପାଇଲେହେଁ ଆପଣାକୁ ଧନ୍ୟ ମନେ କରିଥିଲେ । ସେ ଉପାଧି ପରୀକ୍ଷାରେ ପାଶ୍ କରିବା ପରେ ସେହି ସ୍କୁଲର ଦ୍ୱିତୀୟ ପଣ୍ଡିତ ପଦକୁ ଉନ୍ନୀତ ହେଲେ ଏବଂ ପ୍ରାୟ ୧୭ ବର୍ଷ କାଳ ନାନା ସୁଖ୍ୟାତି ସହିତ ସେହି କାର୍ଯ୍ୟ ପରିଚାଳନ କରି ଉପରିସ୍ଥ କର୍ମଚାରିମାନଙ୍କର ଶ୍ରଦ୍ଧା ପ୍ରୀତି ଓ ବିଶ୍ୱାସର ପାତ୍ର ହୋଇଥିଲେ । କଲେଜିଏଟ୍ ସ୍କୁଲ୍‌ର ଅନ୍ୟାନ୍ୟ ହେଡ ମାଷ୍ଟରଙ୍କ ମଧ୍ୟରେ ମିଷ୍ଟର୍ ହ୍ୟାଣ୍ଡର୍ସନ୍ ତାଙ୍କ ଗୁଣରେ ଏକାନ୍ତ ମୁଗ୍ଧ ହୋଇଥିଲେ ଏବଂ ତାଙ୍କୁ ଉଚ୍ଚ ପଦ ପ୍ରଦାନ କରିବାପାଇଁ ଘନ ଘନ ଗଭର୍ଣ୍ଣମେଣ୍ଟଙ୍କୁ ଅନୁରୋଧ କରୁଥିଲେ ଏବଂ ତାଙ୍କରି ଯତ୍ନରେ ସେ ୧୯୨୦ ସାଲରୁ ମାସିକ ଟ ୫୪/- ବେତନ ପାଉଥିଲେ । କଲେଜିଏଟ୍ ସ୍କୁଲରେ କାର୍ଯ୍ୟ କରିବାବେଳେ ମୃତ୍ୟୁଞ୍ଜୟ ଛାତ୍ରମାନଙ୍କୁ ପ୍ରବନ୍ଧ ଲେଖିବାରେ ଉତ୍ସାହିତ କରୁଥିଲେ ଏବଂ ସେମାନଙ୍କ ପ୍ରବନ୍ଧ ସବୁ ସଂଶୋଧନ କରି ପ୍ରଥମେ ହାତଲେଖା ମାସିକ ପତ୍ରିକାକାରରେ ଓ ପରେ The Collegiate School Magazine ନାମକ ଛାପା ମାସିକ ପତ୍ରିକାକାରରେ ପ୍ରକାଶ କରୁଥିଲେ । ଏଥିମଧ୍ୟରେ କଟକ ଟ୍ରେନିଂ ସ୍କୁଲରେ ହେଡ୍ ପଣ୍ଡିତ ପଦ ଶୂନ୍ୟ ହେବାରୁ ତଦୀୟ ଗୁଣମୁଗ୍ଧ ମିଷ୍ଟର ହ୍ୟାଣ୍ଡର୍ସନ (ତତ୍କାଳୀନ ଅସ୍ଥାୟୀ ସ୍କୁଲ ଇନ୍‌ସ୍ପେକ୍ଟର) ୧୯୧୯ ସାଲ ମେ ମାସରେ ଅସ୍ଥାୟୀ ଭାବରେ ତାଙ୍କୁ ସେ ପଦରେ ନିଯୁକ୍ତ କଲେ । ସ୍ୱୀୟ ବେତନ ବ୍ୟତୀତ ଛାତ୍ରାବାସର ସହକାରୀ ସୁପରିଣ୍ଟେଣ୍ଡେଣ୍ଟରୂପେ ସେ ଟ୍ରେନିଂ ସ୍କୁଲରେ ମାସିକ ୨୦/୨୫ ଟଙ୍କା ଅତିରିକ୍ତ ବେତନ ପାଉଥିଲେ । ମାତ୍ର ନାନା କାରଣରୁ ସ୍କୁଲର ହେଡ୍‌ମାଷ୍ଟର ମହାଶୟଙ୍କ ସଙ୍ଗେ ତାଙ୍କର ମନୋମାଳିନ୍ୟ ଉପସ୍ଥିତ ହେଲା । ତେଣୁ ସେ ୧୯୨୧ ମସିହା ଜାନୁଆରୀ ମାସରେ ତାଙ୍କର ସ୍ଥାୟୀ କାର୍ଯ୍ୟ ରେଭେନ୍ସା କଲେଜିଏଟ୍ ସ୍କୁଲର ଦ୍ୱିତୀୟ ପଣ୍ଡିତ ପଦକୁ ପରିବର୍ତ୍ତିତ ହୋଇଗଲେ । ତାଙ୍କ ମୃତ୍ୟୁର ପ୍ରାୟ ଏକବର୍ଷ

ପୂର୍ବେ ପୁରୀ ଜିଲ୍ଲା ସ୍କୁଲରେ ହେଡ଼ ପଣ୍ଡିତ ମହାମହୋପାଧ୍ୟାୟ ପଣ୍ଡିତ ସଦାଶିବ ମିଶ୍ର କାର୍ଯ୍ୟକ୍ଷେତ୍ରରୁ ଅବସର ନେବାରୁ ରେଭେନ୍ସା କଲେଜିଏଟ୍ ସ୍କୁଲର ହେଡ୍ ପଣ୍ଡିତ ପଦ ଶୂନ୍ୟ ହେଲା ଏବଂ ମୃତ୍ୟୁଞ୍ଜୟ ସେହି ପଦରେ ୬୦/- ଟଙ୍କା ବେତନରେ ସବର୍ଡିନେଟ ଏଡୁକେଶନାଲ ସର୍ଭିସ୍‌ରେ ନିଯୁକ୍ତ ହୋଇଥିଲେ ।

କ୍ରମାନ୍ୱୟରେ ପ୍ରାୟ ୨୦ ବର୍ଷ କାଳ ମୃତ୍ୟୁଞ୍ଜୟ ଉତ୍କଳର ପ୍ରଧାନ ମାସିକ ପ୍ରତିକା ''ଉତ୍କଳ ସାହିତ୍ୟ''ର ନିୟମିତ ଲେଖକ ଥିଲେ । ତାଙ୍କର ବନ୍ଧୁ ଶ୍ରୀଯୁକ୍ତ ବାବୁ ବ୍ରଜସୁନ୍ଦର ଦାସ B. A. ମହାଶୟ ଯେତେବେଳେ ''ମୁକୁର'' ପତ୍ରିକାର ସମ୍ପାଦନ ଆରମ୍ଭ କଲେ, ସେତେବେଳେ ସେ ଅବଶ୍ୟ କେତେକ ବର୍ଷପାଇଁ ମୁକୁରରେ ଲେଖୁଥିଲେ, ମାତ୍ର ''ଉତ୍କଳ-ସାହିତ୍ୟ'' ହିଁ ତାଙ୍କ ପ୍ରବନ୍ଧାବଳୀ ପ୍ରକାଶର ପ୍ରଧାନ ପତ୍ରିକା । ତାଙ୍କର ଲେଖନୀ ପ୍ରଧାନତଃ ଦିଓଟି ବିଷୟରେ ଚାଳିତ ହେଉଥିଲା । ୧ – ପ୍ରତ୍ନତତ୍ତ୍ୱ; ୨ – ଜୀବନଚରିତ । ଏତଦ୍‌ବ୍ୟତୀତ ଓଡ଼ିଆ ଭାଷାର ମୂଳତତ୍ତ୍ୱ ସମ୍ବନ୍ଧରେ ସେ ଅନେକଗୁଡ଼ିଏ ପ୍ରବନ୍ଧ ମଧ୍ୟ ଲେଖିଥିଲେ । ତାଙ୍କର ସମଗ୍ର ପ୍ରବନ୍ଧାବଳୀ ସଂଗୃହୀତ ହେଲେ ଗୋଟିଏ ପ୍ରକାଣ୍ଡ ପୁସ୍ତକ ହେବ । ମୃତ୍ୟୁଞ୍ଜୟ ପ୍ରାଚୀନ ଉତ୍କଳ ସାହିତ୍ୟରେ ଜଣେ ପ୍ରଧାନ ସମାଲୋଚକ ଥିଲେ । ଉତ୍କଳର ଅଧିକାଂଶ ପ୍ରାଚୀନ କବିଙ୍କ କାବ୍ୟ ସମାଲୋଚନା କରି ଓ ଜୀବନଚରିତ ସଂଗ୍ରହ କରି ସେ ଅନେକ ବର୍ଷ ''ଉତ୍କଳ ସାହିତ୍ୟ ସମାଜ''ରୁ ତାଳଚେର ପୁରସ୍କାର ପାଇଥିଲେ । ଉତ୍କଳର ଆଦିକବି ''ସାରଳାଦାସ''ଙ୍କ ପ୍ରଣୀତ ମହାଭାରତ ଆଲୋଚନାରେ ସେ ''ସାରଳାଚରିତ'' ନାମକ ଯେଉଁ ପୁସ୍ତକ ପ୍ରଣୟନ କରିଅଛନ୍ତି, ତାହା ପାଠ କଲେ ଜଣାଯାଏ ଯେ, ମୃତ୍ୟୁଞ୍ଜୟଙ୍କର ସାହିତ୍ୟିକ ସୂକ୍ଷ୍ମ ତତ୍ତ୍ୱ ଅନ୍ୱେଷଣର କ୍ଷମତା ଅନନ୍ୟ–ସାଧାରଣ ଥିଲା । ଏହିସବୁ ପ୍ରାଚୀନ ତଥ୍ୟ ସଙ୍କଳନରେ ବ୍ରତୀ ହୋଇ ତଦୀୟ ବନ୍ଧୁ ବାବୁ ଶ୍ରୀ ଚିନ୍ତାମଣି ଆଚାର୍ଯ୍ୟ B.A. B.L. ଙ୍କ ସାହାଯ୍ୟରେ ରୟେଲ୍ ଆସିୟାଟିକ୍ ସୋସାଇଟିର ଜଣେ ସଭ୍ୟ ହେଲେ ଏବଂ ସେହି ସମୟରୁ M.R.A.S. ବୋଲି ବନ୍ଧୁସମାଜରେ ପରିଚିତ ହୋଇଥିଲେ ।

ମୃତ୍ୟୁଞ୍ଜୟ ଟ୍ରେନିଂ ସ୍କୁଲ ଛାଡ଼ିବା ପରେ ଆଚାର୍ଯ୍ୟ ମଧୁସୂଦନଙ୍କ ପ୍ରେରଣାରେ ପ୍ରଥମେ ଶବ୍ଦତତ୍ତ୍ୱ ଆଲୋଚନାରେ ନିଯୁକ୍ତ ଥିଲେ । ଏହି ଉଦ୍ଦେଶ୍ୟରେ ସେ ବଙ୍ଗଳା ପ୍ରକୃତିବାଦ ଅଭିଧାନରେ ପ୍ରାୟ ପ୍ରତ୍ୟେକ ଶବ୍ଦର ପ୍ରକୃତି ଓ ଅର୍ଥ ଆଲୋଚନା କରିଥିଲେ । ଓଡ଼ିଆ ''ମୂଳଶବ୍ଦବୋଧିକା'' ତଦ୍‌ପ୍ରଣୀତ ପ୍ରଥମ ଗ୍ରନ୍ଥ । ସେଥିରେ ସେ ଅପଭ୍ରଷ୍ଟ ଓଡ଼ିଆ ଶବ୍ଦମାନଙ୍କର ସଂସ୍କୃତ ପ୍ରତିଶବ୍ଦମାନ ପ୍ରଦାନ କରିଅଛନ୍ତି । ତାହା ଅବଶ୍ୟ ପଣ୍ଡିତ

ଆର୍ତ୍ତତ୍ରାଣ ଶତପଥୀ-ପ୍ରଣୀତ ଅପଭ୍ରଂଶବୋଧିନୀ ପୁସ୍ତିକାର ଅନୁକରଣରେ ଲିଖିତ ହୋଇଥିଲା, ମାତ୍ର ତାହାର ଶେଷରେ ସେ ଅପଭ୍ରଷ୍ଟ ଶବ୍ଦମାନଙ୍କର ପ୍ରକୃତି ସମ୍ବନ୍ଧରେ ଗବେଷଣାପୂର୍ଣ୍ଣ ଗୋଟିଏ କ୍ଷୁଦ୍ର ପ୍ରବନ୍ଧ ସନ୍ନିବେଶିତ କରି ନିଜ ପୁସ୍ତକର ବିଶେଷତ୍ୱ ରକ୍ଷା କରିଥିଲେ । ଏହାର କେତେକଦିନ ପରେ ସେ ''ଦୁର୍ଗାସ୍ତୁତି'' ନାମକ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ପ୍ରଣୟନ କରିଥିଲେ ।

ସାହିତ୍ୟକ୍ଷେତ୍ରରେ ମୌଳିକ ରଚନା ଶକ୍ତିସାପେକ୍ଷ । ରାଧାନାଥ ଓ ମଧୁସୂଦନଙ୍କ ମତରେ ସାହିତ୍ୟକ୍ଷେତ୍ରରେ ପ୍ରବେଶାର୍ଥିମାନେ ପ୍ରଥମେ ମୌଳିକ ପ୍ରବନ୍ଧ ଲେଖିବାକୁ ଚେଷ୍ଟା ନ କରି ଯେବେ ଉନ୍ନତ ଭାଷାର ମୌଳିକ ରଚନାବଳୀକୁ ମାତୃଭାଷାରେ ଅନୁବାଦ କରନ୍ତି, ତେବେ ସେମାନଙ୍କର ଚିନ୍ତାଶକ୍ତିର ଯଥେଷ୍ଟ ଅନୁଶୀଳନ ହୁଏ । ଏହି ଉପଦେଶର ବଶବର୍ତ୍ତୀ ହୋଇ ମୃତ୍ୟୁଞ୍ଜୟ ସଂସ୍କୃତ ବିକ୍ରମୋର୍ବଶୀୟ ଓ ମୁଦ୍ରାରାକ୍ଷସ ନାଟକ ଦ୍ୱୟର ଅନୁବାଦରେ ବ୍ରତୀ ହୋଇଥିଲେ ଏବଂ ଯଥାକାଳରେ ତାହା ପ୍ରକାଶ କରିଥିଲେ । ମୂଳ ରଚନାର ଭାବ ରକ୍ଷା କରିବାରେ ସେ କେତେଦୂର ସିଦ୍ଧହସ୍ତ ଥିଲେ, ପାଠକମାନେ ତାହା ଉପଲବ୍ଧି କରିଅଛନ୍ତି । ଆଉ ମଧ ତଦୀୟ ଗୁରୁଦେବ ଉତ୍ତରରାମ-ଚରିତ ନାଟକର ଅନୁବାଦ ସମାପନ କରି ନ ପାରି ଇହଲୋକ ତ୍ୟାଗ କରିବାରୁ ମୃତ୍ୟୁଞ୍ଜୟ ଶେଷ ଅଙ୍କଦ୍ୱୟର ଅନୁବାଦ କରି ମଧୁସୂଦନ ଗ୍ରନ୍ଥାବଳୀରେ ସନ୍ନିବେଶିତ କରିଅଛନ୍ତି । ଭାଷାର ସ୍ୱାଭାବିକ ଧାରା ବା Style ରେ ସାମଞ୍ଜ(ଞ୍ଜ)ସ୍ୟ ରକ୍ଷା କରି ସେ ତହିଁରେ ଆପଣାକୁ ମଧୁସୂଦନଙ୍କର ପ୍ରକୃତ ଶିଷ୍ୟ ଥିବାର ପ୍ରମାଣ ରଖି ଯାଇଅଛନ୍ତି । ଏତଦ୍‌ବ୍ୟତୀତ ସେ ସମଗ୍ର ମାଳତୀମାଧବ, ନାଗାନନ୍ଦ ଓ ବେଣୀସଂହାର ନାଟକତ୍ରୟର ଅନୁବାଦ କ୍ରମଶଃ ଉତ୍କଳ-ସାହିତ୍ୟରେ ପ୍ରକାଶ କରିଥିଲେ ଓ ସଂସ୍କୃତ କଥାସରିତ୍‌ସାଗରର କିୟଦଂଶ ମାତ୍ର ଅନୁବାଦ କରିଥିଲେ । ଶେଷୋକ୍ତ ଅନୁବାଦ ଅଦ୍ୟାପି ପ୍ରକାଶିତ ହୋଇ ନାହିଁ । ମହାକବି କାଳିଦାସପ୍ରଣୀତ କୁମାରସମ୍ଭବର ପ୍ରଥମ ସାତ ସର୍ଗ ମଧ ସେ ପଦ୍ୟାକାରରେ ଅନୁବାଦ କରି ଚିକିଟୀରାଜାଙ୍କ ଆନୁକୂଲ୍ୟରେ ପ୍ରକାଶ କରିଅଛନ୍ତି ।

ମୃତ୍ୟୁଞ୍ଜୟଙ୍କ ମୌଳିକ ରଚନା ମଧରେ ''ନରାଜ'' ପଦ୍ୟ ପ୍ରଧାନ । ସେ ବୌଦ୍ଧକୀର୍ତ୍ତିରାଜି ପରିପୂର୍ଣ୍ଣ ମହାନଦୀ ତୀରବର୍ତ୍ତୀ ନରାଜ ନାମକ ସ୍ଥାନର ବର୍ଣ୍ଣନା ସୁପ୍ରସିଦ୍ଧ ଚିଲିକା କାବ୍ୟର ଅନୁକରଣରେ ପଦ୍ୟାକାରରେ ଲିପିବଦ୍ଧ କରିଅଛନ୍ତି । ବିଷୟ ନିର୍ବାଚନରେ ଲେଖକ କୃତିତ୍ୱ ଦେଖାଇ ନଥିଲେହେଁ ପଦ୍ୟାତ୍ମକ ରଚନାରେ ପ୍ରଥମ ଚେଷ୍ଟାରେ ସେ ବହୁପରିମାଣରେ କୃତକାର୍ଯ୍ୟ ହୋଇଅଛନ୍ତି । ତତ୍‌ପ୍ରଣୀତ ଏହି ନରାଜ

କାବ୍ୟଖଣ୍ଡି ମୁଁ ଅନେକ ଦିନ ପୂର୍ବେ ସମାଲୋଚନା କରି ଗୋଟିଏ ପ୍ରବନ୍ଧ ଲେଖିଥିଲି ଓ ତାହା ଯଥାକାଳରେ ''ମୁକୁର'' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସୁତରାଂ ଏ ସ୍ଥାନରେ ସେ ସମ୍ବନ୍ଧରେ ବିଶେଷ ବକ୍ତବ୍ୟ ଅନାବଶ୍ୟକ । ଏହାର କେତେକଦିନ ପରେ ସେ ''ଅଦ୍ଭୁତ ପରିଣାମ'' ବୋଲି ଖଣ୍ଡିଏ କ୍ଷୁଦ୍ର ଉପନ୍ୟାସ ଲେଖିଥିଲେ; ତହିଁରେ ଉତ୍କଳୀୟ ଖ୍ରୀଷ୍ଟିୟାନ୍ ସମାଜ ପ୍ରତି ଟିକିଏ କଟାକ୍ଷ ଥିବାରୁ ସେ ଖ୍ରୀଷ୍ଟିୟାନ୍ ସମାଜର ବିରାଗଭାଜନ ହୋଇଥିଲେ ।

ଅନୁର୍ବର ଉତ୍କଳ-ସାହିତ୍ୟକ୍ଷେତ୍ରରେ ଏହି ସବୁ ପୁସ୍ତକର ଆଶାନୁରୂପ ପ୍ରଚାର ନଦେଖି ମୃତ୍ୟୁଞ୍ଜୟ ପାଠ୍ୟପୁସ୍ତକ ଲେଖିବାରେ ଅଭିଳାଷୀ ହେଲେ । ପାଠ୍ୟପୁସ୍ତକ ମଧ୍ୟରେ ତାଙ୍କର ନିଜର ମୌଳିକ ରଚନା ଅଳ୍ପ ଏବଂ ଅନୁବାଦ ଓ ସଂଗ୍ରହ ବେଶି । ଉପାଧି ପରୀକ୍ଷାରେ ପାଶ୍ କରିବା ପୂର୍ବରୁ ସେ ହାଇ ସ୍କୁଲ୍ ଛାତ୍ରମାନଙ୍କ ଉପଯୋଗୀ ଖଣ୍ଡିଏ ଇଂରେଜୀ-ସଂସ୍କୃତ ଅନୁବାଦ ପୁସ୍ତକ ଲେଖିଥିଲେ ଏବଂ ତାହା ଦେବନାଗର ଅକ୍ଷରରେ କଲିକତାରେ ମୁଦ୍ରିତ ହୋଇଥିଲା । ଓଡ଼ିଆ ସୁଖବୋଧ ବ୍ୟାକରଣରେ ମୃତ୍ୟୁଞ୍ଜୟ ନାନାଭାବରେ ଓଡ଼ିଆ ଶବ୍ଦମାନଙ୍କର ପ୍ରକୃତି ବିଷୟରେ ଯେପରି ଆଲୋଚନା କରିଅଛନ୍ତି, ମାନନୀୟ ଚନ୍ଦ୍ରମୋହନ ମହାରା(ର)ଣାଙ୍କ ବ୍ୟତୀତ ଅନ୍ୟ କୌଣସି ବ୍ୟାକରଣ ଲେଖକ ସେପରି ଆଲୋଚନା କରି ନାହାନ୍ତି । ତତ୍‌ପ୍ରଣୀତ ''ପ୍ରବନ୍ଧପାଠ'' ହାଇ ସ୍କୁଲ୍‌ର ନବମ ଶ୍ରେଣୀର ପାଠ୍ୟ । ତହିଁର ଅଧିକାଂଶ ପ୍ରବନ୍ଧ ସଂଗୃହୀତ ବା ଅନୂଦିତ ହେଲେହେଁ ଭାଷାର ସ୍ୱାଭାବିକ ଧାରା ବା Style ରେ ମୃତ୍ୟୁଞ୍ଜୟଙ୍କର କୃତିତ୍ୱ ରହିଅଛି । ବାବୁ ଜଗନ୍ନାଥ ମହାପାତ୍ର B.A. ଓ ସେ ''ସାହିତ୍ୟପାଠ'' ନାମରେ ସେହି ଗଦ୍ୟପଦ୍ୟାତ୍ମକ ପୁସ୍ତକ ଖଣ୍ଡି ଲେଖିଥିଲେ, ତାହା ମଧ୍ୟମଶ୍ରେଣୀ ବିଦ୍ୟାଳୟର ପାଠ୍ୟପୁସ୍ତକରୂପେ ଅଦ୍ୟାପି ଚଳୁଅଛି । ଏଥିରେ ମୃତ୍ୟୁଞ୍ଜୟଙ୍କର ଯେଉଁ କେତେଗୋଟି ମୌଳିକ କବିତା ବା ପ୍ରବନ୍ଧ ଅଛି, ତାହା ଅତୀବ ଚିତ୍ତାକର୍ଷକ । ଏତଦ୍‌ବ୍ୟତୀତ ସେ ବାଳିକାପାଠ୍ୟ ଉଦ୍ଦେଶ୍ୟରେ ନାରୀଦର୍ପଣ (୨ ଭାଗ), ଶିଶୁପାଠ୍ୟ ପଦ୍ୟାକାରରେ ''ରସାବଳୀ'' ଓ ହାଇ ସ୍କୁଲ ଛାତ୍ରମାନଙ୍କର ପ୍ରୟୋଜନ ଦୃଷ୍ଟିରେ ''ଅନୁବାଦ ରଚନା'' ନାମରେ କେତେକ ଖଣ୍ଡ ପୁସ୍ତକ ମଧ୍ୟ ଲେଖିଥିଲେ । ତତ୍‌ପ୍ରଣୀତ ଖଣ୍ଡିଏ ସରଳ ଓଡ଼ିଆ ଅଭିଧାନ ଓ କର୍ମୀ ଗୌରୀଶଙ୍କରଙ୍କ ଜୀବନବୃତ୍ତାନ୍ତ ବର୍ତ୍ତମାନ ଯନ୍ତ୍ରସ୍ଥ । ସେ ଅଭିଧାନ ଖଣ୍ଡିକ ''ପ'' ଅକ୍ଷର ପର୍ଯ୍ୟନ୍ତ ଲେଖି ପ୍ରେସ୍‌କୁ ଦେଇଯାଇଅଛନ୍ତି । ଆଶା କରିଥିଲେ, ତାହା ମୁଦ୍ରିତ ହେଉ ହେଉ ଅବଶିଷ୍ଟ ଅଂଶ ଲେଖିଦେବେ, ମାତ୍ର କ୍ରୂର କାଳ ତାହା କରି ଦେଲା ନାହିଁ ।

ଢେଙ୍କାନାଳର ଭୂତପୂର୍ବ ରାଜା ଶୂ(ସୂ)ରପ୍ରତାପ ମହେନ୍ଦ୍ର ବାହାଦୂରଙ୍କ କର୍ତ୍ତୃକ ଅନୁରୁଦ୍ଧ ହୋଇ ସେ ପ୍ରାୟ ୬ ମାସ ପରିଶ୍ରମ କରି ଢେଙ୍କାନାଳ ରାଜ୍ୟର ଇତିହାସ ଲେଖିଥିଲେ; ମାତ୍ର ରାଜା ବାହାଦୂରଙ୍କ ଅକାଳବିୟୋଗ ହେତୁରୁ ସେ ପୁସ୍ତକ ଖଣ୍ଡି ଯଥାକାଳରେ ପ୍ରକାଶିତ ହୋଇପାରିଲା ନାହିଁ ଏବଂ ସେ ତହିଁର ପୁରସ୍କାର ମଧ୍ୟ ପାଇପାରିଲେ ନାହିଁ । ଏ ବିଷୟରେ ସେ ଅନେକ ଥର ଦୁଃଖ ପ୍ରକାଶ କରିଅଛନ୍ତି । ବାଲେଶ୍ୱର ମହାରାଜ ବୈକୁଣ୍ଠନାଥ ଦେ ବାହାଦୂର ସ୍ୱର୍ଗୀୟ କବିବର ରାଧାନାଥଙ୍କ ଜୀବନବୃତ୍ତାନ୍ତ ସଂଗ୍ରହ କରିବାର ଭାର ତାଙ୍କ ଉପରେ ନ୍ୟସ୍ତ କରିବାରୁ ସେ କାର୍ଯ୍ୟକ୍ଷେତ୍ରରୁ ୧ମାସ ଛୁଟି ନେଇ ବାଲେଶ୍ୱରରେ ରହିଥିଲେ ଏବଂ ସେଠାରୁ କବିବରଙ୍କ ଜନ୍ମସ୍ଥାନ କେଦାରପୁର ଯାଇ ଏବଂ ତାଙ୍କର ସମସାମୟିକ ଅନେକ ଲୋକଙ୍କ ସଙ୍ଗେ ଆଳାପ କରି ବହୁ ବିଷୟ ସଂଗ୍ରହ କରିଥିଲେ । ତାଙ୍କର ଆଶା ଥିଲା ଯେ, ଯୋଗୀନ୍ଦ୍ରନାଥ ବସୁ ପ୍ରଣୀତ ବଙ୍ଗଳା ମାଇକେଲ ମଧୁସୂଦନ ଦତ୍ତଙ୍କ ଜୀବନଚରିତ ପୁସ୍ତକ ଅନୁକରଣରେ କବିଙ୍କ ସମସାମୟିକ ଲୋକମାନଙ୍କର ହାଫ୍‌ଟୋନ୍ ଛବି ଦେଇ ଓ ତତ୍‌ପ୍ରଣୀତ ଗ୍ରନ୍ଥମାନଙ୍କର ସଂକ୍ଷିପ୍ତ ସମାଲୋଚନା କରି ଓଡ଼ିଆରେ ଖଣ୍ଡିଏ ସର୍ବାଙ୍ଗ ସୁନ୍ଦର ଜୀବନଚରିତ ଲେଖିବେ । ଗତବର୍ଷ ଉତ୍କଳ ସାହିତ୍ୟସମାଜ ରାଧାନାଥଙ୍କ ଜୀବନ ବୃତ୍ତାନ୍ତ ଲେଖିବାପାଇଁ ପୁରସ୍କାର ଘୋଷଣା କରିବାରୁ ମୃତ୍ୟୁଞ୍ଜୟ ତାଙ୍କର ପୂର୍ବ କଳ୍ପନାନୁରୂପ ଜୀବନବୃତ୍ତାନ୍ତ ଲେଖିବାକୁ ଆରମ୍ଭ କରି ସମୟର ଅଳ୍ପତାବଶତଃ ଦିଓଟି ମାତ୍ର ଅଧ୍ୟାୟ ସମାଜ ହସ୍ତରେ ଅର୍ପଣ କରିଥିଲେ । ମାତ୍ର ତାହା ପୂର୍ଣ୍ଣତା ପ୍ରାପ୍ତ ହୋଇ ନଥିବାରୁ ପୁରସ୍କାର ପାଇପାରିଲେ ନାହିଁ । ଏଥି ମଧ୍ୟରେ ସେ "ଉତ୍କଳ ପତ୍ରିକା" ନାମରେ ଗୋଟିଏ ପ୍ରବନ୍ଧ ଲେଖିଥିଲେ ଏବଂ ତହିଁରେ ଇଂରେଜ ରାଜତ୍ୱର ଉତ୍କଳ ସମ୍ବାଦପତ୍ରମାନଙ୍କର ଧାରାବାହିକ ଇତିହାସ ଲିପିବଦ୍ଧ କରିଯାଇଅଛନ୍ତି । ଏହି ପ୍ରବନ୍ଧ ପ୍ରକାଶରେ ଉତ୍କଳର ଶିକ୍ଷିତମଣ୍ଡଳୀ ତାଙ୍କର ଅନୁସନ୍ଧିତ୍ସା ଓ ଗବେଷଣାର ଭୂୟସୀ ପ୍ରଶଂସା କରିବାରୁ ସେ ତାହାକୁ ପୁସ୍ତିକାକାରରେ ପ୍ରକାଶ କଲେ । ସେହି ପୁସ୍ତିକା ଖଣ୍ଡି କ୍ଷୁଦ୍ର ହେଲେହେଁ ଆଜି ଉତ୍କଳ ସାହିତ୍ୟଭଣ୍ଡାରରେ ଗୋଟିଏ ଅମୂଲ୍ୟ ରତ୍ନ ।

ଅତ୍ୟଳ୍ପ କାଳ ମଧ୍ୟରେ ମୃତ୍ୟୁଞ୍ଜୟ ସାହିତ୍ୟ କ୍ଷେତ୍ରର ନାନା ବିଭାଗରେ କାର୍ଯ୍ୟ କରି ଅସାଧାରଣ ଅଧ୍ୟବସାୟର ଆଦର୍ଶ ରଖି ଯାଇଅଛନ୍ତି । ସ୍କୁଲର କାର୍ଯ୍ୟ ଓ ଟିଉସନ୍‌ରେ ତାଙ୍କର ଅଧିକାଂଶ ସମୟ ଅତିବାହିତ ହେଉଥିଲା । ତେଣୁ ଅବକାଶ ସମୟରେ ଏହିସବୁ ସାହିତ୍ୟର କାର୍ଯ୍ୟ କରିବାପାଇଁ ତାଙ୍କୁ କେତେ ଅତିରିକ୍ତ ପରିଶ୍ରମ

କରିବାକୁ ପଡୁଥିଲା, ତାହା ସହଜରେ ଅନୁମାନ କରାଯାଇ ପାରେ । ଏତଦ୍‌ବ୍ୟତୀତ ଉତ୍କଳ ସାହିତ୍ୟସମାଜର ସେ ଜଣେ ପ୍ରଧାନ ସଭ୍ୟ ଥିଲେ ଓ ସାହିତ୍ୟ ସମାଜପାଇଁ ଅନେକ କାର୍ଯ୍ୟ କରୁଥିଲେ । ସାହିତ୍ୟ ସମାଜର ଅନୁସନ୍ଧାନ-ସମିତିର ସମ୍ପାଦକ କାର୍ଯ୍ୟ କରିବା ଭଳି ଅନ୍ୟ ଲୋକ ବର୍ତ୍ତମାନ ଉତ୍କଳରେ ଏକାନ୍ତ ଦୁର୍ଲଭ କହିଲେ ଚଳେ ।

ମୃତ୍ୟୁଞ୍ଜୟଙ୍କ ପାରିବାରିକ ଜୀବନ ସୁଖମୟ ନଥିଲା । ସ୍ୱୀୟ ଗ୍ରାମର ମିଶ୍ର ଗୋଷ୍ଠୀର ଗୋଟିଏ ରୂପବତୀ ଓ ଗୁଣବତୀ କନ୍ୟାଙ୍କ ସଙ୍ଗେ ତାଙ୍କର ପରିଣୟ ହୋଇଥିଲା ଏବଂ ଟ୍ରେନିଂ ସ୍କୁଲ ତୃତୀୟ ବର୍ଷୀୟ ଶ୍ରେଣୀରେ ପଢ଼ିବା ସମୟରୁ ସେ ସଂସାରାଶ୍ରମରେ ପ୍ରବେଶ କରିଥିଲେ । ଏହି ଦମ୍ପତି ୫ ପୁତ୍ର ଓ ଗୋଟିଏ କନ୍ୟାର ପିତା ମାତା ରୂପେ ପ୍ରାୟ ୧୨ ବର୍ଷ କଟାଇଥିଲେ । ଜନ୍ମର ଅଳ୍ପଦିନ ପରେ ତାଙ୍କର ଯମଜ ପୁତ୍ରଦ୍ୱୟ ପ୍ରାଣତ୍ୟାଗ କରିଥିଲେ ଏବଂ ୧୯୧୨ ମସିହାରେ ତାଙ୍କର ଜ୍ୟେଷ୍ଠପୁତ୍ର ଓ ସ୍ତ୍ରୀ ଅକସ୍ମାତ୍ ବିସୂଚିକା ରୋଗରେ ପ୍ରାଣତ୍ୟାଗ କଲେ । ଏହି ଦୁଃସମ୍ବାଦ ସେ ଗ୍ରାମଠାରୁ ମୋ ନିକଟକୁ ଯେଉଁ ପତ୍ରରେ ଲେଖିଥିଲେ, ତାହାର କେତେ ପଂକ୍ତି ଅଦ୍ୟାପି ମୋର ସ୍ମୃତିପଟରେ ଜାଗରୂକ ଅଛି । ''ଭାଇ, 'ପୁତ୍ର ସହିତେ ପତ୍ନୀ ମଲା, ସର୍ବସମ୍ପଦ ମୋର ଗଲା ।' ମୋର ସଂସାରାଶ୍ରମର ସୁଖ ଆଜିଠାରୁ ସରିଗଲା, କଣ ବୋଲି ମୋତେ ଆଉ ସାନ୍ତ୍ୱନା ଦେବ ?'' ପ୍ରକୃତରେ ଗୁଣବତୀ ପତ୍ନୀ ଓ ପ୍ରିୟ ପୁତ୍ରକୁ ହରାଇ ମୃତ୍ୟୁଞ୍ଜୟ ଏକାବେଳକେ ସଂସାର ପ୍ରତି ବୀତଶ୍ରଦ୍ଧ ଓ ଉଦାସୀନ ହୋଇ ପଡ଼ିଥିଲେ । ବିଧିର ନିଷ୍ଠୁର ବିଧାନାନୁସାରେ ପରବର୍ତ୍ତୀ ଜୀବନର ଦୁଃଖ ଯନ୍ତ୍ରଣା ଭୋଗ କରିବାପାଇଁ ଏହି କୁସୁମସୁକୁମାର ହୃଦୟ କ୍ରମେ ବଜ୍ର ପରି କଠିନ ହୋଇଯାଏ । ମୃତ୍ୟୁଞ୍ଜୟ ଯଥାକଥଞ୍ଚିତ୍ ଶୋକାବେଗ ସମ୍ବରଣ କରି କାଳଯାପନ କରୁଥିଲେ । ଏହି ସମୟରେ ତାଙ୍କର ପ୍ରିୟତମ କନିଷ୍ଠ ଭ୍ରାତା କୃତ୍ତିବାସ ବୃଦ୍ଧ ପିତା ମାତା ଓ ବାଳିକା ପତ୍ନୀଙ୍କୁ ତ୍ୟାଗ କରି ବିଂଶତି ବର୍ଷ ବୟସରେ ଇହଧାମ ତ୍ୟାଗ କଲେ ଏବଂ ମାତୃଶୂନ୍ୟ କନିଷ୍ଠ ଶିଶୁପୁତ୍ର ରାଧାନାଥ ଅଗ୍ନିଦଗ୍ଧ ହୋଇ ଅତି ଭୟଙ୍କର ଅବସ୍ଥାରେ ତାଙ୍କୁ ଛାଡ଼ି ଚାଲିଗଲେ । ଏହି ଦୁର୍ଘଟଣାମାନ କିପରି ତୀବ୍ରଭାବରେ ତାଙ୍କ ହୃଦୟରେ ଶୋକଶଙ୍କୁ ବିଦ୍ଧ କରିଥିଲା, ତାହା ସହଜରେ ଅନୁମାନ କରାଯାଇପାରେ । ବିଶେଷତଃ ମାତୃଶୂନ୍ୟ ରାଧାନାଥର କରୁଣ ମୃତ୍ୟୁ ଯେତେବେଳେ ତାଙ୍କର ସ୍ମୃତିପଥାରୂଢ଼ ହେଉଥିଲା, ସେତେବେଳେ ସେ ଅଶ୍ରୁ ବିସର୍ଜନ ନ କରି ରହିପାରୁ ନଥିଲେ । ଏହିପରି ପୁନଃ ପୁନଃ ଶୋକାଭିସନ୍ତପ୍ତ ହୋଇ ମୃତ୍ୟୁଞ୍ଜୟ ପୁନର୍ବାର ବିବାହ କରିବେ ନାହିଁ ବୋଲି ସ୍ଥିର କରିଥିଲେ । ମାତ୍ର ତାଙ୍କର ବୃଦ୍ଧ ପିତାମାତା ଗୁଣବାନ୍ ଉପାର୍ଜ୍ଜନକ୍ଷମ ଯୁବକ ପୁତ୍ରର

ଏହି ବିପତ୍ନୀକ ଅବସ୍ଥା ବହୁକାଳ ସହି ପାରିଲେ ନାହିଁ । ଶେଷରେ ପିତାମାତାଙ୍କ ଆଦେଶରେ ସେ ପ୍ରଥମା ସ୍ତ୍ରୀ ମରିବାର ପ୍ରାୟ ୨ ବର୍ଷ ପରେ ପୁନର୍ବାର ବିବାହ କଲେ । ବିଧିର ବିଧାନ ବୁଝିବାକୁ ସଂସାରରେ ଶକ୍ତି କାହାର ? ତାଙ୍କର ଦ୍ୱିତୀୟା ସ୍ତ୍ରୀ ପ୍ରାୟ ୧୦ ବର୍ଷ ଦାମ୍ପତ୍ୟ ଜୀବନ ଅନୁଭବ କରି ଏକ ପୁତ୍ର ଓ ଦୁଇ କନ୍ୟାର ଜନନୀ ହୋଇ ବର୍ତ୍ତମାନ ଯୌବନରେ ବୈଧବ୍ୟଯନ୍ତ୍ରଣା ଭୋଗ କଲେ । ମୃତ୍ୟୁଞ୍ଜୟଙ୍କର ଦିଓଟି ଭାଇ ବାଲ୍ୟକାଳରେ ପ୍ରାଣତ୍ୟାଗ କରିଥିଲେ, ଚତୁର୍ଥ କୃତ୍ତିବାସ ଯୌବନରେ ତାଙ୍କୁ ଛାଡ଼ି ଚାଲି ଯାଇଥିଲେ । ସର୍ବକନିଷ୍ଠକୁ ସେ ଅତ୍ୟଧିକ ସ୍ନେହ କରୁଥିଲେ ଏବଂ ନିଜ ପାଖରେ ରଖି ମାଟ୍ରିକୁ୍ୟଲେଶନ୍ କ୍ଲାସ୍ ପର୍ଯ୍ୟନ୍ତ ପଢ଼ାଇଥିଲେ । ଗତ ୧୯୨୦ ସାଲରେ ସେ ଯେତେବେଳେ ଟ୍ରେନିଂ ସ୍କୁଲରେ କାର୍ଯ୍ୟ କରୁଥିଲେ, ସେତେବେଳେ ସେହି ପ୍ରାଣପ୍ରିୟ ବିଶ୍ୱନାଥ ବସନ୍ତରୋଗରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ । ଏହି ନିଦାରୁଣ ପୁତ୍ରଶୋକରେ ତାଙ୍କର ବୃଦ୍ଧ ପିତା ଓ ବୃଦ୍ଧା ଜନନୀ ଏକାବେଳକେ ଭଗ୍ନହୃଦୟ ହୋଇ ପଡ଼ିଥିଲେ ଏବଂ ସେମାନେ ୧୯୨୧ ଓ ୧୯୨୨ରେ ସଂସାର ଛାଡ଼ି ଚାଲିଗଲେ । ଏହିପରି କ୍ରମେ କ୍ରମେ ସମସ୍ତଙ୍କୁ ହରାଇ ମୃତ୍ୟୁଞ୍ଜୟ ଚତୁର୍ଥ ଭ୍ରାତା ସଦାଶିବ ଉପରେ ଗୃହସ୍ଥାଶ୍ରମର ଭାର ଦେଇ କଟକରେ ଏକାକୀ ଅବସ୍ଥାନ କରୁଥିଲେ ।

ମୃତ୍ୟୁଞ୍ଜୟଙ୍କର ଆର୍ଥିକ ଅବସ୍ଥା ଅସଚ୍ଛଳ ନଥିଲା । ସ୍କୁଲ, ଟିଉଶନ୍ ଓ ପୁସ୍ତକବିକ୍ରୟରୁ ସେ ମାସିକ ଶତାଧିକ ଟଙ୍କା ଉପାର୍ଜନ କରୁଥିଲେ, ଏତଦ୍‌ବ୍ୟତୀତ ଭିନ୍ନ ଭିନ୍ନ ପରୀକ୍ଷାରେ ଓଡ଼ିଆ ସାହିତ୍ୟର ପରୀକ୍ଷକ ହୋଇ ସେ ବହୁବର୍ଷ ପର୍ଯ୍ୟନ୍ତ ବାର୍ଷିକ ପ୍ରାୟ ଦୁଇ ତିନି ଶତ ଟଙ୍କା ଆୟ କରୁଥିଲେ । ଲେଖକ ଓ ପଣ୍ଡିତରୂପେ ମଧ ସେ ମଧ୍ୟେ ମଧ୍ୟେ କିଛି କିଛି ଉପାର୍ଜନ କରୁଥିଲେ । ତାଙ୍କର ଗୃହର ଆର୍ଥିକ ଅବସ୍ଥା ମନ୍ଦ ନଥିଲା, ତେଣୁ ସେ ସ୍ୱୀୟ ଜୀବନକାଳ ମଧରେ ପ୍ରାୟ ୭/୮ ହଜାର ଟଙ୍କାର ସମ୍ପତ୍ତି କରି ଯାଇଅଛନ୍ତି । ଅଳ୍ପ ବେତନଭୋଗୀ ଅନ୍ୟ କୌଣସି ଶିକ୍ଷକ ସ୍ୱୀୟ ନାତିଦୀର୍ଘ ଜୀବନ-କାଳ ମଧରେ ଏତେ ସମ୍ପତ୍ତି କରି ପାରି ନାହାନ୍ତି, ଏହା କହିଲେ ସମ୍ଭବତଃ ଅସଙ୍ଗତ ହେବ ନାହିଁ । ତତ୍‌ପ୍ରଣୀତ ପୁସ୍ତକାବଳୀର ବିକ୍ରୟରୁ ତାଙ୍କ ବଂଶଧର ବାର୍ଷିକ ପ୍ରାୟ ୩୦୦/- ଟଙ୍କା ପାଇବେ ।

ମୃତ୍ୟୁଞ୍ଜୟ B.A. ବା M.A. ଡିଗ୍ରୀ ପାଇ ନ ଥିଲେହେଁ ସ୍ୱୀୟ ଅସାଧାରଣ ଅଧ୍ୟବସାୟ ଓ ଗବେଷଣାଦ୍ୱାରା ଯେଉଁ ଜ୍ଞାନ ଲାଭ କରିଥିଲେ ତାହା ଅନେକ ଉଚ୍ଚ ଇଂରାଜୀଶିକ୍ଷିତଙ୍କ ଜ୍ଞାନ ଅପେକ୍ଷା ବିଶୁଦ୍ଧ ଓ ଦୋଷବର୍ଜିତ । ବିଶେଷତଃ ଉତ୍କଳ

ସାହିତ୍ୟରେ ତାଙ୍କ ଭଳି ପଣ୍ଡିତ ବର୍ତ୍ତମାନ ଓଡ଼ିଶାରେ ନାହାନ୍ତି ବୋଲି କହିଲେ ଚଳେ । ସେ ଯେପରି ସୂକ୍ଷ୍ମ ଗବେଷଣାଦ୍ୱାରା ସାହିତ୍ୟର ପ୍ରକୃତ ତତ୍ତ୍ୱ ଅବଗତ ହୋଇଥିଲେ, ସେହିପରି ନିର୍ଦ୍ଦୋଷ ଓ ପରିମାର୍ଜିକ ଭାଷାରେ ପ୍ରବନ୍ଧ ଲେଖୁଥିଲେ । ବର୍ତ୍ତମାନ ସାହିତ୍ୟ କ୍ଷେତ୍ରରେ ଲେଖକ ବିରଳ ନୁହନ୍ତି, ମାତ୍ର ତାଙ୍କ ପରି ସୁପଣ୍ଡିତ ଲେଖକ ନାହାନ୍ତି କହିଲେ ଚଳେ । କୌଣସି ସ୍କୁଲରେ ଇଂରେଜୀ ପଢ଼ି ନ ଥିଲେହେ ସେ ସ୍ୱୀୟ ଚେଷ୍ଟାରେ ଇଂରେଜୀ ଭାଷାରେ ସାଧାରଣ ଜ୍ଞାନ ଅର୍ଜନ କରିଥିଲେ ଏବଂ ଇଂରେଜୀ ପ୍ରବନ୍ଧ ଓ ପୁସ୍ତକାଦିର ସାରକଥା ଓଡ଼ିଆ ପ୍ରବନ୍ଧରୂପେ ସଙ୍କଳନ କରି ଜାଣିଥିଲେ ।

ଅଧ୍ୟବସାୟ ମୃତ୍ୟୁଞ୍ଜୟଙ୍କ ଚରିତ୍ରର ସର୍ବପ୍ରଧାନ ଗୁଣ । ସେ ସ୍ୱୀୟ ଶକ୍ତି ଅନୁସାରେ ପରର ଉପକାର କରିବାକୁ ଆଦୌ କୁଣ୍ଠିତ ହେଉ ନ ଥିଲେ । ଅନେକ ନବୀନ ଲେଖକଙ୍କର ଲେଖା ସଂଶୋଧନ କରିବାରେ ତାଙ୍କର ମହାର୍ହ ସମୟ ଅପରିଚିତ ହେଲେହେଁ ସେ ତହିଁରେ କିଞ୍ଚିନ୍ମାତ୍ର ବିରକ୍ତି ପ୍ରକାଶ କରୁ ନ ଥିଲେ । ଜ୍ଞାନସ୍ପୃହା, ଯଶୋଲିପ୍ସା ଓ ବଳବତୀ ଅର୍ଥ– ପିପାସାର ବଶବର୍ତ୍ତୀ ହୋଇ ସେ ସକାଳ ୪ଟା ଠାରୁ ରାତ୍ରି ୧୨ଟାଯାଏ ଅବିଶ୍ରାନ୍ତ ଭାବରେ କାର୍ଯ୍ୟ କରୁଥିଲେ । ଶରୀର ଯେତେ ପରିଶ୍ରମ ସହ୍ୟ କରି ପାରେ, ତାହାର ଗୋଟିଏ ସୀମା ଅଛି । ମାତ୍ର ମୃତ୍ୟୁଞ୍ଜୟ ସ୍ୱୀୟ ଶରୀରକୁ ତହିଁରୁ ଅଧିକ ପରିମାଣରେ କାର୍ଯ୍ୟରେ ନିଯୁକ୍ତ କରୁଥିଲେ । ଅତିରିକ୍ତ ପରିଶ୍ରମ ଦ୍ୱାରା ଶରୀରର ଯେଉଁ କ୍ଷୟ ହୁଏ, ସାଧାରଣତଃ ଲୋକେ ପୁଷ୍ଟିକର ଆହାରଦ୍ୱାରା ସେହି କ୍ଷତି ପୂରଣ କରନ୍ତି । ମାତ୍ର ମୃତ୍ୟୁଞ୍ଜୟଙ୍କ ସ୍ୱଭାବ ଏ ବିଷୟରେ ସାଧାରଣଙ୍କ ଆଶାନୁରୂପ ନଥିଲା । ଯେତେବେଳେ ଏହି କ୍ଷୟ ଚରମ ସୀମାରେ ଉପସ୍ଥିତ ହେଲା, ତେତେବେଳେ ଶରୀର ଏକାବେଳକେ ଭାଙ୍ଗି ପଡ଼ିଲା । ଏହାହିଁ ତାଙ୍କର ମୃତ୍ୟୁର ନିଦାନ ପରି ଅନୁମିତ ହୁଏ । ମୃତ୍ୟୁର ଅନେକ ଦିନ ପୂର୍ବେ ତାଙ୍କର ଜନ୍ମପତ୍ରିକା ଗଣନା କରି ଅନେକ ଜ୍ୟୋତିଷୀ ୪୨ ବର୍ଷ ବୟସରେ ମାରକ ଦଶା ଥିବା କଥା ତାଙ୍କୁ କହିଥିଲେ । ମୃତ୍ୟୁର କେତେକ ଦିନ ଆଗେ ସେ ଦିନେ କହିଲେ, ''ଦେଖ, ୪୨ ବର୍ଷଟା ମୋ ପକ୍ଷରେ ଗୋଟିଏ ବିପଦ୍‌ପୂର୍ଣ୍ଣ ବର୍ଷ ବୋଲି ମୁଁ ଆଗରୁ ଜାଣି ସ୍ଥିର କରିଥିଲି ଯେ, ସେହି ବର୍ଷ ଆରମ୍ଭରେ ହୋମଦାନାଦି କରି ଗୋଟିଏ ଗ୍ରହପୂଜା କରାଇବି । ମାତ୍ର ସେହି ବର୍ଷଟି ଅଲକ୍ଷିତଭାବରେ କେତେବେଳେ ଆସି ଶେଷ ହେବାକୁ ବସିଲା, ମୋତେ ଜଣାଗଲା ନାହିଁ । ଯେବେ ଅବଶିଷ୍ଟ ମାସେକ କଟିଯାଏ, ତେବେ ଅନେକଦିନ ପର୍ଯ୍ୟନ୍ତ ନିଶ୍ଚିନ୍ତ ରହିବି ।'' ଏହା କହିବାର ୨/୪

ଦିନପରେ ଏହି ଅପ୍ରେଲ ମାସ ପହିଲା ଦିନ ସେ ସକାଳେ ସ୍କୁଲରେ କାର୍ଯ୍ୟ କରୁ କରୁ ଜ୍ୱରଭାବ ଅନୁଭବ କଲେ ଏବଂ ବସାରେ ଉପସ୍ଥିତ ହୋଇ କହିଲେ, ମୋ ଦେହ ଭଲ ନାହିଁ, ବୋଧହୁଏ ଜ୍ୱର ହେବ, ଆଜି ଲଘୁ ଆହାର କରିବି ।'' ଏହା କହି ସାମାନ୍ୟ ମାତ୍ର ଭୋଜନ କଲେ ଓ ଭୋଜନର ଅବ୍ୟବହିତ ପରେ ଭୟଙ୍କର ଜ୍ୱରରେ ଆକ୍ରାନ୍ତ ହେଲେ । ପହିଲାରୁ ୪ ତାରିଖ ଯାଏ ଏହି ଜ୍ୱରର ବିରାମ ହେଲାନାହିଁ । ସ୍ଥାନୀୟ ସୁଚିକିତ୍ସକ ପଣ୍ଡିତ ବାଲୁକେଶ୍ୱର ଆଚାର୍ଯ୍ୟ ଚିକିତ୍ସାର ଭାର ଗ୍ରହଣ କଲେ ଓ ତାଙ୍କର ସୁଚିକିତ୍ସାଦ୍ୱାରା ୫ ତାରିଖ ଦିନ ଜ୍ୱର ଟିକିଏ କମିଲା ଓ ୬ ତାରିଖରେ ପ୍ରାୟ ଜ୍ୱର ନଥିଲା । ତେଣୁ ସେ ୬ ତାରିଖ ରବିବାର ଦିନ ସକାଳେ ଦିଓଟି ଅନ୍ନ ଦେବାର ବ୍ୟବସ୍ଥା କଲେ । ସେ ଦିନ ସେ ବେଶ୍ ସୁସ୍ଥ ଥିଲେ ଏବଂ ଆଶା କରିଥିଲେ ଯେ, ଏ ଯାତ୍ରାରୁ ସେ ରକ୍ଷା ପାଇଲେ । ମାତ୍ର

ଅସମ୍ଭବଂ ହେମମୃଗସ୍ୟ ଜନ୍ମ
ତଥାପି ରାମୋ ଲୁଲୁଭେ ମୃଗାୟ ।
ପ୍ରାୟଃ ସମାପନ୍ନବିପତ୍ତିକାଳେ
ଧିୟୋଽପି ପୁଂସାଂ ମଳିନୀ ଭବନ୍ତି ।

ସେଦିନ ରାତ୍ରରେ ବସାରେ ସମସ୍ତେ ଖାଇ ସାରି ଶୋଇବା ପରେ ପ୍ରାୟ ରାତି ଗୋଟାଏ ବେଳେ ସେ ପ୍ରବଳ କ୍ଷୁଧା ଅନୁଭବ କଲେ ଓ ପାଚକକୁ ଭାତ ରାନ୍ଧିବା ପାଇଁ ଆଦେଶ ଦେଲେ । ବସାର ଛାତ୍ରମାନେ ଓ ପାଚକ ନାନାଭାବରେ ନିଷେଧ କଲେହେଁ ସେ କାହାରି କଥା ନ ଶୁଣି ଅତ୍ୟନ୍ତ ବିରକ୍ତ ହେଲେ । ଶେଷରେ ଭାତ ରନ୍ଧା ହୋଇ ପଖାଳ ହେଲା, କାଗଜିଲେମ୍ବୁ ରସ ଦେଇ ସେ ପ୍ରାୟ ରାତି ୩ଟା ବେଳେ ପୂର୍ଣ୍ଣମାତ୍ରାରେ ପଖାଳ ଭୋଜନ କଲେ । ତତ୍‌ପରଦିନ ୮ ତାରିଖ ସୋମବାର ଅପରାହ୍ନରେ ଜ୍ୱର ପୁଣି ପ୍ରବଳଭାବରେ ଆକ୍ରମଣ କଲା ଓ ସନ୍ଧ୍ୟାବେଳକୁ ସାନ୍ନିପାତିକ ବିକାରମାନ ପରିଦୃଷ୍ଟ ହେଲା । କବିରାଜ ମହାଶୟ ରୋଗିର ଅବସ୍ଥା ଶୋଚନୀୟ ଦେଖି ଡାକ୍ତରୀ ଚିକିତ୍ସା କରିବାକୁ ପରାମର୍ଶ ଦେଲେ । ତଦନୁସାରେ ସହରର ପ୍ରଧାନ ପ୍ରଧାନ ଡାକ୍ତର ଆହୂତ ହେଲେ ? ଇଞ୍ଜେକ୍‌ଶନ୍ ଓ ବିବିଧ ମୂଲ୍ୟବାନ୍ ଔଷଧ ପ୍ରୟୋଗ କରା ଗଲେ ହେଁ କୌଣସି ପ୍ରକାର ପରିବର୍ତ୍ତନ ଦେଖାଗଲା ନାହିଁ । ଅବଶେଷରେ ୧୦ ତାରିଖ ଗୁରୁବାର ମଧ୍ୟାହ୍ନରେ ହଠାତ୍ ତାଙ୍କର ଚୈତନ୍ୟ ଆସିଲା । ସେ ଉପସ୍ଥିତ ଆତ୍ମୀୟମାନଙ୍କୁ ଚିହ୍ନି ସେମାନଙ୍କଠାରୁ ଶେଷ ବିଦାୟ ନେଲେ ଓ ତାଙ୍କର କାହାଠାରେ କେତେ ଟଙ୍କା ଅଛି, ତାହାର ଗୋଟିଏ ତାଲିକା ଲେଖାଇ

*ଦେଇଗଲେ । ଏହି ଲେଖା ଲେଖି କାର୍ଯ୍ୟ ଶେଷ ନ ହେଉଣୁ ସେ ଦିନ ପ୍ରାୟ ୧୨ଟା ବେଳେ ତାଙ୍କର ଅବିନଶ୍ୱର ଆତ୍ମା ଅନିତ୍ୟ ଦେହରୁ ଅପସାରିତ ହୋଇଗଲା । ତାଙ୍କର ଉପସ୍ଥିତ ବନ୍ଧୁ ବର୍ଗ ସତୀଚଉରା ଶ୍ମଶାନଭୂମିରେ ରାଧାନାଥ ଓ ମଧୁସୂଦନଙ୍କ ସମାଧି ସମୀପରେ ତାଙ୍କର ପାଞ୍ଚଭୌତିକ ଶରୀରକୁ ପଞ୍ଚଭୂତରେ ଲୀନ କରି ଘୋର ଦୁଃଖରେ ଫେରିଆସିଲେ ।*

*ଯାଅ, ମୃତ୍ୟୁଞ୍ଜୟ ! ଯୋଗିଜନବାଞ୍ଛିତ ପବିତ୍ର ଉତ୍ତରାୟଣରେ ପୁଣ୍ୟ ସ୍ୱର୍ଗଧାମର ପଥ ଉନ୍ମୁକ୍ତ ଥାଏ । ନିର୍ବାଧରେ ସେହି ପଥରେ ଗମନ କରି ପୁଣ୍ୟାତ୍ମା ଦେବଦଳଙ୍କ ସଙ୍ଗରେ ମିଳିତ ହୁଅ । ଈର୍ଷା ଦ୍ୱେଷ ଲୋଭ ମୋହ ବର୍ଜିତ ସ୍ୱର୍ଗଧାମରେ ଆନନ୍ଦରେ ବିହାର କର । ସେଠାରେ ସୁଧୀଭୋଗ୍ୟ ନନ୍ଦନକାନନ, ମନ୍ଦାକିନୀ ବିରାଜିତ ଅଛି । ସେହି ସବୁ ସ୍ୱର୍ଗୀୟ ସୁଷମା ଅନୁଭବ କରି ଆନନ୍ଦମୟଙ୍କ ଆଶ୍ରମରେ କାଳାତିପାତ କର ଏବଂ ତୁମ୍ଭର ଅନୁବର୍ତ୍ତୀ ଭ୍ରାତୃବୃନ୍ଦଙ୍କୁ ଆଶୀର୍ବାଦ କର । ତୁମ୍ଭେ ମର୍ତ୍ତ୍ୟଧାମରେ ମୃତ୍ୟୁଞ୍ଜୟ ନାମ ଧାରଣ କରିଥିଲ, ଶ୍ମଶାନ ତୁମ୍ଭର ମାଟି ଦେହ ଗ୍ରାସ କଲା, ମାତ୍ର ଯଶୋଦେହରେ ତୁମ୍ଭେ ବହୁକାଳ ଉତ୍କଳରେ ଆୟୁଷ୍ମାନ୍ ହୋଇରହିବ ।''*

## (୩)

ପଣ୍ଡିତ ରଥଙ୍କର ବହୁ ଅସଂଗୃହୀତ ରଚନା ମଧ୍ୟରୁ 'ଅଭିମନ୍ୟୁ ସାମନ୍ତସିଂହାର' ଓ 'ବ୍ରହ୍ମଜ୍ଞ ମଧୁସୂଦନ' ନାମକ ଦୁଇଗୋଟି ଦୀର୍ଘ ଓ ମୂଲ୍ୟବାନ ପ୍ରବନ୍ଧ ଅଧ୍ୟାପକ ଡକ୍ଟର ମହେଶ୍ୱର ମହାନ୍ତି (ପୂର୍ବତନ ବିଭାଗୀୟ ମୁଖ୍ୟ, ଓଡ଼ିଆ ବିଭାଗ, ଖ୍ରୀଷ୍ଟ ମହାବିଦ୍ୟାଳୟ)ଙ୍କ ଦ୍ୱାରା ସଂଗୃହୀତ ହୋଇଛି । 'ବ୍ରହ୍ମଜ୍ଞ ମଧୁସୂଦନ' ଖ୍ରୀଷ୍ଟ ମହାବିଦ୍ୟାଳୟ, ଓଡ଼ିଆ ବିଭାଗ ପକ୍ଷରୁ ପ୍ରକାଶିତ ଅନ୍ୟତମ ଉପାଦେୟ ଗବେଷଣାଧର୍ମୀ ପତ୍ରିକା 'ସୃଷ୍ଟି ଓ ସମୀକ୍ଷା' ୧୯ଶ ଭାଗ (୧୯୯୭-୯୮)ରେ ପ୍ରକାଶ ପାଇଥିଲା । ଏବେ ଏହା କଳିଙ୍ଗ ଗବେଷଣା ଏକାଡେମୀ'ର ତୃତୀୟ ପ୍ରକଳ୍ପ ରୂପେ ପ୍ରକାଶ ଲାଭ କରୁଛି ।

ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣପ୍ରତିଷ୍ଠା ଦିଗରେ ଯେଉଁ କେତେଜଣ ସାରସ୍ୱତ ସାଧକ ନିଜକୁ ଉତ୍ସର୍ଗ କରିଥିଲେ ସେମାନଙ୍କ ମଧ୍ୟରେ ମଧୁସୂଦନ ରାଓ ଅନ୍ୟତମ । ତାଙ୍କ କନ୍ୟା ଅବନ୍ତୀ ଦେବୀଙ୍କ ଦ୍ୱାରା ବଙ୍ଗଳାରେ ଲିଖିତ **''ଭକ୍ତକବି ମଧୁସୂଦନ ଓ ଉତ୍କଳେ ନବଯୁଗ''** ପୁସ୍ତକଟି ମଧୁସୂଦନଙ୍କ ଜୀବନୀ ଓ ସାରସ୍ୱତ ସାଧନାର ଏକ ଉଲ୍ଲେଖନୀୟ କୃତି । ଅବନ୍ତୀଦେବୀଙ୍କର ଏହି ପୁସ୍ତକଟି ଶ୍ରୀମତୀ ସୁଶୀଳା ମିତ୍ରଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ହୋଇ ଶ୍ରୀଯୁକ୍ତ ବିଶ୍ୱନାଥ ମିଶ୍ରଙ୍କ କର୍ତ୍ତୃକ

ପ୍ରକାଶିତ ହୋଇଛି । ରାଓକବିଙ୍କ ଜୀବନୀ ଓ ସାରସ୍ୱତ ସାଧନାର ଏହା ଏକ ପ୍ରାମାଣିକ ଗ୍ରନ୍ଥ । ଏଯାବତ୍ ଗବେଷକମାନଙ୍କର ଏହି ପୁସ୍ତକଟି ଏକ ଆଶ୍ରୟଭୂମି ପାଲଟିଛି ।

## (୪)

ଅବନ୍ତୀଦେବୀଙ୍କ ପୁସ୍ତକ ଓ ବ୍ରହ୍ମଜ୍ଞ ମଧୁସୂଦନ– ପୂର୍ବରୁ କୁହାଯାଇଛି ଯେ ଅବନ୍ତୀଦେବୀଙ୍କର ପୁସ୍ତକଟି ଏକ ପ୍ରାମାଣିକ ଗ୍ରନ୍ଥ । ଏହି ପୁସ୍ତକର ମୂଳପ୍ରେରଣା ଯେ ପଣ୍ଡିତ ମୃତ୍ୟୁଞ୍ଜୟ ରଥକୃତ 'ବ୍ରହ୍ମଜ୍ଞ ମଧୁସୂଦନ' ଏହା ଅନସ୍ୱୀକାର୍ଯ୍ୟ । ଏକଥା ଅବନ୍ତୀଦେବୀ ମଧ ସ୍ୱୀକାର କରିଛନ୍ତି ତାଙ୍କ ପୁସ୍ତକର ମୁଖବନ୍ଧରେ । ଅବନ୍ତୀ ଦେବୀ ମଧୁସୂଦନଙ୍କର ଜୀବନଚରିତ ସହିତ ସମକାଳୀନ ଅନେକ ବ୍ୟକ୍ତି-ବିଶେଷଙ୍କ ସହ ତାହାଙ୍କ ସମ୍ପର୍କ ଏବଂ ବ୍ରାହ୍ମଧର୍ମ ସମ୍ପର୍କରେ ଏକ ସଂକ୍ଷିପ୍ତ ବିବରଣୀ ପ୍ରଦାନ କରିଅଛନ୍ତି । ଅବନ୍ତୀଦେବୀଙ୍କ ଭାଷାରେ —

*''କୃତଜ୍ଞତା ସହିତ ସ୍ୱୀକାର କରୁଅଛି ଯେ, ମୃତ୍ୟୁଞ୍ଜୟ ରଥଙ୍କ ଲିଖିତ 'ବ୍ରହ୍ମଜ୍ଞ ମଧୁସୂଦନ' ରୁ ମୁଁ ଏହି ଜୀବନୀ ଲେଖିବାରେ ବହୁ ଉପକରଣ ପାଇଅଛି । ଯେଉଁ ବିଷୟଗୁଡ଼ିକ ମୋର ମନେଥିଲା, ମୃତ୍ୟୁଞ୍ଜୟ ରଥ ମହାଶୟଙ୍କ ଲେଖାରେ ମୁଁ ସେ ସମସ୍ତ ପାଇଅଛି ଏବଂ ମୋର ସେହି ସ୍ମୃତି ଆହୁରି ସ୍ପଷ୍ଟ ଓ ଉଜ୍ଜ୍ୱଳ ହୋଇଅଛି । ସମାଜର ଓ ଦେଶର ତତ୍କାଳୀନ ଅବସ୍ଥା ମଧ ତାଙ୍କ ଲେଖାରେ ବହୁ କ୍ଷେତ୍ରରେ ବିଦ୍ୟମାନ । ମଧୁସୂଦନଙ୍କ କର୍ମଜୀବନର ଗୋଟିଏ ଧାରାବାହିକ ବିବରଣୀ ମଧ ତାଙ୍କ ଲେଖା ମଧରେ ସ୍ଥାନ ପାଇଅଛି ।''*

'ବ୍ରହ୍ମଜ୍ଞ ମଧୁସୂଦନ' ରାଓକବିଙ୍କ ପ୍ରଥମ ବିସ୍ତୃତ ଓ ବିଶ୍ୱାସନୀୟ ଜୀବନଚରିତ ।

ଅଧ୍ୟାପକ ଡକ୍ଟର ନଟବର ସାମନ୍ତରାୟ ୧୯୭୫ ମସିହାରେ ପ୍ରଥମେ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କର ସମସ୍ତ ସାରସ୍ୱତ କୀର୍ତ୍ତି ଓ ତାହାର ସମୀକ୍ଷା 'ଓଡ଼ିଆ ସାହିତ୍ୟରେ ପଣ୍ଡିତ ମୃତ୍ୟୁଞ୍ଜୟ' ପ୍ରବନ୍ଧରେ ଦର୍ଶାଇଥିଲେ । 'ବ୍ରହ୍ମଜ୍ଞ ମଧୁସୂଦନ' ଉତ୍କଳ ସାହିତ୍ୟ ଷୋଡ଼ଶବର୍ଷ ଦଶମ ସଂଖ୍ୟାଠାରୁ ଆରମ୍ଭ କରି ଅଷ୍ଟାଦଶ ବର୍ଷ ଦ୍ୱାଦଶ ସଂଖ୍ୟା ପର୍ଯ୍ୟନ୍ତ ଧାରାବାହିକ ଭାବରେ ଚତୁର୍ଦ୍ଦଶଗୋଟି ଅଧ୍ୟାୟରେ ପ୍ରକାଶ ପାଇଥିଲା ।

ଏହି ସମ୍ପାଦନା କ୍ଷେତ୍ରରେ ମୁଁ, ଡକ୍ଟର ଜଗନ୍ନାଥ ପ୍ରସାଦ ଦାସ, ଡକ୍ଟର ଗଗନେନ୍ଦ୍ରନାଥ ଦାଶ ଏବଂ ଡକ୍ଟର ମହେଶ୍ୱର ମହାନ୍ତିଙ୍କ ଠାରୁ ଅନେକ ସୁପରାମର୍ଶ

ପାଇଅଛି । ପୂଜ୍ୟଗୁରୁଙ୍କୁ ଏହି ଅବସରରେ ମୋର ସଭକ୍ତି ପ୍ରଣାମ ଜଣାଉଛି । ଏବେ ଏହି ଦୁର୍ଲ୍ଲଭ ରଚନାଟିକୁ ପ୍ରାଚୀନ 'ଉତ୍କଳ ସାହିତ୍ୟ' ପୃଷ୍ଠାରୁ ସଂଗ୍ରହ କରି ପୁସ୍ତକ ଆକାରରେ ପ୍ରକାଶ କରାଯାଉଛି । ମୂଳ ଲେଖାଟିକୁ ଅବିକଳ ଭାବରେ ଉଦ୍ଧାର କରିବାକୁ ଯଥାସାଧ ଚେଷ୍ଟା କରାଯାଇଛି । ଅଧାପକ ଡକ୍ଟର କଇଳାଶ ପଟ୍ଟନାୟକ ଶାନ୍ତିନିକେତନରୁ ଏହାର ମୂଳପାଠର ପ୍ରତିଲିପି ଯୋଗାଇ ଦେଇଥିବାରୁ ତାଙ୍କୁ କୃତଜ୍ଞତା ଜଣାଉଛି ।

ମଧୁସୂଦନଙ୍କ ଉଦ୍ୟମରେ ପ୍ରକାଶିତ ପତ୍ରପତ୍ରିକାଗୁଡ଼ିକ ସମ୍ପର୍କରେ ସମକାଳୀନ ପତ୍ରପତ୍ରିକାରେ ପ୍ରକାଶିତ ସମ୍ବାଦ ସଂଗ୍ରହ ପୂର୍ବକ ଯୋଗାଇ ଦେଇଛନ୍ତି ବନ୍ଧୁ ରଞ୍ଜନ କୁମାର ପଣ୍ଡା । ବନ୍ଧୁ ଶ୍ରୀ ପଣ୍ଡାଙ୍କୁ ଏ ଅବସରରେ ଅନେକ ଅନେକ ଶୁଭେଚ୍ଛା ।

ଓଡ଼ିଶାର ବିଶିଷ୍ଟ ପ୍ରକାଶକ ଶ୍ରୀଯୁକ୍ତ ସହଦେବ ପ୍ରଧାନଙ୍କୁ ବିଶେଷ ଧନ୍ୟବାଦ ଯେ ଏହିପରି ଏକ ଗବେଷଣାତ୍ମକ ଓ ମୂଲ୍ୟବାନ ଜୀବନୀ ପୁସ୍ତକଟିକୁ ପାଠକମାନଙ୍କ ସମ୍ମୁଖକୁ ଆଣୁଛନ୍ତି ।

ଅବଶେଷରେ ବନଜା ସାହୁ, ବିଶାଖା ସାହୁ, ଅନୀତା ବାରିକ ଏବଂ ବିନୀତା ବାରିକଙ୍କୁ ଧନ୍ୟବାଦ । ଏହି ପୁସ୍ତକର ପ୍ରୁଫ୍ ସଂଶୋଧନ ଦିଗରେ ସେମାନଙ୍କର ସାହାଯ୍ୟ ଯଥେଷ୍ଟ ଅଧିକ ।

ବନ୍ଧୁ ରଞ୍ଜନ କୁମାର ପଣ୍ଡା, ନୈଷଧ କୁମାର ନାୟକ ଏବଂ ବିନୀତା ସାହୁଙ୍କୁ ମଧ ଏହି ଅବସରରେ ଧନ୍ୟବାଦ ।

ନବବର୍ଷ, ୨୦୦୫ — **ସ୍ମରଣ କୁମାର ନାୟକ**

କଟକ



## ୧

**ଗ**ତ ଅର୍ଦ୍ଧଶତାବ୍ଦୀରେ ଯେଉଁ ମହାତ୍ମାଙ୍କ ଭଗବତ୍ ପ୍ରେମ ଏ ଉତ୍କଳରେ ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇଅଛି, ଉତ୍କଳୀୟମାନଙ୍କ ଶିକ୍ଷା, ଚରିତ୍ର ଓ ସଦ୍ଧର୍ମାନୁରାଗର ଉନ୍ନତିକଳ୍ପେ ଯେ କଠୋର ତପସ୍ୟା ସାଧନ କରିଅଛନ୍ତି, ଯାହାଙ୍କ ସଂଯମଶୁଦ୍ଧ ମହନୀୟ ଚରିତ୍ର ପ୍ରଭାବରେ ଉତ୍କଳର ଅନେକ ଅନେକ ଶିଷ୍ୟାନୁଶିଷ୍ୟଙ୍କ ଜୀବନମାର୍ଗ ପରିବର୍ତ୍ତିତ ଓ ଆଲୋକିତ ହୋଇଅଛି, ଯାହାଙ୍କ ଧର୍ମାନୁପ୍ରାଣିତ ଏକନିଷ୍ଠ ସାହିତ୍ୟସେବା ଫଳରେ ଆଧୁନିକ ଉତ୍କଳ ସାହିତ୍ୟକୋଷ ଅପୂର୍ବ ଦୀପ୍ତି ଏବଂ ପୁଷ୍ଟି ଲାଭ କରିଅଛି, ସେହି ପୁଣ୍ୟାତ୍ମା ସ୍ୱର୍ଗତ ମଧୁସୂଦନଙ୍କ ଗୁଣକୀର୍ତ୍ତନ ଏ ଲେଖନୀର ଅତୀତ, ଏ କ୍ଷୀଣପ୍ରାଣର ଅବିଷୟ ଏବଂ ଏ କ୍ଷୁଦ୍ରଶକ୍ତିର ଅସାଧ ହେଲେହେଁ ନୈଷଧକାବ୍ୟବର୍ଣ୍ଣିତ "ବାଗ୍‌ଜନ୍ମ ବୈଫଲ୍ୟମସହ୍ୟଶଲ୍ୟଂ ଗୁଣାଧିକେ ବସ୍ତୁନି ମୌନିତା ଚେତ୍" ଏହି ଉକ୍ତିଟି ସ୍ମରଣ କରି ପ୍ରତ୍ୟବାୟଭାଗୀ ହେବା ଭୟରେ ଯଥାଜ୍ଞାତ ଯତ୍‌କିଞ୍ଚିତ୍ ତାହାଙ୍କ ସମ୍ବନ୍ଧରେ ପ୍ରକାଶ କରିବାକୁ ପ୍ରୟାସୀ ହେଉଅଛି। "ଯାହାଙ୍କ ଯୋଗେ ଏ ଜୀବନ ଧନ୍ୟ ହୋଇଅଛି, ଯାହାଙ୍କୁ ଗୁରୁରୂପେ ଲାଭ କରି ଛାତ୍ରଜୀବନ ମୂଲ୍ୟବାନ୍ ହୋଇଅଛି, ତାହାଙ୍କ ପୁଣ୍ୟଚରିତ ଆଜି ଯଥାଶକ୍ତି କୀର୍ତ୍ତନ କଲେ ଏ ଜୀବନ ଆହୁରି କୃତକୃତ୍ୟ ହେବ" ମଣି ମୁଁ ଏ କ୍ଷୁଦ୍ର ପ୍ରବନ୍ଧରେ ମଧୁସୂଦନଙ୍କ ଜୀବନର ସ୍ଥୂଳ ଇତିହାସ ପ୍ରଦାନ କରୁଅଛି ।

### ସ୍ଥାନ, ଜନ୍ମ ଓ ବଂଶ ପରିଚୟ

ବ୍ରିଟିଶ୍ ଅଧିକାର ପୂର୍ବେ ଉତ୍କଳ ଅର୍ଦ୍ଧଶତାବ୍ଦୀକାଳ ମହାରାଷ୍ଟ୍ର ଜାତିର ଶାସନାଧୀନ ଥିଲା, ଏକଥା ପ୍ରାୟ ସମସ୍ତେ ଅଳ୍ପାଧିକ ଜାଣନ୍ତି । ସେ ସମୟ ମଧ୍ୟରେ ଅଥବା ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ମହାରାଷ୍ଟ୍ରଦେଶରୁ ବିଶେଷତଃ ନାଗପୁର ଅଞ୍ଚଳରୁ ଅନେକ ଲୋକ ଦଳଶଃ ଉତ୍କଳକୁ ଆସି ବସତି ବିସ୍ତାର କରିବାକୁ ଲାଗିଲେ । କିନ୍ତୁ ସେ ସମସ୍ତେ ସ୍ଥାୟୀ ଅଧିବାସୀ ହୋଇ ରହିଲେ ନାହିଁ । ଅଳ୍ପକାଳ ପରେ ମହାପରାକ୍ରମ ବ୍ରିଟିଶ ଜାତିର ଏ ଦେଶରେ ପ୍ରବେଶ ଦେଖି ସେମାନଙ୍କ ମଧ୍ୟରୁ ଅଧିକାଂଶ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । କେବଳ ଯେଉଁମାନେ ବୃଦ୍ଧ ଓ ଅସମର୍ଥ ହୋଇ ପଡ଼ିଥିଲେ ଏବଂ ଧର୍ମପିପାସା ବଳବତୀ ଥିବାରୁ ଜଗନ୍ନାଥ ଦର୍ଶନ ବା ଶ୍ରୀକ୍ଷେତ୍ରପ୍ରାପ୍ତିର ଆଶା ପୋଷଣ କରିଥିଲେ, ସେହିମାନେ ପୁଣ୍ୟଭୂମି ଉତ୍କଳ ତ୍ୟାଗ କରିବାକୁ ମନ ବଳାଇଲେ ନାହିଁ ।

ଏହିପରି ପ୍ରାୟ ଶତାଧିକ ମରହଟ୍ଟା ଏ ଦେଶରେ ରହିଗଲେ । ଆମ୍ଭମାନଙ୍କର ମଧୁସୂଦନ ଏହି ଶ୍ରେଣୀର ଏକ ବଂଶକୁ ଅଳଙ୍କୃତ କରିଅଛନ୍ତି । ତଦୀୟ ପିତାମହ ସଦାଶିବ ରାଓ ଏବଂ ମାତାମହ ଭରତ ରାଓ ପ୍ରଭୃତି କେତେଜଣ ବ୍ରାତ୍ୟ ମରହଟ୍ଟା କ୍ଷତ୍ରିୟ ପୁରୀନଗରୀରେ ବାସ ସ୍ଥାପନ କରିଥିଲେ । ତେତେବେଳେ ଅବଶ୍ୟ ସେମାନଙ୍କ ମାତୃଭାଷା ହିନ୍ଦୀ ଥିଲା, କିନ୍ତୁ ପଶ୍ଚାତ୍ ସେମାନେ ଯେତେବେଳେ ଏ ଦେଶ ଭାଷା ଓଡ଼ିଆକୁ ଭକ୍ତିସହକାରେ ମାତୃଭାଷା କରିନେଲେ, ସେହିଦିନୁଁ ସେମାନଙ୍କୁ ଓଡ଼ିଆ ବୋଲି ଗଣନା କରାଯାଉଅଛି । ସଦାଶିବ ରାଓ ଜଣେ ତେଜସ୍ୱୀ ପୁରୁଷ ଥିଲେ । ତାହାର ଗୋଟିଏ ଦୃଷ୍ଟାନ୍ତ ଏହି ଯେ, ଏକମାତ୍ର ପୁତ୍ର ଭାଗୀରଥି ରାଓ ବାଲ୍ୟକାଳରେ କିଛି ଶିକ୍ଷା ପାଇ ଯେତେବେଳେ ତାହା ବଳରେ ପ୍ରଥମେ ପ୍ରଥମେ କଚେରିରୁ କିଛି ଉପାର୍ଜନ କଲେ, ତାହା ପ୍ରାୟ ପିତାଙ୍କ ହସ୍ତକୁ ଯାଉ ନ ଥିଲା । ପୁତ୍ରର ଅପବ୍ୟୟରେ ଅସନ୍ତୁଷ୍ଟ ହୋଇ ସେ ଏହି ଦୋଷ ସଂଶୋଧନ ଲାଗି ବାରମ୍ବାର ଚେଷ୍ଟା କରି ସୁଦ୍ଧା ସଫଳକାମ ନ ହେବାରୁ ଅଗତ୍ୟା ଉତ୍ତରକାଳରେ ପୁତ୍ରଠାରୁ ଅନ୍ତରରେ ରହିଲେ । ଏହିପରି ପ୍ରାୟ ଦଶବର୍ଷ ଅତୀତ ନ ହେଉଣୁ ସଦାଶିବଙ୍କର ଚରମକାଳ ଆସି ଉପସ୍ଥିତ ହେଲା । ତେତେବେଳେ ସଦାଶିବ ପୁତ୍ରମୁଖ ଦର୍ଶନ ଲାଗି ବଡ଼ ବ୍ୟାକୁଳ ହୋଇପଡ଼ିଲେ । ଏହା ଦେଖି ସହଚରମାନେ ପୁତ୍ରଙ୍କ ନିକଟକୁ ସନ୍ଦେଶ ପ୍ରେରଣ କରନ୍ତେ, ଭାଗୀରଥି ବ୍ୟଗ୍ରଚିତ୍ତରେ ପିତାଙ୍କ ଆଡକୁ ଅଗ୍ରସର ହେଲେ । ପିତାଙ୍କ ନିକଟରେ ଉପସ୍ଥିତ ହେବାର କିୟତ୍ ହସ୍ତ ଦୂରରୁ ଜଣେ ପାର୍ଶ୍ୱଚର ହଠାତ୍ ଉତ୍କଣ୍ଠିତ ସଦାଶିବଙ୍କୁ କହିଦେଲେ, ''ଆପ୍‌କା ବେଟା ଆଗେୟା'' । ଏହି କଥା ଶୁଣିବାମାତ୍ରେ ପୁଣ୍ୟାତ୍ମା ସଦାଶିବ, ପୁତ୍ର ଗୃହଦ୍ୱାରର ପ୍ରଥମ ପାବଚ୍ଛରେ ପଦ ନ ଦେଉଣୁ 'କାହାଁ ହେ' କହୁଁ କହୁଁ ପୁତ୍ରମୁଖ ଚାହିଁ ତତ୍‌କ୍ଷଣାତ୍ ଦ୍ୱାରଦେଶରେ ଟଳିପଡ଼ିଲେ । ଏ ମରଣ ଭାଗୀରଥିଙ୍କର ଅତ୍ୟନ୍ତ ପ୍ରାଣସ୍ପର୍ଶୀ ଓ ଶିକ୍ଷାପ୍ରଦ ହୋଇଥିଲା । ସେହିଦିନୁଁ ସେ ଜୀବନକୁ ନିର୍ଦ୍ଦୋଷ ଶୁଦ୍ଧ ପଥରେ ଚଳାଇବାକୁ ଲାଗିଲେ । ସଦାଶିବଙ୍କ ହୃଦୟରେ ପୁତ୍ରବାତ୍ସଲ୍ୟ କିପରି ପ୍ରଚ୍ଛନ୍ନଭାବରେ ରହିଥିଲା, ତାହା ଏହି ଘଟନାରୁ ସ୍ପଷ୍ଟ ପ୍ରତୀତ ହେଉଅଛି । ପୁତ୍ରକୁ ନିର୍ଦ୍ଦୋଷ ଚରିତ୍ର କରିବାଲାଗି ତାହାଙ୍କର ପ୍ରାଣ ଏପରି ବ୍ୟାକୁଳ ହୋଇ ପଡ଼ିଥିଲା ଯେ, ଶେଷରେ ସେ ଅନନ୍ୟୋପାୟ ହୋଇ ଏକପ୍ରକାର ଚିରବିଚ୍ଛେଦ ଶାସ୍ତିଦ୍ୱାରା ପୁତ୍ରଙ୍କୁ ମହାଶିକ୍ଷା ପ୍ରଦାନ କରିଥିଲେ । ବର୍ତ୍ତମାନ ସଂସାରଭାର ଭାଗୀରଥିଙ୍କ ମସ୍ତକରେ ପଡ଼ିବାରୁ ସେ ଆପଣାକୁ ବଡ଼ ଅସହାୟ ଓ ଅସମର୍ଥ ମନେ କଲେ । କିନ୍ତୁ ଜଣକ ଯୋଗେ ସେ ''ସାମାନ୍ୟ ଚପରାଶିକର୍ମ ଜୀବିକା ହେଲେହେଁ'' ସଂସାରୀ ଜୀବନର ପ୍ରଥମ ଭାଗ ବଡ଼ ସୁଖରେ କଟାଇ ନେଲେ । ସେ ଜଣକ ଆଉ କେହି ନୁହନ୍ତି, ତାହାଙ୍କର ଗୃହଲକ୍ଷ୍ମୀ

ମଧୁସୂଦନଙ୍କ ଜନନୀ ଅମ୍ବିକା ଦେବୀ । ଅମ୍ବିକା ଦେବୀଙ୍କ ପ୍ରାୟ ପତିପ୍ରାଣା ସତୀ ରମଣୀ ଏ ଯୁଗରେ ବିରଳ ଦେଖାଯାନ୍ତି । ଯେଉଁମାନେ ଅମ୍ବିକାଙ୍କୁ ଦେଖିଅଛନ୍ତି, ସେମାନେ ପ୍ରାୟ କହିଥାନ୍ତି ଯେ ଅମ୍ବିକା ରୂପରେ ଗୁଣରେ ସାକ୍ଷାତ୍ ଲକ୍ଷ୍ମୀ ଥିଲେ । ତାହାଙ୍କର ପତିଭକ୍ତି ଓ ଅପତ୍ୟବାତ୍ସଲ୍ୟ କେତେଦୂର ଗଭୀର ଥିଲା, ତାହା ବକ୍ଷ୍ୟମାଣ ପ୍ରସଙ୍ଗରୁ ପାଠକମାନେ ଅନୁମାନ କରିପାରିବେ । ଏଠାରେ ଦୁଇ ଚାରି କଥାରେ ଅମ୍ବିକାଙ୍କର ବଂଶପରିଚୟ ଦେବା ସଙ୍ଗତ ମନେ କରୁଅଛି । ପୂର୍ବକଥିତ ଭରତ ରାଓ ଓ ରାମ ରାଓ ନାମକ ଦୁଇ ମରହଟ୍ଟା କ୍ଷତ୍ରିୟ[୧] ସଦାଶିବ ରାଓଙ୍କର ସମକାଳୀନ ଥିଲେ । ଏ ଦୁହିଁଙ୍କର ଆଠ ପୁତ୍ର ଓ ଦୁଇ କନ୍ୟା ଥିଲେ । ଭରତଙ୍କ ଜ୍ୟେଷ୍ଠା କନ୍ୟାଙ୍କର ନାମ 'ସରସ୍ୱତୀ' । ଏ ଦୁଇକନ୍ୟା ମଧ୍ୟରେ କନିଷ୍ଠା ଅମ୍ବିକା ଅଧିକ ଗୁଣବତୀ ଥିଲେ । ଏହି ଲକ୍ଷ୍ମୀରୂପିଣୀ ରମଣୀଙ୍କ ପାଣିଗ୍ରହଣ ଉତ୍ତାରେ ଭାଗୀରଥିଙ୍କର ସାଂସାରିକ ଅବସ୍ଥାର ମଧ୍ୟ ଉନ୍ନତି ହୋଇଥିଲା । ପୁରୀର ତଦାନୀନ୍ତନ ମାଜିଷ୍ଟ୍ରେଟ ମାନନୀୟ ଡ୍ରମଣ୍ଡ ସାହେବ ତାଙ୍କ କର୍ମରେ ସନ୍ତୁଷ୍ଟ ହୋଇ ମାସିକ ୧୬ ଟଙ୍କା ବେତନରେ ତାଙ୍କୁ ଅଠରନଳା ଫାଣ୍ଡିର ଜମାଦାର ପଦରେ ନିଯୁକ୍ତ କଲେ । ତେତେବେଳେ ଜଗନ୍ନାଥ-ଯାତ୍ରୀ-କର ସଂଗ୍ରହ ନିମିତ୍ତ ଏହି ଫାଣ୍ଡିଟି ନୂତନ ବସିଥିଲା । ଏହା ପ୍ରାୟ ଉନବିଂଶ ଶତାବ୍ଦୀର ଠିକ୍ ମଧ୍ୟଭାଗର ଘଟଣା । ଏହାର କିଛିକାଳ ପରେ ଅମ୍ବିକା ସତ୍‌ପୁତ୍ରଧାରିଣୀ ହେଲେ । ୧୮୫୩ ଖ୍ରୀଷ୍ଟାବ୍ଦ[୨] ଜାନୁୟାରି ମାସ ୨୯ ତାରିଖ ସୋମବାର ଶ୍ରୀପଞ୍ଚମୀ ଦିନ ଲକ୍ଷ୍ମୀ ସରସ୍ୱତୀ[୩] ଉଭୟଙ୍କର ନେତ୍ରୋତ୍ସବ ପୁତ୍ର ଭାଗୀରଥିଙ୍କ କୁଟୀରର ସୂତିକାଗୃହ ଆଲୋକିତ କଲେ । ମଧୁକାଳର ଏହି ମଧୁମୟ ପ୍ରବେଶ ଦିବସରେ ଜନ୍ମଗ୍ରହଣ କରିଥିବାରୁ ପିତା ବାଛି ବାଛି ନବଜାତ ପୁତ୍ରର ବିପଦବନ୍ଧୁ 'ମଧୁସୂଦନ' ନାମ ରଖିଲେ । ଏହି ପୁତ୍ର ସ୍ୱୀୟ ଜୀବନକାଳ ମଧ୍ୟରେ ନିଜ ନାମକୁ ସାର୍ଥକ କରିଯାଇଅଛନ୍ତି । ଆଉ କଥା ତେଣିକି ଥାଉ ବିରହି-ପ୍ରେମିକସମ୍ବଳ ବିକୃତରୁଚିରଅନୁକୂଳ ପ୍ରାଚୀନ ମଧୁ ବା ବସନ୍ତକୁ ସେ କିପରି ନିଷ୍ପୀଡ଼ନ କରିଅଛନ୍ତି, ତାହା ମଧୁସୂଦନଙ୍କ ''ନବବସନ୍ତ ଭାବନା'' କବିତାରୁ ସୁସ୍ପଷ୍ଟ ପ୍ରକାଶ ପାଏ । ଏହି ନବଜାତ ଶିଶୁକୁ ଯେ ଦେଖିବାକୁ ଆସୁଥାନ୍ତି, ସେ କ୍ଷଣକାଳ ତାହାର ଦିବ୍ୟବପୁ ନିର୍ନିମେଷନୟନରେ ଦେଖି ଆନନ୍ଦ ପ୍ରକାଶ କରନ୍ତି । ସ୍ନେହମୟୀ ଜନନୀ ପରମ ସ୍ନେହ ଓ ଯତ୍ନ ସହକାରେ ଏ ଶିଶୁର

(୧) ଏମାନଙ୍କ ଘରେ ବହୁକାଳଯାଏ କ୍ଷତ୍ରିୟ ବ୍ୟବହାର୍ଯ୍ୟ କାଣ୍ଡ, ବର୍ଚ୍ଛା, ବନ୍ଧୁକ ଆଦି ରହିଥିଲା ।

(୨) ୧୭୭୩ ଶକାବ୍ଦ, ସନ ୧୨୫୮ ସାଲ ମାଘ ୧୫ ଦିନ ।

(୩) ଜ୍ୟେଷ୍ଠା ଭଗିନୀ ସରସ୍ୱତୀଙ୍କର କୌଣସି ସନ୍ତାନ ନଥିଲା ।

ଲାଳନ ପାଳନ କରିବାକୁ ଲାଗିଲେ । ପ୍ରାୟ ତିନି ବର୍ଷ ଅତୀତ ନ ହେଉଣୁ ପୁତ୍ରବତ୍ସଳା ଅମ୍ବିକା ଦେବୀ ଆଉ ଗୋଟିଏ ପୁତ୍ରସନ୍ତାନ ଲାଭକଲେ । ନୀଳାଚଳବାସୀ ପିତା ନୀଳାଚଳପତିଙ୍କ ନାମାନୁସାରେ ତାଙ୍କ ନାମ ଜଗନ୍ନାଥ ରଖିଲେ । ଦ୍ୱିତୀୟ ପୁତ୍ର ଜନ୍ମର ପ୍ରାୟ ଦୁଇବର୍ଷ ପରେ ଗୋଟିଏ କନ୍ୟା ପ୍ରସବ କରି ତତ୍ସହ ସେହି ସୂତିକାରୋଗରେ ଅମ୍ବିକା ଦେବୀ ଇହଧାମ ତ୍ୟାଗ କଲେ । ମୃତ୍ୟୁକାଳରେ ସେ ପତିଙ୍କର ପାଦୋଦକ ପାନ କରି ତାହାଙ୍କୁ ଦୃଢ଼ଭାବରେ ଆଲିଙ୍ଗନ କରିଥିଲେ ଏବଂ ଗଦ୍ଗଦସ୍ୱରରେ ପୁତ୍ରରତ୍ନ ଦିଓଟିକୁ ହୃଦୟରେ ସ୍ଥାପନ କରିବାକୁ କହି ପଶ୍ଚାତ୍ ପତିପାଦପଦ୍ମରେ ତାହା ସମର୍ପଣ କରିଥିଲେ ।[୧] ସୁତରାଂ ପାଞ୍ଚବର୍ଷ ବୟସରେ ମଧୁସୂଦନ ଜନନୀବିହୀନ ହେଲେ । ବିପଦ ଆସିଲେ କେବେହେଁ ଗୋଟିଏ ହୋଇ ଆସେନାହିଁ । ତାହା ପଛରେ ମେଷପଲ ପ୍ରରି ବହୁତ ଗୋଡ଼ାଇଥାଏ । ଏବେ ଭାଗୀରଥିଙ୍କର ସେହି ଦଶା ହେଲା । ଏକେ ଗୃହଭଙ୍ଗ, ଦ୍ୱିତୀୟରେ ଶିଶୁସନ୍ତାନ ପାଳନ, ସେଥିରେ ପୁଣି ସ୍ଥାନପରିବର୍ତ୍ତନ ଆଦେଶ । ଏହି ସମୟରେ ଯାତ୍ରିକର ସଂଗ୍ରହ ପ୍ରଥା ଉଠିଯିବାରୁ ପୂର୍ବୋକ୍ତ ଅଠରନଳା ଫାଣ୍ଡି ଆଉ ରହିଲା ନାହିଁ । ତେଣୁ ଭାଗୀରଥି ରାଓ ଗୋପ ଥାନାର ଜମାଦାର [୨] ପଦରେ ନିଯୁକ୍ତ ହୋଇ ପୁରୀ ତ୍ୟାଗ କରିବାକୁ ବାଧ ହେଲେ । ଗୋପକୁ ଯିବା ପୂର୍ବେ ସେ ଶିଶୁପୁତ୍ରଦ୍ୱୟଙ୍କ ପାଳନ ବିଷୟରେ ନିତାନ୍ତ ବ୍ୟାକୁଳ ହୋଇ ତଦୀୟ ଶ୍ୟାଳକ ନାରାୟଣ ରାଓଙ୍କ ହସ୍ତରେ ସେମାନଙ୍କର ଭାର ଅର୍ପଣ କରିଥିଲେ । ଅମ୍ବିକା ଦେବୀ ମଧ୍ୟ ମରଣମୁହୂର୍ତ୍ତରେ ଦ୍ୱିତୀୟ ପୁତ୍ରଟିକୁ ପ୍ରିୟତମ ଭ୍ରାତା ନାରାୟଣ ରାଓଙ୍କୁ ସମର୍ପଣ କରିବା ପାଇଁ ଅନୁରୋଧ କରିଥିଲେ । ସୁତରାଂ ଶିଶୁ ଜଗନ୍ନାଥଙ୍କ ଜୀବନରକ୍ଷା ଭାର ମାତୃସ୍ଥାନୀୟା ମାତୁଳାନୀଙ୍କ ହସ୍ତରେ ରହିଲା ।

---

(୧) ଧରି ମୋ ପିତାଙ୍କ ପଦ କହନ୍ତି ମା ଗଦଗଦ,
ରଖ ରଖ ଏହି ଧନ ମୋର ହୃଦୟରେ ହେ ।
ଏହା କହି ସମର୍ପିଣ ସନ୍ତାନ ଦୁଇଟି ହେ, ପିତାଙ୍କ ଚରଣେ,
ଆହା ପୂଣ୍ୟ ଅଶ୍ରୁଜଳେ ଧୋଇ ବଦନ କମଳେ
ମୁଦିଲେ ନୟନ ମାତା ଅନ୍ତିମଶୟନେ ହେ ।

(୨) ତେତେବେଳେ ଆଜିକାଲିପରି ସବ୍‌ଇନ୍‌ସ୍ପେକ୍ଟର ନଥିଲେ । ଜମାଦାରମାନେ ଏହି କାର୍ଯ୍ୟ କରୁଥିଲେ । ଗୋଟିଏ ଲାଲ ପଗଡ଼ି, ଖଣ୍ଡେ ସବଜୀ ଚପକନ ଓ ତଦୁପରି କାବା ଏମାନଙ୍କର ପୋଷାକ ଥିଲା । ଏହି ସବୁ ଜମାଦାରମାନେ ଜଣେ ଜଣେ ଦାରୋଗାଙ୍କ (ଆଧୁନିକ ଇନ୍‌ସ୍ପେକ୍ଟର) ଅଧୀନରେ ରହୁଥିଲେ ।

## ବାଲ୍ୟଜୀବନ ଓ ଶିକ୍ଷା

ଗୋପରେ ସରଳପ୍ରାଣ ଭାଗୀରଥି ରାଓ ତତ୍କାଳୀନ ଦାରୋଗା ସୁବଳଚନ୍ଦ୍ର ବୋଷଙ୍କ ଅଧୀନରେ କାର୍ଯ୍ୟ କଲେ । ଦାରୋଗାବାବୁ ସହଯୋଗିଙ୍କ ଶାନ୍ତ ସ୍ୱଭାବ ଓ ନମ୍ର ବ୍ୟବହାରରେ ଅତୀବ ସନ୍ତୁଷ୍ଟ ହୋଇ ତାହାଙ୍କୁ ସୁହୃଦ୍ ରୂପେ ଗ୍ରହଣ କଲେ । ଅଳ୍ପକାଳ ମଧ୍ୟରେ ଦାରୋଗାବାବୁଙ୍କ ସହିତ ଭାଗୀରଥିଙ୍କର ଘନିଷ୍ଠତା ଜନ୍ମିଗଲା । କିନ୍ତୁ ଗୋପରେ ବର୍ଷାଧିକ କାଳ ଅତୀତ ନ ହେଉଣୁ ଭାଗୀରଥି ଦିନକର ଅଦ୍ଭୁତ ସ୍ୱପ୍ନରେ ବିଚଳିତ ହୋଇପଡ଼ିଲେ । ତାହା ଏହି- ନିଶୀଥ ସମୟରେ ତାହାଙ୍କର ପ୍ରିୟତମା ପତ୍ନୀ ଶୟନକକ୍ଷକୁ ଆସି କହିଲେ, ''ମୁଁ ତୁମ୍ଭ ପାଖରେ ପ୍ରାଣପିତୁଳା ଦିଓଟିକି ଛାଡ଼ିଦେଇ ଆସିଲି ଏହିପରି ହତାଦର ହେବାପାଇଁ ? ତୁମ୍ଭେ ଯଦି ନ ଦେଖିବ, ମୁଁ ଜଗନ୍ନାଥଟିକି ନେଇଯିବି ।'' ଏହି ସ୍ୱପ୍ନଦର୍ଶନରେ ପୁତ୍ରବତ୍ସଳ ଭାଗୀରଥି ରାଓ ନିତାନ୍ତ ମର୍ମାହତ ହୋଇ ପରଦିନ ପ୍ରଭାତରେ କାର୍ଯ୍ୟକ୍ଷେତ୍ରର ବନ୍ଧୁ ସୁବଳ ବାବୁଙ୍କ ନିକଟରେ ବାଳକବତ୍ ବିଳାପ କରିବାକୁ ଲାଗିଲେ ଏବଂ ସ୍ୱପ୍ନ ପ୍ରକାଶ କରି କହିଲେ, ''ମୁଁ ଏହିକ୍ଷଣି ପୁରୀ ଯିବି । ଯଦି ସେଥିରେ କୌଣସି ବାଧା ହୁଏ, ତାହାହେଲେ ଏ ଚାକିରି ଗଲେ ସୁଦ୍ଧା ମୋହର ଦୁଃଖ ବା ଭୟ ନାହିଁ ।'' ସୁବଳ ବାବୁ ସେଠାରେ ସପରିବାର ଅବସ୍ଥାନ କରୁଥିଲେ, ତେଣୁ ସେ ବନ୍ଧୁଙ୍କର ଶିଶୁସନ୍ତାନ ପାଳନରେ ଆଶ୍ୱାସ ଦେଇ ସେଠାକୁ ପିଲାମାନଙ୍କୁ ଆଣିବାକୁ କହିବାରୁ ପୁତ୍ରବତ୍ସଳ ଭାଗୀରଥି ରାଓ ଅବିଳମ୍ବେ ପୁରୀ ଯାତ୍ରା କଲେ ଏବଂ ସେଠାରୁ ପୁତ୍ରଦ୍ୱୟଙ୍କୁ ସଙ୍ଗରେ ଘେନି ଆସିଲେ । ତେତେବେଳେ ପୁରୀଠାରୁ ଗୋପକୁ ଆସିବାର ପଥ ଆଜିକାଲି ପରି ସୁଗମ ନଥିଲା । ଯଦିବା ବଳଦଗାଡ଼ି କଷ୍ଟରେ ଆସି ପାରୁଥିଲା, ତଥାପି ସେ ଗାଡ଼ିରେ ନେଲେ ଶିଶୁଙ୍କର ଅତ୍ୟନ୍ତ କଷ୍ଟ ହେବ ଅନୁମାନ କରି ଯେଉଁ ଉପାୟରେ ସେମାନଙ୍କୁ ଆଣିଥିଲେ, ତାହା ପାଠକମାନଙ୍କୁ ବଡ଼ କୌତୂହଳଜନକ ବୋଧହେବ । ସେ ଆଗେ ଦିଓଟି ଟୋକାଇରେ କିଛି କିଛି ଧାନ ପୂରାଇ ସମତଳ କରିଦେଲେ ଏବଂ ତାହା ଉପରେ ଲୁଗାର ବହଳ ଶେଯ କରି ପୁତ୍ରଦ୍ୱୟଙ୍କୁ ବସାଇ ଦେଲେ । ଜଣେ ବାହକ ଭାର କରି ଭାଗୀରଥଙ୍କର ଏହି ଦୁଇ ରତ୍ନସ୍ଥଳୀକୁ ଗୋପକୁ ବୁହାଇ ଆଣିଲା । ଏହି ଗୋପରେ ଆଉ ପୁତ୍ରଦ୍ୱୟଙ୍କ ଯତ୍ନରେ କୌଣସି ତ୍ରୁଟି ହେଲା ନାହିଁ ଏବଂ ଏହିଠାରେ ସପ୍ତମ ବର୍ଷରେ ମଧୁସୂଦନଙ୍କର ବିଦ୍ୟାରମ୍ଭ ହେଲା । ସ୍ଥାନୀୟ ଚାଟଶାଳୀରେ ଜଣେ ଅବଧାନଙ୍କ ନିକଟରୁ ସେ ଏ ଦେଶପ୍ରଚଳିତ ଖଡ଼ିପାଠ ଅଭ୍ୟାସ କଲେ । ଶୋଧି, ଓଡ଼ାଙ୍କ, ହରିଗୁଣ, କୋଟା, ନଳ, କ୍ରୟ ବିକ୍ରୟ ପ୍ରଭୃତି ଯେଉଁ ସବୁର ନାମ ଆଧୁନିକ ବିଦ୍ୟାଳୟ ଛାତ୍ରମାନଙ୍କର କର୍ଣ୍ଣଗୋଚର ହୋଇ ନଥିବ, ସେହି ସବୁ ନବାଲୋକପ୍ରାପ୍ତ ମଧୁସୂଦନଙ୍କର

ପ୍ରାଥମିକ ଶିକ୍ଷା ହୋଇଥିଲା । ପ୍ରାୟ ବର୍ଷକ ପରେ ମଧୁସୂଦନଙ୍କ ପିତା ଭୁବନେଶ୍ୱର ଥାନାକୁ ବଦଳି ହୋଇ ଆସିବାରୁ ସେହିଠାରେ ତାଙ୍କର ଶିକ୍ଷାର କିଞ୍ଚିତ୍ ସୁବିଧା ହେଲା । ତେତେବେଳେ ଭୁବନେଶ୍ୱରରେ ଗୋଟିଏ ଗବର୍ଣ୍ଣମେଣ୍ଟ ପ୍ରତିଷ୍ଠିତ ମଧ୍ୟଶ୍ରେଣୀ ବିଦ୍ୟାଳୟ ଥିଲା, ସେଥିରେ (ଓଡ଼ିଆ ପୁସ୍ତକ ଅଭାବରୁ) ବଙ୍ଗଳା ଶିକ୍ଷା ଦିଆଯାଉଥିଲା । ମଧୁସୂଦନ ଏଥିରେ ପ୍ରବେଶ ଲାଭକରି ସ୍ୱୀୟ ଅନୁପମ ଗୁଣରେ ତତ୍ରତ୍ୟ ସମସ୍ତ ଛାତ୍ର ଓ ଶିକ୍ଷକଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ସେ ସ୍କୁଲ୍‌ର ହେଡ୍‌ମାଷ୍ଟର ଶ୍ରୀହରି ଭଟ୍ଟାଚାର୍ଯ୍ୟ ମଧୁସୂଦନଙ୍କ ଶିକ୍ଷୋନ୍ନତି ଦେଖି ଉତ୍ତମରୂପେ ବୁଝିପାରିଥିଲେ ଯେ ଛାତ୍ରଟି ଉଚ୍ଚତର ଶିକ୍ଷା ପାଇବାର ଯୋଗ୍ୟ । କିନ୍ତୁ ପିତାଙ୍କର ଜମାଦାରୀ କର୍ମର ସାମାନ୍ୟ ଆୟ ତାହାଙ୍କ ଉଚ୍ଚଶିକ୍ଷାର ଅନୁକୂଳ ନଥିଲା । ମାତ୍ର ସର୍ବଜ୍ଞ ଭଗବାନ୍ ଯାହାର ହୃଦୟକୁ ଜ୍ଞାନଦ୍ୱାରା ଆଲୋକିତ କରିବାକୁ ଇଚ୍ଛା କରନ୍ତି, ଶତ ପାର୍ଥିବ ବିଘ୍ନ ତାହାର ପଥରେ କଣ୍ଟକ ହୋଇ ନ ପାରେ । ଅଚିରେ ମଧୁସୂଦନଙ୍କର ସେ ଶିକ୍ଷାବିଘ୍ନ ଦୂରୀଭୂତ ହୋଇଗଲା । ଏକଦା ସ୍କୁଲ୍ ଇନ୍‌ସ୍ପେକ୍ଟର ଇଡ୍ରୋ ସାହେବ ଖଣ୍ଡଗିରି ଦେଖିବାକୁ ଯାଇ ସେଠାରୁ ଭୁବନେଶ୍ୱର ସ୍କୁଲ୍ ପରିଦର୍ଶନ କରିବାକୁ ଗଲେ । ସ୍କୁଲ୍‌କୁ ଯିବା ପୂର୍ବରୁ ଲୋକ-ବ୍ୟବହାର-କୁଶଳ ଭାଗୀରଥି ରାଓ ପରିଶ୍ରାନ୍ତ ସାହେବଙ୍କୁ ଦେଶକାଳୋଚିତ ଅତିଥିସତ୍କାର ଦ୍ୱାରା ପରିତୁଷ୍ଟ କରିଥିଲେ । ସାହେବ ସ୍କୁଲ୍‌ରେ ଉପସ୍ଥିତ ହେଲାକ୍ଷଣି ଶ୍ରେଣୀମଣ୍ଡନ ମଧୁସୂଦନଙ୍କ ମୁଖମଣ୍ଡଳ ଦେଖି ହଠାତ୍ 'କାହାର ପୁଅ' ବୋଲି ହିନ୍ଦୀରେ ପଚାରିଲେ । ସୁଚତୁର ପିତା ପଛେ ପଛେ ଥିବାରୁ 'ସେ ମୋହର ପୁଅ' ବୋଲି ଉତ୍ତର ଦିଅନ୍ତେ ପ୍ରଶଂସିତ ସାହେବ ଅଧିକରେ ପରିତୁଷ୍ଟ ହୋଇ ''ଆଚ୍ଛା, ତୁମ୍ଭ ପୁଅକୁ ପରୀକ୍ଷା କରିବା'' ବୋଲି ସସ୍ମିତ ମୁଖରେ କେତୋଟି ପ୍ରଶ୍ନ କଲେ । ପ୍ରଥମେ ଭିତ୍ତି ଦେହରେ ଭାରତର ମାନଚିତ୍ର ଦେଖି ସେଥିରୁ କେତୋଟି ଭୌଗୋଳିକ ପ୍ରଶ୍ନ କଲେ, ସେ ପ୍ରତ୍ୟେକର ସଦୁତ୍ତର ପାଇ ସାହେବ ଗଣିତର ଜ୍ଞାନ ପରୀକ୍ଷା କଲେ । ଆଶାନୁରୂପ ଉତ୍ତରରେ ଅତ୍ୟନ୍ତ ସନ୍ତୁଷ୍ଟ ସାହେବ ତାଙ୍କୁ ପୁରୀ ଜିଲ୍ଲା ସ୍କୁଲ୍‌ରେ ପଢ଼ାଇବାକୁ ଉପଦେଶ ଦେଲେ ଏବଂ ଭାଗୀରଥିଙ୍କ ଅବସ୍ଥା ବୁଝି ତତ୍‌କ୍ଷଣାତ୍ 'ପୁରୀ ଜିଲ୍ଲା ସ୍କୁଲ୍‌ରେ ବିନା ବେତନରେ ପାଞ୍ଚ ବର୍ଷ ପଢ଼ିବା ପାଇଁ' ଖଣ୍ଡିଏ ସାର୍ଟିଫିକେଟ୍ ଲେଖିଦେଲେ । ଏହି ସୁଯୋଗରେ ମଧୁସୂଦନ ହାଇସ୍କୁଲରେ ଅଧ୍ୟୟନର ସୁବିଧା ପାଇଲେ । ପୁରୀ ଗଲାବେଳକୁ ତାହାଙ୍କର ବୟସ ୯ ବର୍ଷରୁ ବଳି ପଡ଼ିଥିଲା । ସେଠାରେ ସେ ସହାଧ୍ୟାୟିମାନଙ୍କୁ ଅଧ୍ୟୟନର ଅପୂର୍ବ ଆଦର୍ଶ ଦେଖାଇଥିଲେ । ଛାତ୍ରମାନେ ଶ୍ରେଣୀରେ ଗଳ୍ପ କରୁଥିଲାବେଳେ ମଧୁସୂଦନ ସେହି ଗହଳ ମଧ୍ୟରେ ଥାଇ ସୁଦ୍ଧା ଅବାଧରେ ପଢ଼ି ପାରୁଥିଲେ । ପଢ଼ିବା ସମୟରେ କେହି ତାହାଙ୍କୁ ଡ଼ାକିଲେ ବା କିଛି କହିଲେ ସେ

ଅତ୍ୟନ୍ତ ବିରକ୍ତି ପ୍ରକାଶ କରି ପୂର୍ବବତ୍ ସ୍ୱପାଠରେ ଅଭିନିବିଷ୍ଟ ହେଉଥିଲେ । ଏହି ଅଧ୍ୟବସାୟ ଗୁଣରେ ସେ ପ୍ରତ୍ୟେକ ଶ୍ରେଣୀରେ ପ୍ରଥମ ସ୍ଥାନ ଏବଂ 'ଡ଼ବଲ ପ୍ରମୋଶନ' ପାଇ (ଗୋଟିଏ ଛାଡ଼ି ଉପର ଶ୍ରେଣୀକୁ ଉଠି) ଚାରି ବର୍ଷରେ ଦ୍ୱିତୀୟ ଶ୍ରେଣୀକୁ ଆସିଲେ । ପୁରୀର ତଦାନୀନ୍ତନ ଗୁଣଗ୍ରାହୀ ମାଜିଷ୍ଟ୍ରେଟ୍ ବକ୍ସଉଏଲ୍ ସାହେବ ବିଦ୍ୟାଳୟର ପାଠୋନ୍ନତି ଉଦ୍ଦେଶ୍ୟରେ ଏହି ନିୟମ କରିଥିଲେ ଯେ – ପ୍ରତିବର୍ଷ ସେ ପାଞ୍ଚୋଟି ଲେଖାଏଁ ଚାରୋଟି ବିଷୟରେ ୨୦ଟି ପ୍ରଶ୍ନ କରିବେ । ଯେଉଁ ଛାତ୍ର ସେହି ପ୍ରଶ୍ନଗୁଡ଼ିକର ଉତ୍ତର ପ୍ରଦାନ କରିବ, ସେ ପ୍ରତ୍ୟେକ ପ୍ରଶ୍ନରେ ପାଞ୍ଚଟଙ୍କା ଲେଖାଏଁ ପୁରସ୍କାର ପାଇବ । ମଧୁସୂଦନ ଏହି ଏକଶତ ଟଙ୍କାର ପୁରସ୍କାର ତିନିବର୍ଷ ପାଇଥିଲେ । କେବଳ ଏହି ପୁରସ୍କାର ନୁହେ, ତେତେବେଳେ ଗିମା ବା ରେଉଥାର ରାଜା ଉକ୍ତ ସ୍କୁଲ୍‌କୁ ୪୦/୫୦ ଭରି ପରିମାଣରେ ଗୋଟିଏ ବଡ଼ ରୌପ୍ୟ ପଦକ ପ୍ରଦାନ କରିଥିଲେ । ସେଥିରେ ଏହି ନିୟମ ଥିଲା ଯେ, ଯେଉଁ ଛାତ୍ର ସବୁ ବିଷୟରେ ପ୍ରଥମ ହେବ, ସେ ଏହି ପଦକ ପାଇବ ଏବଂ ସାତଦିନ ଘରେ ରଖି ସ୍କୁଲ୍‌କୁ ଫେରାଇ ଦେବ । କିନ୍ତୁ ତିନିବର୍ଷ ଏକ ଲୋକ ପାଇଲେ ପଦକ ତାହାରି ହୋଇଯିବ । ମଧୁସୂଦନ ପ୍ରଥମ ଶ୍ରେଣୀରେ ଥାଇ ଦୁଇବର୍ଷ ଏହି ପଦକ ପାଇଥିଲେ । ତୃତୀୟ ବର୍ଷରେ ମଧୁସୂଦନ ପ୍ରବେଶିକା ପରୀକ୍ଷାରେ ପୁରୀ ଜିଲ୍ଲା ସ୍କୁଲରୁ ସର୍ବପ୍ରଥମ ଛାତ୍ରରୂପେ ଉତ୍ତୀର୍ଣ୍ଣ ହେଲେ ଏବଂ ମାସିକ ଦଶଟଙ୍କା ବୃତ୍ତି ପ୍ରାପ୍ତ ହେଲେ । ସ୍କୁଲ୍‌ରୁ ଚାଲିଯିବାରୁ ଏ ପଦକ ତାହାଙ୍କୁ ଦିଆଯିବ କି ନାହିଁ ନିର୍ଦ୍ଧାରଣ କରୁ କରୁ ପ୍ରାୟ ବର୍ଷେ ଚାଲିଗଲା । ପରବର୍ଷ ହରିକୃଷ୍ଣ ଦାସ ନାମକ ଜଣେ ଛାତ୍ର ଦ୍ୱିତୀୟ ବିଭାଗର ୧୫ ଟଙ୍କା ବୃତ୍ତି ପାଇବାରୁ ଉକ୍ତ ପଦକର ଦାବି କଲେ । କିନ୍ତୁ ଗୁଣଗ୍ରାହୀ ବକ୍ସଉଏଲ୍ ସାହେବଙ୍କ ଯୋଗେ ଡ଼ିଷ୍ଟ୍ରିକ୍ଟ କମିଟି ସେ ପଦକ ମଧୁସୂଦନଙ୍କୁ ପ୍ରଦାନ କରିବାର ସିଦ୍ଧାନ୍ତ କଲେ । ଏହା ପ୍ରାୟ ୧୮୭୦ ଖ୍ରୀଷ୍ଟାବ୍ଦର କଥା । ଯେଉଁଦିନ ମଧୁସୂଦନ ସେହି ପଦକ ଆଣିବାକୁ ଯିବେ, ସେଦିନ କୌଣସି ନିଚାଶ୍ରୟ ଛାତ୍ର ଅସୂୟାପରବଶ ହୋଇ ସ୍କୁଲଗୃହରେ ଅଗ୍ନି ଲଗାଇ ଦେଲା । ପଦକ ସହିତ ସ୍କୁଲ୍‌ର ସମସ୍ତ ଉପକରଣ ଓ ବହୁବର୍ଷସଞ୍ଚିତ ପୁସ୍ତକମାନ ଭସ୍ମସାତ୍ ହୋଇଗଲା । ଜନନୀଙ୍କ ମୃତ୍ୟୁ ଉତ୍ତାରେ ମଧୁସୂଦନଙ୍କ ଜୀବନରେ ଏ ଦ୍ୱିତୀୟ ଆଘାତ । ପ୍ରଥମ ଆଘାତରେ ସେ ପ୍ରଥମବର୍ଷ ଶକ୍ତିସତ୍ତ୍ୱେ ପ୍ରବେଶିକା ପରୀକ୍ଷା ଦେଇପାରିନଥିଲେ । ଏହି ବର୍ଷ ଉତ୍କଳରେ ୧୮୬୭ ସାଲର ସେହି ରୋମହର୍ଷଣ ମହାଦୁର୍ଭିକ୍ଷ ! ଯାହାର ବର୍ଣ୍ଣନାରେ ଅଦ୍ୟାପି ହୃତ୍‌କମ୍ପ ଉପସ୍ଥିତ ହୁଏ ! ଯାହାର ଅଙ୍କ 'ନଅଙ୍କ' ସ୍ମରଣରେ ପ୍ରତ୍ୟେକ ହୃଦୟରେ ଦୁର୍ଭିକ୍ଷ ପ୍ରତୀତି ହୁଏ !! ଶତ ଶତ ଶବ ଓ ନରକଙ୍କାଳ ବାଟ ଘାଟ ସର୍ବତ୍ର ଦେଖି ଦରିଦ୍ର ମଧୁସୂଦନଙ୍କ କୋମଳ ପ୍ରାଣ ତେତେବେଳେ ବିଶୁଷ୍କ ହୋଇ ଯାଉଥିଲା । କିନ୍ତୁ ତେତେବେଳେ ତାହାଙ୍କ ମନର ଅନୁକୂଳ କର୍ମ ମିଳିବାରୁ ସେ କଥଞ୍ଚିତ ଆଶ୍ୱାସନା ଲାଭ କରିଥିଲେ । 'ଯୋଗ୍ୟଂ ଯୋଗ୍ୟେନ ଯୋଜୟେତ୍' କଥାଟି

ସମସ୍ତଙ୍କ ହାତରେ ହୁଏନାହିଁ । ତଦାନୀନ୍ତନ ସୁପଣ୍ଡିତ ମହନ୍ତ ନାରାୟଣ ଦାସଙ୍କ ଅନୁରୋଧକ୍ରମେ ବକ୍ସୁଉଏଲ୍ ସାହେବ ପ୍ରଥମ ଶ୍ରେଣୀର ପ୍ରଥମ ଛାତ୍ର ମଧୁସୂଦନଙ୍କୁ ଦରିଦ୍ର ବା ଦୁର୍ଭିକ୍ଷପୀଡ଼ିତ ବ୍ୟକ୍ତିମାନଙ୍କୁ ଚାଉଳ ବାଣ୍ଟିବା ଭାର ପ୍ରଦାନ କରିଥିଲେ । ଜଣେ ଛାତ୍ରର ଏ ଦାୟିତ୍ୱପୂର୍ଣ୍ଣ ସେବାବ୍ରତ ସେ କାଳର ଲୋକଙ୍କୁ ବଡ଼ ନୂତନ ବୋଧ ହୋଇଥିଲା । ମଧୁସୂଦନ ଏହି ସେବକତାରେ ଆପଣାକୁ ବଡ଼ କୃତାର୍ଥ ମଣିଥିଲେ ଏବଂ ସେ ବୋଧହୁଏ ଏହି କାଳରେ ଭଗବାନଙ୍କୁ ଭବିଷ୍ୟତ ପାଇଁ ଦରିଦ୍ର ସାହାଯ୍ୟ କରିବାର ଶକ୍ତି ଭିକ୍ଷା କରିଥିଲେ । ଏହିଠାରେ ତାହାଙ୍କର 'ଜୀବେ ଦୟା' ଶିକ୍ଷାର ସୂତ୍ରପାତ ହୋଇଅଛି । ଏହି ସମୟରୁ ଅର୍ଥାତ୍ ଚତୁର୍ଦ୍ଦଶ ବର୍ଷ ବୟସରୁ ସେ ଯାବଜ୍ଜୀବନ ମତ୍ସ୍ୟ ମାଂସ ଭକ୍ଷଣ ତ୍ୟାଗ କରିଥିଲେ ।

ଏହି ପ୍ରସଙ୍ଗରେ କବିବର ରାଧାନାଥଙ୍କ ସହିତ ମଧୁସୂଦନଙ୍କ ସମ୍ପର୍କ ଉଲ୍ଲେଖଯୋଗ୍ୟ । ଗୁଣଜ୍ଞ ରାଧାନାଥ ଯେଉଁ ଘଟଣାରେ ପ୍ରଥମେ ମଧୁସୂଦନଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ, ତାହା ଏହି—ପୁରୀ ସ୍କୁଲ୍‌ର ଶିକ୍ଷକ ହେବା ପୂର୍ବରୁ ରାଧାନାଥ ଦିନେ ଜଗନ୍ନାଥ ଦର୍ଶନକୁ ଯାଇ ଜିଲ୍ଲା ସ୍କୁଲ୍ ଦେଖିବାକୁ ଯାଇଥିଲେ । ସେଠାରେ ଦ୍ୱିତୀୟ ଶ୍ରେଣୀରେ ନଫର ନାମକ ଗୋଟିଏ ଛାତ୍ର ସ୍ୱପାଠରତ ମଧୁସୂଦନଙ୍କ ହାତଧରି ଟାଣି ଟାଣି କଣ କହିବାରୁ ସେ ବିରକ୍ତି ପ୍ରକାଶ କରି କହିଲେ "Don't bother me now". ରାଧାନାଥ ଏହା ଦେଖିଲାକ୍ଷଣି ବଡ଼ ତେଜସ୍ୱୀ ଛାତ୍ର ମନେକରି ତାଙ୍କୁ ବାହାରକୁ ଡ଼ାକି ଆଣିଲେ ଏବଂ ତାଙ୍କର ପରିଚୟ ସେହିଦିନ ପ୍ରଥମ ଗ୍ରହଣ କଲେ । କେତେକ ମାସ ପରେ ପୁଣି ସେ ଉକ୍ତ ସ୍କୁଲ୍‌ର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହୋଇ ଆସିଲେ ଏବଂ ତାହାଙ୍କ ଉପରେ ଭୂଗୋଳ ଓ ଇତିହାସର ଅଧ୍ୟାପନା ଭାର ପ୍ରଦତ୍ତ ହେଲା । ସେ ଏହି ଦୁଇ ବିଷୟର ଅଧ୍ୟାପକ ହେଲେହେଁ ପ୍ରିୟତମ ଶିଷ୍ୟ ମଧୁସୂଦନଙ୍କର ସମସ୍ତ ବିଷୟ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ । ଦ୍ୱିତୀୟ ବର୍ଷ ସେ ଅତ୍ୟନ୍ତ ପୀଡ଼ାଗ୍ରସ୍ତ ହୋଇ ବିଶ୍ୱବିଦ୍ୟାଳୟର ପରୀକ୍ଷା ଦେଇପାରିନଥିଲେ । ତୃତୀୟ ବର୍ଷ ସେହି ସମୟରେ ଯେତେବେଳେ କଠିନ ପୀଡ଼ାଗ୍ରସ୍ତ ହେଲେ, ତେତେବେଳେ ସେ ଦିନେ ଗୃହାଗତ ସଦ୍‌ଗୁରୁ ରାଧାନାଥଙ୍କୁ ଆପଣାର ପରୀକ୍ଷାର ଅନ୍ତରାୟଭୂତ ଉପସ୍ଥିତ ଦୁଃଖ ଜଣାଇ କ୍ରନ୍ଦନ କରିବାକୁ ଲାଗିଲେ । ରାଧାନାଥ ତାହାଙ୍କୁ ପରୀକ୍ଷାରେ ସମ୍ପୂର୍ଣ୍ଣ ରୂପେ କୃତକାର୍ଯ୍ୟ ହୋଇ ପାରିବାର ଆଶା ଦେବାରୁ ସେ କେବଳ ଅଙ୍କ ଶିକ୍ଷାଦାନ ଲାଗି ତାହାଙ୍କୁ ଅନୁରୋଧ କଲେ । ରାଧାନାଥ ସେ ପ୍ରସ୍ତାବରେ ସ୍ୱୀକୃତ ହୋଇ ପ୍ରତ୍ୟହ ଗୃହକୁ ଆସି ଅଙ୍କ ଶିକ୍ଷା ଦେବାକୁ ଲାଗିଲେ । ଏହି ସମୟରେ ଉଭୟଙ୍କ ସମ୍ପର୍କ ଗାଢ଼ତର ହେଲା । ସେ ଯେ କେବଳ ଏହି କାଳ ମଧ୍ୟରେ

ସୁନିପୁଣ ଭାବରେ ଅଙ୍କ ଶିଖାଇଥିଲେ ତାହାନୁହେଁ, ଅନ୍ୟାନ୍ୟ ବିଷୟରେ ମଧ୍ୟ ଅଙ୍କୁର ଜନ୍ମାଇଥିଲେ । ରାଧାନାଥ ତାହାଙ୍କୁ ଏଡ଼େ ସ୍ନେହ କରୁଥିଲେ ଯେ, କି ସ୍କୁଲ୍ କି ବାହାର ସର୍ବତ୍ର ତାହାଙ୍କର ସୁଖ-ସଙ୍ଗ ଲୋଡୁଥିଲେ । କେତେବେଳେ ଚକ୍ରତୀର୍ଥର ସମୁଦ୍ରକୂଳ, କେତେବେଳେ ସ୍ୱର୍ଗଦ୍ୱାରର ଶ୍ମଶାନ, କେତେବେଳେ ପଣ୍ଡିତାଗ୍ରଗଣ୍ୟ ମହାତ୍ମା ହରିହର ଦାସଙ୍କ ବାସଭବନରେ ଉଭୟଙ୍କର ବହୁକ୍ଷଣ ନାନା ଭାବନା ଓ ଆଲୋଚନାରେ ବ୍ୟୟିତ ହେଉଥିଲା । ମଧୁସୂଦନ ତାହାଙ୍କ ସଙ୍ଗରେ ଜ୍ୟୋତ୍ସ୍ନାମୟୀ ରଜନୀରେ ଚନ୍ଦ୍ରାଲୋକ ବିଚ୍ଛୁରିତ ମହାସମୁଦ୍ରର ମହୋଦାର ରୁଦ୍ର ସୁନ୍ଦର ଦୃଶ୍ୟ ଏବଂ ମହାଶ୍ମଶାନର ବିକଟ ଦୃଶ୍ୟ ଦେଖି ଦେଖି ହୃଦୟରେ ଭାବୁକତାର ଅଙ୍କୁର ଲାଭ କରୁଥିଲେ ଏବଂ ପ୍ରୋକ୍ତ ପଣ୍ଡିତପ୍ରବରଙ୍କ ନିକଟରେ ସଂସ୍କୃତଚର୍ଚ୍ଚା ଓ ଦାର୍ଶନିକ ମତବାଦମାନ ଶ୍ରବଣ କରୁଥିଲେ । ଏହି ଶୁଭ ଯୋଗ ଦିନରୁ ତାଙ୍କର ସାହିତ୍ୟ ପ୍ରତି ଅନୁରାଗ ଜନ୍ମିଲା ।

ଏହି ବିଦ୍ୟାଳୟରେ ପଢୁଥିବା ସମୟରେ ଏକାଦଶ ବର୍ଷରେ ମଦୃସୁଦନଙ୍କର ଶୁଭପରିଣୟ କର୍ମ ସମ୍ପାଦିତ ହୋଇଥିଲା । ସେ ପୁରୀବାସୀ ବଳରାମ ଜୀଙ୍କ କନ୍ୟା ସୌଭାଗ୍ୟବତୀ ପଦ୍ମାବାଈଙ୍କର ପାଣିଗ୍ରହଣ କରିଥିଲେ ।

୧୮୬୯ ଅବ୍ଦର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧୁସୁଦନ ମାତୃସମା ମାତୃଷ୍ୱସା[୧] ଏବଂ ପ୍ରାଣପ୍ରିୟ ସହୋଦରଙ୍କ ସହିତ କଟକକୁ ଅଧ୍ୟୟନାର୍ଥ ଆସିଥିଲେ । ତେତେବେଳେ କଟକରେ ରେଭନ୍‌ସା କଲେଜ ସ୍ଥାପିତ ହୋଇନଥିଲା । ଏଫ୍.ଏ. ପରୀକ୍ଷା ଦେବାର ସୁବିଧା ନିମିତ୍ତ ଦିଓଟି ଅତିରିକ୍ତ ଶ୍ରେଣୀ ତଦନୀନ୍ତନ କଟକ ହାଇସ୍କୁଲ୍ ସଂଲଗ୍ନ ଥିଲା । ଶ୍ରୀଯୁକ୍ତ ଚଣ୍ଡୀଚରଣ ବନ୍ଦୋପାଧ୍ୟାୟ* ହାଇସ୍କୁଲ୍‌ର ପ୍ରଧାନ ଅଧ୍ୟାପକ ଥିଲେ ଏବଂ ତାହାଙ୍କ ଅଧୀନରେ ରାଜକିଶୋର ବନ୍ଦ୍ୟୋପାଧ୍ୟାୟ, ହରନାଥ ଭଟ୍ଟାଚାର୍ଯ୍ୟ ପ୍ରଭୃତି କେତେଜଣ ଅଧ୍ୟାପକ ଥିଲେ । ତନ୍ମଧ୍ୟରେ ରାଜକିଶୋର ବାବୁ[୨] ବଙ୍ଗଳାରେ ଜଣେ ସୁଲେଖକ ଏବଂ ଇଂରାଜୀ ଭାଷାରେ ସୁପଣ୍ଡିତ ଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟର ଏମ୍.ଏ.ବି.ଏଲ୍. ଏବଂ ରାୟଚାନ୍ଦ ପ୍ରେମଚାନ୍ଦ ବୃତ୍ତି ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଏଠାକୁ ଆସିଥିଲେ । ଦର୍ଶନ—ଅଧ୍ୟାପକ ଭଟ୍ଟାଚାର୍ଯ୍ୟ ହରନାଥ ଯେପରି ସୁବିଦ୍ୱାନ ସେହିପରି ମଧ୍ୟ ସୁଚରିତ୍ର ଥିଲେ । ମଧୁସୂଦନ ହାଇସ୍କୁଲ୍‌ରେ ନାମ ଲେଖାଇ ଏହି ଅଧ୍ୟାପକମାନଙ୍କୁ ଉଚ୍ଚ ଶିକ୍ଷାର ସହାୟସ୍ୱରୂପ ଲାଭ କରିଥିଲେ । ଯେଉଁମାନଙ୍କୁ ଏଠାରେ ସହାଧ୍ୟାୟୀ ରୂପେ

(୧) ତାହାଙ୍କ ବିମାତାଙ୍କ ଭଗିନୀ । ସେ ସ୍ୱୀୟ ସହୋଦରାଙ୍କ ସନ୍ତାନମାନଙ୍କ ଅପେକ୍ଷା ସପତ୍ନୀଗର୍ଭଜାତ ଏହି ଦୁଇପୁତ୍ରଙ୍କୁ ଅଧିକ ସ୍ନେହ କରୁଥିଲେ ।

(୨) ବଙ୍ଗଳା 'ମିତ୍ରବିଳାପ' ଓ 'କାବ୍ୟକଳାପ' ଗ୍ରନ୍ଥଦ୍ୱୟ ଏହାଙ୍କ ଦ୍ୱାରା ବିରଚିତ ।

* 'ସର ବାସୁଦେବ ଜୀବନୀ' (ବଙ୍ଗଳା ପୁସ୍ତକ)ର ଲେଖକ (ସଂ.) ।

ଲାଭ କରିଥିଲେ, ସେମାନଙ୍କ ମଧ୍ୟରେ ପରଲୋକଗତ ଭଗବତୀଚରଣ ଚାଟୁର୍ଯ୍ୟା (ଗଞ୍ଜାମର ଭୂତପୂର୍ବ ଡ଼େପୁଟି ଇନସ୍ପେକ୍ଟର), ବିପ୍ରଚରଣ ଚାଟୁର୍ଯ୍ୟା (ଗଞ୍ଜାମର ଭୂତପୂର୍ବ ସରକାରୀ ଓକିଲ), ଚତୁର୍ଭୁଜ ପଟ୍ଟନାୟକ (ଭୂତପୂର୍ବ ଓଡ଼ିଆ ଟ୍ରାନ୍ସଲେଟର୍) ଏବଂ ବାବୁ ବଳରାମ ଦାସ (ପେନ୍ସନ ପ୍ରାପ୍ତ ଡ଼େପୁଟି ମାଜିଷ୍ଟ୍ରେଟ୍) ପ୍ରଧାନ ଥିଲେ । ଏ ପ୍ରତ୍ୟେକେ ଭିନ୍ନ ରୁଚିର ଛାତ୍ର ଥିଲେ । ଜ୍ୟେଷ୍ଠ ଭଗବତୀ ଭାବଗମ୍ଭୀର, ଚତୁର୍ଭୁଜ ଚଳଚିତ୍ତ ବା କ୍ଷିପ୍ରଭାବାପନ୍ନ, ବଳରାମ ରସିକତାନିପୁଣ ଏବଂ ମଧୁସୂଦନ ଉନ୍ନତରୁଚି ଓ ଉଚ୍ଚକଥାପ୍ରିୟ ଥିଲେ । ଏପରି ବିଭିନ୍ନ ରୁଚି ସତ୍ତ୍ୱେ ସେମାନେ ଏପରି ସୌହାର୍ଦବଦ୍ଧ ହୋଇଥିଲେ ଯେ କର୍ମକ୍ଷେତ୍ରରେ ପରସ୍ପରଠାରୁ ପୃଥକ୍ ହୋଇ ସୁଦ୍ଧା କେହି କାହାରିକୁ ସେହି ସୁଖମୟ ସ୍ମୃତିରୁ ଅନ୍ତର କରି ନ ଥିଲେ । ସହାଧ୍ୟାୟିଙ୍କ ସ୍ନେହ ଅପେକ୍ଷା ଅଧ୍ୟାପକ ରାଜକିଶୋର ବାବୁଙ୍କ ସ୍ନେହ ଆହୁରି ଗାଢ଼ତର ଥିଲା । ସେ ଛାତ୍ରମାନଙ୍କୁ ଏଡ଼େ ଭଲ ପାଉଥିଲେ ଯେ, କେତେବେଳେ ସେମାନଙ୍କ ସହିତ ପାଠ୍ୟଗ୍ରନ୍ଥ ବ୍ୟତୀତ ନାନା ଗ୍ରନ୍ଥର ଆଲୋଚନାରେ, କେତେବେଳେ ସେମାନଙ୍କ ସହିତ ହାସ ପରିହାସରେ[୧] କେତେବେଳେ ବା ମିଷ୍ଟାନ୍ନ ବିତରଣରେ ନିଯୁକ୍ତ ରହି ଆନନ୍ଦ ପ୍ରକାଶ କରୁଥିଲେ । ରାଜକିଶୋର ବାବୁଙ୍କ ଅଧ୍ୟାପନା ସ୍ୱତନ୍ତ୍ର ପ୍ରକାର ଥିଲା, ସେ ଇଂରାଜୀ ଅଧ୍ୟାପକ ଥିଲେ ସତ୍ୟ, କିନ୍ତୁ ଆଜିକାଲି ପରି ଶ୍ରେଣୀରେ ବସି କେବଳ ଇଂରାଜୀରେ ବ୍ୟାଖ୍ୟାନ ପ୍ରଦାନ କରୁ ନଥିଲେ, ଅଧ୍ୟାପନାରେ ତାଙ୍କର ଇଂରାଜୀ, ସଂସ୍କୃତ ଓ ବଙ୍ଗଳା ସବୁ ଭାଷା ଚାଲୁଥିଲା । ସେ ହୋମର ପରେ ବାଲ୍ମିକୀ, ବ୍ୟାସ ପରେ ଭର୍ଜିଲ, କେତେବେଳେ ମିଲଟନ ପରେ ମାଇକେଲ୍ (ମେଘନାଦବଧ) ଧରୁଥିଲେ । ରାମାୟଣ, ମହାଭାରତର କଥାମାନ ତାଙ୍କର ଯେପରି ସ୍ମରଣାଧୀନ ଥିଲା, ଏପରି ପ୍ରାୟ ଦେଖାଯାଏନାହିଁ । ସେଥିପାଇଁ ସେ ଦିନେ ଦିନେ ନ ପଢ଼ାଇ ଛାତ୍ରମାନଙ୍କୁ ରାମାୟଣ ମହାଭାରତ ବିଷୟରେ ନାନା ସୂକ୍ଷ୍ମ ପ୍ରଶ୍ନ କରିବାକୁ ଆଦେଶ ଦେଉଥିଲେ ଏବଂ ଛାତ୍ରମାନେ ବିବିଧ ପ୍ରଶ୍ନ ଦ୍ୱାରା ସେ ମହାସମୁଦ୍ର ମନ୍ଥନ କରି ନାନା ରତ୍ନ ଲାଭ କରୁଥିଲେ । ଫଳତଃ ତାହାଙ୍କ ଅଧ୍ୟାପନା ଗୁଣରେ ଛାତ୍ରବର୍ଗଙ୍କର ଜ୍ଞାନୋନ୍ନତି ସଙ୍ଗେ ସଙ୍ଗେ ତୁଳନା କରିବାର ଶକ୍ତି ବା ସମାଲୋଚନା-ବୃତ୍ତି ମାର୍ଜିତ ହୋଇ ଯାଇଥିଲା । ଦର୍ଶନାଧ୍ୟାପକ ହରନାଥଙ୍କ ସମ୍ବନ୍ଧରେ ଏଠାରେ କିଛି କହିବା ସଙ୍ଗତ ହେଉଅଛି । ହରନାଥଙ୍କ ନିର୍ମଳ ଚରିତ୍ର ଏବଂ ପ୍ରଶାନ୍ତ ଭାବ ଦର୍ଶନରେ ଛାତ୍ରମାନଙ୍କର ତାହାଙ୍କ ପ୍ରତି ଅଧିକତର ଭୟ ଓ ଭକ୍ତିର ସଞ୍ଚାର ହୋଇଥିଲା ।

(୧) ଛାତ୍ରମାନଙ୍କ ସହିତ ମଧ୍ୟେ ମଧ୍ୟେ ମଧୁସୂଦନଙ୍କର ଯେଉଁ ପରିହାସକୁଶଳତାର ଅଭିନୟ ଦେଖାଯାଇଅଛି, ତାହା ବୋଧହୁଏ ଏହି ରାଜକିଶୋର ବାବୁଙ୍କଠାରୁ ପ୍ରାପ୍ତ ।

ମଧୁସୂଦନଙ୍କର ଛାତ୍ରମାନେ ତାହାଙ୍କୁ ଯେପରି ଚକ୍ଷୁରେ ଦେଖୁଥିଲେ, ସେମାନେ ହରନାଥଙ୍କୁ ଠିକ୍ ସେହିପରି ଚକ୍ଷୁରେ ଦେଖୁଥିଲେ । ସେ ଶ୍ରେଣୀରେ ପ୍ରବେଶ କଲେ ଶ୍ରେଣୀ ତତ୍କ୍ଷଣାତ୍ ନିସ୍ତବ୍ଧଭାବ ଧାରଣ କରେ । ତେଣୁ ହରନାଥଙ୍କ ଦାର୍ଶନିକ ଉପଦେଶ ପ୍ରତ୍ୟେକ ଅଭିନିବିଷ୍ଟ ଛାତ୍ରଙ୍କ ହୃଦୟରେ ଉର୍ବର ଭୂମିରେ ରୋପିତ ବୀଜ ପରି କାର୍ଯ୍ୟକାରୀ ହେଉଥିଲା । ସେ ଯାହାହେଉ, ଏହି ଅଧ୍ୟାୟିମାନଙ୍କ ମଧ୍ୟରେ ମଧୁସୂଦନ ସର୍ବବିଷୟରେ ଶ୍ରେଷ୍ଠ ଏବଂ ବିଚକ୍ଷଣ ଥିଲେ । ତାହାଙ୍କର ବହୁତୋମୁଖୀ ଧୀଶକ୍ତି ଦର୍ଶନରେ ଅଧ୍ୟାପକବର୍ଗ ପରମ ପରିତୋଷ ଲାଭ କରିଥିଲେ । ଏହିପରି ସନ୍ତୋଷ ମଧ୍ୟରେ ସେ ଦୁଇବର୍ଷ ଅଧ୍ୟୟନ କରି ୧୮୭୧ ଅବ୍ଦର ଏଫ୍.ଏ. ପରୀକ୍ଷାରେ ସୁଖ୍ୟାତି ସହକାରେ ଉତ୍ତୀର୍ଣ୍ଣ ହେଲେ ଏବଂ ତହିଁ ଉତ୍ତାରେ ବି.ଏ. ପଢ଼ିବା ଲାଗି କଲିକତା ଯିବାକୁ ମନ ବଳାଇଥିଲେ । କିନ୍ତୁ ପୁତ୍ରବତ୍ସଳ ପିତାଙ୍କର ସନିର୍ବନ୍ଧ ବାରଣ କଲିକତା ନ ଯିବାର ପ୍ରଧାନ କାରଣ ହେଲା । ଏଫ୍.ଏ. ଶ୍ରେଣୀରେ ପଢୁଥିବାବେଳେ ସେ ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଭଲ ଇଂରାଜୀ କବିତାର ଉତ୍କଳାନୁବାଦ କରୁଥିଲେ । ତାଙ୍କ ଦେଖାଦେଖି ବଳରାମ ବାବୁ ପରେ 'କୁମାରସମ୍ଭବ'ର ଅନୁବାଦ କରିଥିଲେ । କିନ୍ତୁ ମଧୁସୂଦନଙ୍କ ଅନୁବାଦ ଅତି ଉତ୍କୃଷ୍ଟ ଏବଂ ଅନନ୍ୟ ସାଧାରଣ । ପରବର୍ତ୍ତୀ ଜୀବନରେ ସେ ଏହି ଅନୁବାଦରେ ଯେପରି ଶକ୍ତିମତ୍ତା ପ୍ରଦର୍ଶନ କରିଅଛନ୍ତି, ତାହା ବଙ୍ଗଦେଶର ଅନେକ ସୁଲେଖକଙ୍କଠାରେ ଦୁର୍ଲଭ । ବଳରାମବାବୁଙ୍କୁ ସଙ୍ଗୀ ପାଇ ଏହିକାଳରେ ତାହାଙ୍କର ପ୍ରାଚୀନ ସାହିତ୍ୟ ଆଲୋଚନାର କିଞ୍ଚିତ୍ ସୁବିଧା ହୋଇଥିଲା । ସେ ତାଳପତ୍ର ପୋଥିରୁ ବୈଦେହୀଶ ବିଳାସର ଚର୍ଚ୍ଚା କରିଥିଲେ । ଏଥିପୂର୍ବେ ସେ ଅବଶ୍ୟ ଅନ୍ୟାନ୍ୟଙ୍କ ପରି କେବଳ ବଙ୍ଗଳା ସାହିତ୍ୟ ଆଲୋଚନା କରିଥିଲେ । ତେତେବେଳେ ମଧ୍ୟ ମିସନରୀକୃତ 'ନୀତିବୋଧ' ଓ 'ହିତୋପଦେଶ' ଏହି ଦୁଇଖଣ୍ଡି ଛଡ଼ା ଅନ୍ୟ କୌଣସି ଛାପା ଓଡ଼ିଆ ପୁସ୍ତକ ନଥିଲା । ଛାତ୍ରଜୀବନରେ ତାଙ୍କର ଗୋଟିଏ ବିଶେଷ ଲକ୍ଷଣ ଏହି ଦେଖାଯାଇଥିଲା ଯେ, ଅଶ୍ଳୀଳ କଥା ବା ଭାବ କଦାପି ମୁଖରୁ ଶୁଣା ଯାଇ ନାହିଁ । ଅନ୍ୟ କାହାରିକି କହିବାର ଦେଖିଲେ ସେ ବିରକ୍ତ ପ୍ରକାଶକରି ତହିଁରୁ ନିବୃତ୍ତ ହେବାଲାଗି ଶିକ୍ଷା ଦେଉଥିଲେ । ଖେଳରେ କାଳକ୍ଷେପଣ କରିବା ଦୂରେ ଥାଉ, ସେ ଖେଳ କିପରି ତାହା ଜାଣିନଥିଲେ । ସେ ଅନେକ ସମୟ ଚିତି ହୋଇ ଶୋଇ ବକ୍ଷରେ ପୁସ୍ତକ ରଖି ପଢୁଥିଲେ । ଏହିପରି ଅଭ୍ୟାସ ଦ୍ୱାରା ଦୃଷ୍ଟିଶକ୍ତି ହ୍ରାସପ୍ରାପ୍ତ ହୋଇଥିବାର ସେ ଅନେକ ସମୟରେ ପ୍ରକାଶ କରିଥାନ୍ତି ଏବଂ ଏ ପ୍ରକାର ଅଭ୍ୟାସରୁ କ୍ଷାନ୍ତ ହେବାପାଇଁ ସମୟ ସମୟରେ ଛାତ୍ରମାନଙ୍କୁ ଉପଦେଶ ଦେଇଥାନ୍ତି । ଛାତ୍ରଜୀବନରେ ତାହାଙ୍କର କିପରି ଗଭୀର ଧର୍ମାନୁରାଗ ଥିଲା, ତାହା ପରବର୍ତ୍ତୀ ପ୍ରସଙ୍ଗରେ ଉଲ୍ଲେଖ କରାଯିବ ।

## ୨

## ଧର୍ମାନୁରାଗ ଓ ବ୍ରାହ୍ମସମାଜ

ଓଡ଼ିଆରେ ଗୋଟିଏ ପ୍ରବାଦ ଅଛି ଯେ, ''ତୁଳସୀ ଦୁଇ ପତ୍ରରୁ ବାସେ'' ଅର୍ଥାତ୍ ଯେ ଯାହା ହେବ, ତାହା ବାଲ୍ୟଜୀବନରୁ ପ୍ରକାଶ ପାଏ । କୌମାର ଅବସ୍ଥାରୁ ମଧୁସୂଦନଙ୍କର ଧର୍ମପ୍ରାଣତା ପ୍ରକଟିତ ହୋଇଥିଲା । ଦଶବର୍ଷ ବୟସରୁ ସେ ପ୍ରତ୍ୟହ ଦେବଦେବୀ ଦର୍ଶନକୁ ମନୁଷ୍ୟର ପ୍ରଧାନ କର୍ତ୍ତବ୍ୟ ବୋଲି ବୁଝିଥିଲେ । ଶୁଣିଲେ ପାଠକମାନେ ଆଶ୍ଚର୍ଯ୍ୟ ମଣିବେ ଯେ, ତେତେବେଳେ ସେ ଗୃହର ଅଦୂରବର୍ତ୍ତୀ ବାନାମ୍ବର ମହାଦେବଙ୍କୁ ଦର୍ଶନ ନକଲେ ଜଳ ଗ୍ରହଣ କରୁନଥିଲେ । କେବଳ ଦୂରତା ହେତୁରୁ ପ୍ରତ୍ୟହ ବଡ଼ଦେଉଳକୁ ଯାଇନପାରି ପ୍ରତି ରବିବାର ଜଗନ୍ନାଥ ଦର୍ଶନ କରୁଥିଲେ । ଏହି ବଡ଼ଦେଉଳ ତାହାଙ୍କର ଧର୍ମୋନ୍ମୁଖ ହୃଦୟରେ ବଡ଼ପଣର ବୀଜ ରୋପଣ କରିଥିଲା । ଯାହାଙ୍କର ମନ ଏକ ସମୟରେ କ୍ଷୁଦ୍ର ପରିମିତ ପାର୍ଥିବ ବାନାମ୍ବର ଲିଙ୍ଗକୁ ବଡ଼ ମାନିଥିଲା, ସେ ପୁଣି ପରେ କେବଳ ସେଠାରେ କାହିଁକି ସମଗ୍ର ପୃଥିବୀରେ ତୃପ୍ତ ନହୋଇ ଏକ ଅତୀନ୍ଦ୍ରିୟ ଅପରିମେୟ ଅପାର୍ଥିବ ବସ୍ତୁ ଆଡ଼କୁ ଧାବିତ ହେଲେ । ଆଲୋକରଶ୍ମି ପ୍ରାୟ ମନୁଷ୍ୟର ମନ ଏହି କ୍ଷୁଦ୍ର ମଳିନ ଶରୀରାବରଣରେ ଆବଦ୍ଧ ଥିଲେହେଁ ତାହା ଅଧାରଣୀୟ ଦୂରକୁ ଗତି କରି ଅଧାରଣୀୟ ବସ୍ତୁ ଧାରଣ କରେ । ପାର୍ଥିବ ଆଲୋକର ଗତି ଏକ ସେକେଣ୍ଡରେ ଲକ୍ଷ କ୍ରୋଶ, ଅପାର୍ଥିବ ମନର ଗତି ବା କିଏ କଳନା କରିବ ? ଆମ୍ଭମାନଙ୍କର ଏହି କବିଙ୍କ ଭାଷାରେ ଏଠାରେ କହୁଅଛୁଁ —

''ଆହା କିବା ଅଦ୍ଭୁତ ମନର ଗତି,
ଅଚିନ୍ତନୀୟ ଅଟେ ତାର ଶକତି,
କ୍ଷଣମାତ୍ରକେ ମନ କରେ ଦର୍ଶନ
ଏହି ଅପରିସୀମ ବିଶ୍ୱଭୁବନ ।''

ମନର ଏହି ଅବସ୍ଥା ପାଇବାକୁ ହେଲେ ଆବରଣ ସଂସ୍କାର ସର୍ବାଗ୍ରେ ଆବଶ୍ୟକ । ପ୍ରାଚୀନ ଦାର୍ଶନିକ ପଣ୍ଡିତମାନେ ମନକୁ ଏକ କୋଷ ବୋଲି ନିର୍ଦ୍ଦେଶ କରିଅଛନ୍ତି । ଯଥାର୍ଥରେ ଏହି ମନୋମୟ କୋଷ ଜଡ଼ ଆଲୋକର କାଚ-ଆବରଣ ସ୍ୱରୂପ । କାଚ-ଆବରଣକୁ ନିର୍ମଳ ନକଲେ ଆଲୋକରଶ୍ମିର ସମ୍ୟକ୍ ସଞ୍ଚାରରେ ଯେପରି ବାଧା ପଡ଼େ, ମନ ସମ୍ବନ୍ଧରେ ଠିକ୍ ସେହିପରି । ମନକୁ ଶୁଦ୍ଧ ବା ନିର୍ମଳ କରିବାକୁ ହେଲେ ଯଥାର୍ଥ ତପସ୍ୟା ଆବଶ୍ୟକ । ଅହିଂସା, ସତ୍ୟ, ଶୌଚ, ଦୟା, ଦାନ ପ୍ରଭୃତି ଏହାର ଉପକରଣ ।

ମଧୁସୂଦନ ଜୀବନବ୍ୟାପୀ ଉକ୍ତରୂପ ଯଥାର୍ଥ ତପସ୍ୟା ଦ୍ୱାରା ମନକୁ ନିର୍ମଳ କରି ସେହି ମହୀୟାନ୍ ବସ୍ତୁ ଦର୍ଶନର ଅଧିକାରୀ ହୋଇଥିଲେ । ଯେ ଏହି ଆବରଣ ପରିଷ୍କାର କରି ନପାରେ, ସେ ଏକ ସଂକୀର୍ଣ୍ଣ ଶକ୍ତି ମଧ୍ୟରେ ଆବଦ୍ଧ ଥାଇ ବିରାଟ-ଭାବ ଦର୍ଶନରୁ ବଞ୍ଚିତ ହୁଏ । କିନ୍ତୁ ସାନରୁ ବଡ଼କୁ ଲାଭ କରିବା ସମସ୍ତଙ୍କ ପକ୍ଷରେ ସ୍ୱାଭାବିକ । ସମସ୍ତେ ପ୍ରଥମ ଅବସ୍ଥାରେ ସାନକୁ ବଡ଼ ମଣିଥାନ୍ତି । କିନ୍ତୁ ମନୁଷ୍ୟ ଜ୍ଞାନପଥରେ ଯେତିକି ଅଗ୍ରସର ହେଉଥାଏ, ବଡ଼ ଧାରଣଯୋଗ୍ୟ ତାହାର ମନ ତେତିକି ସାନକୁ ଛାଡ଼ି ବଡ଼ ଆଡ଼କୁ ଧାଉଁଥାଏ । ଧର୍ମାତ୍ମାମାନଙ୍କ ଜୀବନ ଆଲୋଚନା କରି ଦେଖ, ସେମାନେ ସାକାର ଉପାସନାବାଟେ ଧ୍ୟାନଗମ୍ୟ ନିରାକାରଙ୍କ ଉପାସନା ଲାଭ କରିଅଛନ୍ତି । ଏହା ସ୍ୱଭାବସିଦ୍ଧ ଯେ ଲୋକ ପ୍ରଥମେ ଚକ୍ଷୁଃ କର୍ଣ୍ଣାଦି ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁକୁ ଦର୍ଶନାଦିଦ୍ୱାରା ଧାରଣ କରେ । ମନର ଏ ଗ୍ରାହିକା ଶକ୍ତି ବହୁଗୁଣରେ ଥିଲେହେଁ ଇନ୍ଦ୍ରିୟାଗମ୍ୟ ବସ୍ତୁମାନଙ୍କୁ ଧ୍ୟାନଦ୍ୱାରା ଧାରଣ କରିବା ସାଧାରଣ ଜନ ପକ୍ଷରେ ସମ୍ଭବ ନୁହେଁ । ସୁତରାଂ ପ୍ରାକୃତ ଲୋକ ସେହି ଇନ୍ଦ୍ରିୟଗମ୍ୟ ବସ୍ତୁକୁ ବଡ଼ କରି ମାନିଥାଏ । ଅନ୍ୟ ଦୃଷ୍ଟାନ୍ତର ପ୍ରୟୋଜନ ନାହିଁ, ପ୍ରାୟ ସମସ୍ତେ ଏହା ପ୍ରତ୍ୟକ୍ଷ କରୁଥିବେ, ଯେଉଁ ଲୋକ କେବେ ଜନ୍ମଭୂମି ଛାଡ଼ି ବିଦେଶକୁ ବାହାରି ନାହିଁ କିମ୍ବା ବିଦେଶର କୌଣସି ସମ୍ବାଦ ଜାଣେ ନାହିଁ, ସେ ନିଜ ଅଞ୍ଚଳର ନଦୀ, ମନ୍ଦିର ବା ପର୍ବତକୁ ସବୁଠାରୁ ବଡ଼ ବୋଲି ଦୃଢ଼ ଜାଣିଥାଏ । ଅନ୍ୟଲୋକ ତାହାଠାରୁ ବହୁତ ବଡ଼ ଥିବାର ଯେତେ କହିଲେ ସୁଦ୍ଧା ତାହାର ଆତ୍ମପ୍ରତ୍ୟୟ ଜନ୍ମେ ନାହିଁ । କିନ୍ତୁ ଯେତେବେଳେ ସେ କେବେ ବିଦେଶକୁ ଯାଇ ବଡ଼ ବଡ଼ ନଦୀପର୍ବତମାନ ଦେଖେ, ତେତେବେଳେ ତାହାର ସେ ଧାରଣା ଚାଲିଯାଏ ଏବଂ ଅନ୍ୟ କଥାରେ ବିଶ୍ୱାସ ଜନ୍ମେ, ଆଉ ମଧ୍ୟ ସଙ୍ଗେ ସଙ୍ଗେ ସେ ଶିଖେ, "ମୁଁ ଯାହା ଦେଖିଲି, ତାହାଠାରୁ ମଧ୍ୟ ବଡ଼ ବଡ଼ ଏ ପୃଥିବୀ ମଧ୍ୟରେ ଥାଇପାରେ ।" ଏପରି ଘଟନା ଦୈନନ୍ଦିନ ମନୁଷ୍ୟ ଜୀବନରେ କେତେ ଘଟୁଅଛି, କିନ୍ତୁ ସମସ୍ତଙ୍କ ଜୀବନରେ ଉନ୍ନତି ହେଉ ନାହିଁ । ଉନ୍ନତିର ଉପକରଣ ମଧ୍ୟ ସମସ୍ତେ ଲାଭ କରି ପାରନ୍ତି ନାହିଁ । ଭଗବାନଙ୍କ କୃପାରୁ ଯେ ଯେପରି ଉପାଦାନ (ସଂସର୍ଗ ସାହାଯ୍ୟାଦି) ଲାଭ କରେ, ତାହାର ସେହିପରି ପୁଷ୍ଟି ହୋଇଥାଏ । ଆମ୍ଭମାନଙ୍କ ମଧୁସୂଦନ ଅଙ୍କୁର ଅବସ୍ଥାରେ କିପରି ଉପାଦାନ ଲାଭ କରିଥିଲେ ଦେଖାଯାଉ ।

ଶଂସିତ ସମୟରେ ସିଂହଦ୍ୱାର ସନ୍ନିହିତ ବାବାଜୀ ମଠରେ 'ହରିଦାସ ବାବାଜୀ' ନାମକ ଜଣେ ଧର୍ମାତ୍ମା ସାଧୁ ପୁରୁଷ ଥିଲେ । ମଧୁସୂଦନ ମନ୍ଦିରକୁ ଗଲେ ଏହି ମଠକୁ ପ୍ରାୟ ଯା'ନ୍ତି । ବାବାଜୀ ଗୋଟିଏ ବାଳକର ଏପରି ସାଧୁସମାଦର ଓ ଧର୍ମଭାବ ଦେଖି ପରମ ଆନନ୍ଦିତ ହୋଇଥିଲେ, ତେଣୁ ଦେଖିଲାକ୍ଷଣି ତାହାଙ୍କୁ ପାଖରେ ବସାଇ ମସ୍ତକରେ ହାତ ବୁଲାଇ ଆଶୀର୍ବାଦ କରୁଥିଲେ ଏବଂ ମଧ୍ୟେ ମଧ୍ୟେ ସ୍ନେହାତିଶୟବଶତଃ ତାଙ୍କଠାରୁ

କଣ୍ଠସ୍ଥ ନୀତିଶ୍ଳୋକମାନ ଆଦାୟ କରି ଆପ୍ୟାୟିତ ହେଉଥିଲେ । ଆହୁରି ମଧ ସୁନ୍ଦର ବ୍ୟାଖ୍ୟାନ ଦ୍ୱାରା ସେହି ଶ୍ଳୋକାବଳୀର ଭାବ ତାହାଙ୍କ ମନରେ ସୁସ୍ପଷ୍ଟ ଅଙ୍କିତ କରି ଦେଉଥିଲେ । ଧର୍ମପ୍ରାଣ ମଧୁସୂଦନ ବାବାଜୀଙ୍କ ବ୍ୟାଖ୍ୟା ଶ୍ରବଣରେ ଧନ୍ୟଂମନ୍ୟ ହୋଇ ଅନ୍ୟାନ୍ୟ ଦିନ ନୂତନ ଶ୍ଳୋକମାନ ଘେନି ଉପସ୍ଥିତ ହେଉଥିଲେ । ବାବାଜୀ ମଧ ଏହି ପ୍ରପନ୍ନ ବାଳକଙ୍କୁ ଯୋଗ୍ୟପାତ୍ର ଜାଣି ସମୟ ସମୟରେ ଧର୍ମୋପଦେଶ ଦେବାର ସୁବିଧା ପାଇଥିଲେ । ଏହି ସଜ୍ଜନସଙ୍ଗ ପ୍ରଥମେ ମଧୁସୂଦନଙ୍କ ଜୀବନର ମାର୍ଗକୁ ଉଜ୍ଜ୍ୱଳ କରିଦେଲା ଅଥବା ମଳିନ ଆବରଣକୁ କିଞ୍ଚିତ୍ ପରିଷ୍କାର କରିଦେଲା । ମହାତ୍ମା ଶଙ୍କର କହିଛନ୍ତି, ''କ୍ଷଣମିହ ସଜ୍ଜନସଙ୍ଗତିରେକା ଭବତି ଭବାର୍ଣ୍ଣବତରଣେ ନୌକା ।'' ଏ ସଂସାରରେ ଯେ ସଜ୍ଜନସଙ୍ଗତି ଲାଭ କରେ, ସେହି ସୌଭାଗ୍ୟବାନ୍ ।

ଦ୍ୱିତୀୟରେ ମଧୁସୂଦନ ଆଉ ଏକ ହରିଦାସଙ୍କୁ ଜ୍ଞାନଦାତା* ରୂପେ ଲାଭ କଲେ । ଏହାଙ୍କର ପରିଚୟ ପୂର୍ବପ୍ରସଙ୍ଗରୁ ପାଠକମାନେ ପାଇଅଛନ୍ତି । ଦାର୍ଶନିକ ପଣ୍ଡିତମାନେ ପ୍ରାୟ ଏକେଶ୍ୱରବାଦୀ ହୋଇଥାନ୍ତି । ବରଂ ଅନେକ ସମୟରେ ଶୁଷ୍କ ତର୍କଚାତୁରୀରେ ପଡ଼ି ସେମାନେ ଲକ୍ଷ୍ୟଭ୍ରଷ୍ଟ ହୁଅନ୍ତି । ତେଣୁ ଜ୍ଞାନଗର୍ବିସମାଜରେ ନାସ୍ତିକତାର ବିଳାସ ଦେଖାଯାଏ । ଭକ୍ତମାନେ କହନ୍ତି, ''ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର ।'' ଆମ୍ଭମାନଙ୍କ ଏହି କବି ମଧ ସେହି ତାର୍କିକ ପଣ୍ଡିତଙ୍କୁ ଲକ୍ଷ୍ୟକରି ଠାଏ କହିଅଛନ୍ତି –

''ହେ ପଣ୍ଡିତ ! କ୍ଷୁଦ୍ର ତବ ବୁଦ୍ଧି-ମାନଦଣ୍ଡେ,
ବିଚାରୁଛ, ମାପିବ ହେ ଅନନ୍ତ ଅପାରେ,
ତୀକ୍ଷ୍ଣ ତର୍କ-କ୍ଷୁର-ଧାରେ ଖଣ୍ଡିଣ ଅଖଣ୍ଡେ
ମାତିବ ହେ ଜୟୋଲ୍ଲାସେ ବୌଦ୍ଧ ଅହଂକାରେ,
ଦୂରେ ଫିଙ୍ଗି ଅଭିମାନ ପ୍ରମାଣ ପ୍ରମାଦ,
ପଡ଼ ଆସି ସେ ଅନନ୍ତ-ପାଦ-ପଦ୍ମତଳେ,
ହେ ଚତୁର ସୁଧୀ ! ଛାଡ଼ି ବିଚାର-ଚାତୁରୀ
ଭୁଞ୍ଜ ମହାନନ୍ଦେ ମହାବିଶ୍ୱାସମାଧୁରୀ ।''

ମହାତ୍ମା ହରିହର ଦାସ ଏହି ଶ୍ରେଣୀର ପଣ୍ଡିତ ଥିଲେ । ସେ ହିନ୍ଦୁନାମଧାରୀ ଥିଲେ ସତ୍ୟ, କିନ୍ତୁ ଆହାର ଓ ଆଚାରରେ ତାଙ୍କର ହିନ୍ଦୁ ପରି କୌଣସି ପ୍ରକାର ବିଚାର ବା

* ଶ୍ମଶାନ କବିତାରେ – ''ମୃତ ଜ୍ଞାନଦାତା ପୁଣି ମୃତ ପରିଜନ
ନୟନ ଅଗ୍ରତେ ଯେହ୍ନେ ନାଚିଲେ ତକ୍ଷଣ'' ଏହାଙ୍କୁ ଲକ୍ଷ୍ୟ ଅଛି ।

ବିକାର ନଥିଲା । ସେ ହିନ୍ଦୁ ମଧ୍ୟରେ ହିନ୍ଦୁ, ସାହେବ ଗୋଷ୍ଠିରେ ସାହେବ ଏବଂ ବୌଦ୍ଧଗଣନାରେ ବୌଦ୍ଧ ଥିଲେ । ଦେଶ ବିଦେଶରେ ତାହାଙ୍କର ଯେପରି ସୁଖ୍ୟାତି ଥିଲା, ସାହେବ ମହଲରେ ମଧ୍ୟ ସେହିପରି ସମାଦର ଥିଲା । ତାଙ୍କରି ପ୍ରବର୍ତ୍ତନାରେ ତଦାନୀନ୍ତନ ମାଜିଷ୍ଟ୍ରେଟ୍ ମହାମତି ବକ୍ସୱଏଲ ସାହେବ ସଂସ୍କୃତାନୁରାଗୀ ହୋଇ ସେ ଭାଷାକୁ ଉତ୍ତମ ରୂପେ ଆୟତ୍ତ କରିଥିଲେ । ଏହି ମହାତ୍ମା ବହୁ ଚେଷ୍ଟାରେ ବଳରାମପୁରର ବଦାନ୍ୟ ମହାରାଜଙ୍କୁ ପ୍ରବର୍ତ୍ତାଇ ପୁରୀର ସଂସ୍କୃତ ବିଦ୍ୟାଳୟ ପ୍ରତିଷ୍ଠିତ କରାଇଥିଲେ । ଏହାକୁ ଆହୁରି ପ୍ରଶସ୍ତତର ଭିତ୍ତିରେ ସ୍ଥାପନ କରିବାକୁ ତାହାଙ୍କର ଅଭିଳାଷ ଥିଲା, କିନ୍ତୁ ଆଉ କାଳ ସହିଲା ନାହିଁ । ଯେଉଁମାନେ ଅନର୍ଗଳ ସଂସ୍କୃତ ଭାଷାରେ ଏହାଙ୍କର ଓଜସ୍ୱିନୀ ବକ୍ତୃତା ଶୁଣି ଧନ୍ୟ ହୋଇଅଛନ୍ତି, ସେମାନେ ନିଶ୍ଚୟ ଜୀବନରେ ଏକ ମହା-ବୈଦ୍ୟୁତିକ-ଶକ୍ତି-ପ୍ରବାହ ଅନୁଭବ କରିଅଛନ୍ତି । ତାହାଙ୍କ ଜୀବନର ପ୍ରଭାବ ସ୍ୱର୍ଗତ ରାଧାନାଥ ଓ ମଧୁସୂଦନ ତଥା ଅନ୍ୟାନ୍ୟ କତିପୟ ଶିଷ୍ୟଙ୍କ ଜୀବନରେ ଅଳ୍ପାଧିକ ପରିମାଣରେ ପ୍ରତିଫଳିତ ହୋଇଅଛି । ଏହାଙ୍କ ନିକଟରେ ବାଳକ ମଧୁସୂଦନ ଈଶ୍ୱରସତ୍ତା ବିଷୟରେ ପ୍ରମାଣଶାସ୍ତ୍ରରୁ ନାନା ମତବାଦ ଶ୍ରବଣ ସହ ତର୍କ କରୁଥିଲେ । 'ସାନ ମୁହଁରେ ବଡ଼ କଥା' ଦେଖି ବିସ୍ମୟାପନ୍ନ ଦାସେ ତାହାଙ୍କୁ ଅତ୍ୟଧିକ ସ୍ନେହ କରୁଥିଲେ* ଏବଂ ସ୍ୱୀୟ ଜୀବନର ପ୍ରଭା ବିସ୍ତାର କରିବା ଲାଗି ସୁଯୋଗ ଲାଭ କରିଥିଲେ । ମଧୁସୂଦନ ମଧ୍ୟ ସେହି ଜ୍ଞାନୋପଦେଷ୍ଟାଙ୍କ ପ୍ରତି ଅତୀବ ଭକ୍ତିପ୍ରବଣ ଥିଲେ, କିନ୍ତୁ ଗୁରୁଙ୍କର ନାସ୍ତିକ୍ୟଭାବ ତାହାଙ୍କ ମନରେ କିଞ୍ଚିତ୍ ଅଶ୍ରଦ୍ଧା ଜନ୍ମାଉଥିଲା । ଜ୍ଞାନ ବିଚାରରେ ସେ ହରିହରଙ୍କର ଯଥାର୍ଥ ଶିଷ୍ୟ ଥିଲେ ସତ୍ୟ, ମାତ୍ର ଭକ୍ତି ହିସାବରେ ସେ ତାଙ୍କର ଗୁରୁସ୍ଥାନୀୟ ଥିଲେ । ହରିହରଙ୍କ ଅକାଳ ମୃତ୍ୟୁ ପୂର୍ବେ ସେ ଯେଉଁ ଅପୂର୍ବ ସ୍ୱପ୍ନ ଦେଖିଥିଲେ, ସେଥିରୁ ତାହାଙ୍କ ହୃଦୟର ମହତ୍ତ୍ୱ ଏବଂ ଈଶ୍ୱରାନୁଗୃହ୍ୟତାର ପରିଚୟ ମିଳେ । ଏପରି ସଫଳ ସ୍ୱପ୍ନ ମହାତ୍ମା ଭିନ୍ନ ଅନ୍ୟ କାହାରି ପକ୍ଷରେ ସମ୍ଭାବ୍ୟ ନୁହେଁ । ମଧୁସୂଦନ ସ୍ୱପ୍ନରେ ଦେଖିଲେ, "ପଣ୍ଡିତ ହରିହର ଦାସ ଏକ ଜ୍ୱଳନ୍ତ ଦାରୁ ସ୍କନ୍ଧରେ ବଡ଼ଦାଣ୍ଡରେ ବ୍ୟାକୁଳ ହୋଇ ଦୌଡ଼ୁଛନ୍ତି ଏବଂ ଯାହାକୁ ଦେଖୁଛନ୍ତି ତାହା ଉପରକୁ ନିଆଁଖୁଣ୍ଟାକୁ ଫୋପାଡ଼ୁଛନ୍ତି- ଯେତେ ଫୋପାଡ଼ିଲେ ସୁଦ୍ଧା ତାହା କାନ୍ଧକୁ ଛାଡ଼ୁନାହିଁ – ପାଖର ଲୋକମାନେ ପୋଡ଼ି ମରୁଛନ୍ତି – ଏହିପରି ସେ ଦୌଡ଼ି ଦୌଡ଼ି ଶେଷରେ ପ୍ରାନ୍ତବର୍ତ୍ତୀ ନରେନ୍ଦ୍ର ପୁଷ୍କରିଣୀରେ ଯାଇ ନିମଗ୍ନ ହୋଇ ଶାନ୍ତିଲାଭ କଲେ ।" ଏହି ସ୍ୱପ୍ନର ଅଳ୍ପଦିନ ପରେ ପଣ୍ଡିତ ମହାଶୟ

* କଟକରେ ଅବସ୍ଥାନ କାଳରେ ଅନେକ ସମୟରେ ସେ ମଧୁସୂଦନଙ୍କୁ ଦେଖିବାଲାଗି କଟକ ଆସୁଥିଲେ ।

ସେହିପରି ଦଗ୍ଧ ହୋଇ ଅକାଳରେ ପ୍ରାଣତ୍ୟାଗ କଲେ । ବିଶ୍ୱାସୀ ମଧୁସୂଦନଙ୍କ ପ୍ରାଣରେ ନାସ୍ତିକର ଏହି ବିଷମ ପରିଣାମର ଚିତ୍ରଟି କୈଶୋର ଅବସ୍ଥାରୁ ଅତି ନିପୁଣଭାବରେ ଅଙ୍କିତ ହୋଇଗଲା । ଯଥାର୍ଥରେ ନାସ୍ତିକ ଯେଉଁ ବାଟେ ଯାଏ, ପାଖର ଲୋକଙ୍କୁ ତାହାର ନାସ୍ତିକ୍ୟ ବିଷରେ ଜର୍ଜରିତ କରିପକାଏ । ପରିଶେଷରେ ସେ ପୁଣି ମୃତ୍ୟୁଦ୍ୱାରା ଭଗବାନଙ୍କର 'କ୍ଷମାସିନ୍ଧୁ ନୀରେ' ନୀରବରେ ମଗ୍ନ ହୋଇ ଚିରଶାନ୍ତି ଭୋଗ କରେ । ମହାତ୍ମା ହରିହର ନାସ୍ତିକ ହୁଅନ୍ତୁ ବା ଆଉ ଯାହା ହୁଅନ୍ତୁ, ତାହାଙ୍କ ଉପଦିଷ୍ଟ ଜ୍ଞାନାଞ୍ଜନ ଯୋଗେ ମଧୁସୂଦନଙ୍କ ଚକ୍ଷୁ ମାର୍ଜିତ ହୋଇଥିଲା, ତମୋମୟ ପ୍ରକୋଷ୍ଠରେ କ୍ଷୀଣ ଦୀପାଲୋକ ଦେଖା ଦେଇଥିଲା । କିନ୍ତୁ ତୃତୀୟରେ ସେ ଯେଉଁ ହରିଙ୍କି ଲାଭ କଲେ, ସେଥିରେ ତାହାଙ୍କ ଜୀବନର ମାର୍ଗ ଉଜ୍ଜ୍ୱଳ– ରୂପେ ପ୍ରତିଭାତ ହୋଇଗଲା – ହୃଦୟର ଗ୍ରନ୍ଥି ଫିଟିଗଲା ଏବଂ ସମସ୍ତ ସଂଶୟ ତୁଟିଗଲା । ଏବେ ସେହି ହରିଙ୍କ କଥା ଶୁଣି ପାଠକବର୍ଗ ଧନ୍ୟ ହୁଅନ୍ତୁ । ବାଲ୍ୟକାଳରୁ ମଧୁସୂଦନଙ୍କର ସମୁଦ୍ର କୂଳରେ ଭ୍ରମଣ କରି ସୁଖ ଅନୁଭବ କରିବାର ଅଭ୍ୟାସ ଥିଲା, ଦିନେ ସ୍ୱପ୍ନରେ ଦେଖିଲେ ''ସେ ସମୁଦ୍ରକୂଳରୁ ଘରକୁ ଫେରି ଆସୁଅଛନ୍ତି, ଏମନ୍ତ ସମୟରେ ଏକ ବିରାଟ ପୁରୁଷ ଆସି ସମ୍ମୁଖରେ ଉଭା ହେଲେ ଏବଂ ତାହାଙ୍କର ଅନୁସରଣ କରିବାକୁ ସଙ୍କେତ କଲେ । ହରିଭକ୍ତ ବାଳକ ପଛେ ପଛେ ଚାଲିବାକୁ ଲାଗିଲେ । ମଧ୍ୟେ ମଧ୍ୟେ ସେ ବିରାଟ ପୁରୁଷ ମୁଖରୁ ଓଙ୍କାର ନାଦ ବିନିଃସୃତ ହେଉଥିଲା ଏବଂ ନାଦ ପଛେ ପଛେ ଚତୁର୍ଦ୍ଦିଗ ଏକ ଅପାର୍ଥିବ ଜ୍ୟୋତିରେ ଯେମ୍ନେ ଉଦ୍ଭାସିତ ହୋଇଯାଉଥିଲା ! କିୟଦ୍ଦୂର ଏହିରୂପେ ଅଗ୍ରସର ହୋଇ ସେ ଆଉ କିଛି ଦେଖିଲେ ନାହିଁ । ନଗର ସୀମାନ୍ତବର୍ତ୍ତୀ ରାମଚଣ୍ଡୀଠାରେ ସେହି ଉଭା ପୁରୁଷ କାହିଁ ଉଭେଇ ଗଲେ ।'' ଏହି ସ୍ୱପ୍ନ ଦର୍ଶନରେ ମଧୁସୂଦନଙ୍କ ମନ ଅଦ୍ଭୂତ ଭାବରେ ଆନ୍ଦୋଳିତ ହେବାକୁ ଲାଗିଲା । ସେହିଦିନଠାରୁ ସେ ବୁଝିଲେ, ଏ ଦେବ ଦେବୀ ସବୁ କିଛି ନୁହନ୍ତି – ଏସବୁ ଅସତ୍ୟ । ସତ୍ୟରୂପୀ ମହତୋମହୀୟାନ୍ ପୁରୁଷ ସ୍ୱତନ୍ତ୍ର । 'ଯୋବୈ ଭୂମା ତତ୍ ସୁଖଂ ନାଲ୍ପେ ସୁଖମସ୍ତି ।' ଏହିଦିନୁ ମଧୁସୂଦନ ସେ ବିଷମ ମୋହ ଏବଂ ଅସତ୍ୟକୁ 'ଦୂରେ ଫିଙ୍ଗି' ଏହି ମହାସତ୍ୟକୁ ହୃଦୟରେ ଧାରଣ କରିବାକୁ ଅଗ୍ରସର ହେଲେ ।

''ମହା ମହୀୟାନ୍ ତୁମ୍ଭେ, ନିଜ ମହିମାରେ
ପ୍ରତିଷ୍ଠିତ, ବିରାଜିତ ନିଖିଳ ସଂସାରେ,
ପ୍ରଶାନ୍ତ ପ୍ରସନ୍ନ ନେତ୍ରେ ରହିଛ ଅନାଇ,
ବରାଭୟ ଦେଉଅଛ ବ୍ରହ୍ମାଣ୍ଡର ସାଇଁ ।

ଅସତ୍ୟର ଅନ୍ଧକାର ନାଶି ବଜ୍ରାଲୋକେ
ଜାଳୁଛ ସତ୍ୟର ଜ୍ୟୋତି ଦ୍ୟୁଲୋକେ ଭୂଲୋକେ ।
ବଜ୍ରନାଦେ ଭାଙ୍ଗି ମୋର ମୋହ କୁସ୍ୱପନ
ସତ୍ୟର ଗାମ୍ଭୀର୍ଯ୍ୟେ ପୂର୍ଣ୍ଣ କର ପ୍ରାଣ ମନ ।''

ଏହି ସତ୍ୟନିଷ୍ଠା ସେ ଜୀବନକାଳ ମଧ୍ୟରେ କିପରି ଉଜ୍ଜ୍ୱଳଭାବରେ ଦେଖାଇଅଛନ୍ତି, ତାହା ଅନେକେ ଜାଣନ୍ତି, ଆମ୍ଭେମାନେ ମଧ୍ୟ ଯଥାସ୍ଥାନରେ ତହିଁର କିଞ୍ଚିତ୍ ସୂଚନା କରିବୁଁ । ସ୍ୱପ୍ନରେ ଓଁକାର ଦର୍ଶନ ଦିନୁ ମଧୁସୂଦନ ଓଁ କାର ମନ୍ତ୍ରରେ ଦୀକ୍ଷିତ ହେଲେ । ପ୍ରାଣଯନ୍ତ୍ର ଓଁକାରନାଦରେ ଝଙ୍କାରିତ ହେଲା । ପ୍ରତି ପତ୍ର ଛତ୍ର 'ଓଁ' ବର୍ଣ୍ଣରେ ଭୂଷିତ ହେବାକୁ ଲାଗିଲା ଏବଂ ତାଙ୍କର ପ୍ରତ୍ୟେକ କ୍ରିୟା ଓଁ କାରମୟୀ ହୋଇ ଅପୂର୍ବ ଶ୍ରୀ ଧାରଣ କଲା । ସୃଷ୍ଟି ସ୍ଥିତିପ୍ରଳୟକାରଣ ସେହି (ଅ+ଉ+ମ୍) ଓଁ ମଧୁସୂଦନଙ୍କ ହୃତ୍‌ପଦ୍ମର ମିହିର ହେଲେ ।

କଟକରେ ଅଧ୍ୟୟନ କଲାବେଳକୁ ପ୍ରାୟ ୭/୮ ବର୍ଷ ପୂର୍ବରୁ ଏ ନଗରରେ ମହର୍ଷି ଦେବେନ୍ଦ୍ରନାଥ ଠାକୁରଙ୍କ ଯତ୍ନରେ ତଦୀୟ କଚେରିଘରେ ଗୋଟିଏ ବ୍ରହ୍ମୋପାସନାର ସମାଜ ସ୍ଥାପିତ ହୋଇଥିଲା । ବ୍ରହ୍ମାନ୍ୱେଷୀ ମଧୁସୂଦନ ନିୟମିତ ରୂପେ ଏହି ସମାଜର ଉପାସନାରେ ଯୋଗ ଦେଉଥିଲେ । କିନ୍ତୁ ଏ ସମାଜରେ ସ୍ୱାଭାବିକତା ଏବଂ କାହାରି ଯଥାର୍ଥ ଧର୍ମପ୍ରାଣତା ନ ଦେଖି ତାହାଙ୍କର ଆତ୍ମା ତତ୍‌ପ୍ରତି ଆକୃଷ୍ଟ ହେଉନଥିଲା । କେବଳ ଜଣେ ସଭ୍ୟ ପ୍ରତି ତାଙ୍କର ଶ୍ରଦ୍ଧା ଜନ୍ମିଥିବାରୁ ସେ ହଠାତ୍ ଏ ସମାଜ ପରିତ୍ୟାଗ କରି ନ ଥିଲେ । ତାହାଙ୍କର ନାମ ତ୍ରୈଲୋକ୍ୟନାଥ ମୁଖୋପାଧ୍ୟାୟ । ସେ ତେତେବେଳେ ଜଣେ ପୋଲିସ୍ କର୍ମଚାରୀ ଥିଲେ । କିନ୍ତୁ ବଡ଼ ସ୍ୱାଧୀନଚେତା ଏବଂ ତେଜସ୍ୱୀ ବ୍ୟକ୍ତି ଥିଲେ । ପ୍ରଖ୍ୟାତନାମା ହଣ୍ଟର ସାହେବ ଯେତେବେଳେ ପୁରାତତ୍ତ୍ୱ ସଂଗ୍ରହକଳ୍ପେ ଓଡ଼ିଶାକୁ ଆସିଥିଲେ, ତେତେବେଳେ ସେ ଏହି ମହାଶୟଙ୍କଠାରେ ବିଶେଷ ସମ୍ଭାବନା ଦେଖି ସାହାଯ୍ୟ ଲୋଡ଼ିଥିଲେ । ଏହି ତ୍ରୈଲୋକ୍ୟନାଥ ପୁଣି ପଶ୍ଚାତ୍ ଗୋଟିଏ ପ୍ରସିଦ୍ଧ ପ୍ରଦର୍ଶନୀରେ ଯୋଗ ଦେବାପାଇଁ ଭାରତର ଜଣେ ପ୍ରତିନିଧିସ୍ୱରୂପ ବିଲାତ ଯାତ୍ରା କରି ସେଠାରେ ଆପଣାର ପ୍ରତିପତ୍ତି ପ୍ରଦର୍ଶନ କରିଥିଲେ । ମଧୁସୂଦନ ଏହି ଗୋଷ୍ଠୀରେ ଯୋଗଦେବାକୁ ବିମୁଖ ହୋଇଥିଲେ ହେଁ ତାହାଙ୍କର ଏତିକି ଉପକାର ହୋଇଥିଲା ଯେ ସେ ଏହିକାଳ ମଧ୍ୟରେ ମହର୍ଷି ଦେବେନ୍ଦ୍ରନାଥଙ୍କର ଉପନିଷଦର ଅନୁବାଦ ଓ ବ୍ୟାଖ୍ୟା ଆଲୋଚନା କରିବାର ସୁଯୋଗ ପାଇଥିଲେ । ଈଶୋପନିଷଦର ''ଈଶାବାସ୍ୟ ମିଦଂ ସର୍ବଂ ଯତ୍‌କିଞ୍ଚ

ଜଗତ୍ୟାଂ ଜଗତ୍ ତେନ ତ୍ୟକ୍ତେନଭୁଞ୍ଜୀଥାଃ ମାଗୃଧଃ କସ୍ୟଚିଦ୍ଧନଂ ।'' – ''ଯତୋବା ଇମାନି ଭୂତାନି ଜାୟନ୍ତେ ଯେନ ଜାତାନି ଜୀବନ୍ତି''– ପ୍ରଭୃତି ଶ୍ଳୋକମାନଙ୍କର ବ୍ୟାଖ୍ୟା ଅବହିତ ଚିତ୍ତରେ ପାଠ କଲାବେଳେ ମଧୁସୂଦନଙ୍କ ହୃଦୟ ପୁଲକିତ ହୋଇ ଉଠୁଥିଲା । ଏହି ଗୋଷ୍ଠୀ ପଶ୍ଚାତ୍ ମଧୁସୂଦନ ଯେଉଁ ଉତ୍କୃଷ୍ଟ ଗୋଷ୍ଠୀ ଲାଭ କଲେ, ତହିଁରେ ତାହାଙ୍କ ପ୍ରାଣର ତୁଷ୍ଟି ସମ୍ପାଦନ ହେଲା । ଏହି ସମୟରେ ବ୍ରାହ୍ମ ହରନାଥ ଭଟ୍ଟାଚାର୍ଯ୍ୟ ଦର୍ଶନଅଧ୍ୟାପକ ହୋଇ କଟକକୁ ଆସିଲେ । ତାଙ୍କଠାରୁ କେଶବଚନ୍ଦ୍ର ସେନ୍‌ଙ୍କ ବକ୍ତୃତାର କଥା ଶୁଣି ଏବଂ ସେହି ବକ୍ତୃତାମାନ ପାଠ କରି ମଧୁସୂଦନଙ୍କ ମନ ସତ୍ୟଧର୍ମ-ଗ୍ରହଣୋପଯୋଗୀ ବଳଶାଳୀ ହେଲା । ସେ ସର୍ବଦା କୁସୁମକୋମଳପ୍ରାଣ ହେଲେହେଁ ତେତେବେଳେ ବଜ୍ରଦୃଢ଼ଚିତ୍ତରେ ଚିରନ୍ତନ ସମାଜ ପ୍ରଥା ରକ୍ତମାଂସଜଡ଼ିତ ସେ ସମସ୍ତ ମୋହଅନ୍ଧକାରକୁ ଦୂରକୁ ଫିଙ୍ଗିଦେଇ ଉନ୍ମୁକ୍ତ ଭାବରେ ସତ୍ୟଶୁଦ୍ଧ ବ୍ରାହ୍ମଧର୍ମ ଗ୍ରହଣ କଲେ । ଅଧ୍ୟାପକ ହରନାଥ ମଧୁସୂଦନ ପ୍ରମୁଖ କେତେକ ଛାତ୍ରଙ୍କୁ ଘେନି ଏ ନଗରରେ ଗୋଟିଏ ନୂତନ ବ୍ରାହ୍ମସମାଜ ସ୍ଥାପନ କଲେ । କାଳକ୍ରମେ ଜଣେ ଜଣେ ଆସି ଏହି ଦଳର ପୁଷ୍ଟି ସାଧନ କଲେ । ଛାତ୍ରମାନଙ୍କର ଏପରି ଅସମ୍ଭାବନୀୟ ପରିବର୍ତ୍ତନ ଦେଖି ଅଭିଭାବକ ସମାଜରେ ଭାରି ଚହଳ ପଡ଼ିଗଲା – କିଏ ଇଂରାଜୀ ଶିକ୍ଷାର ବିଷମୟ ଫଳ; କେହି ବା ବ୍ୟକ୍ତିବିଶେଷର ପ୍ରବର୍ତ୍ତନାର ଫଳ ବୋଲି କଳ୍ପନା କରି, କେହି ''ସର୍ବେ ହୋଇବେ ଏକାକାର – ନ ଥିବ ବେଦର ବିଚାର'' ଏହି ଭବିଷ୍ୟତ ବାଣୀର ଦୋହି ଦେଇ ସଶଙ୍କ ନେତ୍ରରେ ସେ ଦୃଶ୍ୟ ଦେଖିଲେ ଏବଂ ସ୍ୱ ସ୍ୱ ସନ୍ତାନଙ୍କୁ ରକ୍ଷା କରିବା ଲାଗି ବିହିତ ଉପାୟ ଅବଲମ୍ବନ କଲେ । ସେହି ଆନ୍ଦୋଳନ ଫଳରେ ମଧ୍ୟ ସମସ୍ତେ ଏହି ସମାଜରେ ସ୍ଥାୟୀ ହୋଇ ନ ଥିଲେ । ହରନାଥଙ୍କ ପରିବର୍ତ୍ତନ ସଙ୍ଗେ ସଙ୍ଗେ ଅନେକଙ୍କର ଭାବ ପରିବର୍ତ୍ତନ ହୋଇଗଲା । ଯେଉଁମାନେ ଯଥାର୍ଥ ବ୍ରାହ୍ମ ହୋଇ ରହିଲେ, ତନ୍ମଧ୍ୟରେ ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ଏବଂ ଦୀନନାଥ ବନ୍ଦ୍ୟୋପାଧ୍ୟାୟ ପ୍ରଧାନ ଅଟନ୍ତି । ଶେଷୋକ୍ତ ଦୀନନାଥଙ୍କୁ ଅନେକେ ଜାଣିନଥିବେ । ସେ ଜଣେ ଅତି ତେଜସ୍ୱୀ ଏବଂ ସ୍ୱାଧୀନଚେତା ପୁରୁଷ ଥିଲେ । କୌଣସିଠାରେ କିଛି ଅନଭିମତ ଦେଖିଲେ ସେ ସଙ୍ଗେ ସଙ୍ଗେ ତାହାର ତୀବ୍ର ପ୍ରତିବାଦ କରୁଥିଲେ । ଉତ୍କଳଦୀପିକା ଏବଂ ଅନ୍ୟ ସାମୟିକ ପତ୍ରର ଅନେକ ଛତ୍ର ତାହାଙ୍କ ସମାଲୋଚନା–ପ୍ରବନ୍ଧରେ ପୂର୍ଣ୍ଣ ହେଉଥିଲା । ବଙ୍ଗଳା 'ବଙ୍ଗଦର୍ଶନ' ନାମକ ମାସିକ ପତ୍ରରେ ମଧ୍ୟ ସମୟ ସମୟରେ ଏ ଉତ୍କଳର କଥା ପ୍ରକାଶ କରୁଥିଲେ । ଏ ମଧ୍ୟ ସ୍ୱର୍ଗୀୟ ପ୍ୟାରୀମୋହନଙ୍କ ଅନ୍ତେ ତତ୍‌ସଂପାଦିତ 'ଉତ୍କଳପୁତ୍ର'ର ସମ୍ପାଦକ କାର୍ଯ୍ୟ

କିଛିକାଳ ନିର୍ବାହ କରିଥିଲେ ।* ପ୍ୟାରୀମୋହନଙ୍କ ସହିତ ମଧୁସୂଦନଙ୍କର କିପରି ଏକାତ୍ମଭାବ ଜନ୍ମିଥିଲା, ତାହା ପରବର୍ତ୍ତୀ କୌଣସି ପ୍ରସଙ୍ଗରେ ଜଣାଇବୁ । ତେଣୁ ଏତିକି ବୋଲାଯାଇପାରେ ଯେ ଏ ଦୁହେଁ ତେତେବେଳେ ନବ୍ୟ ବ୍ରାହ୍ମ ସମାଜର ପ୍ରାଣ ଥିଲେ । ଏହାଙ୍କ ଯୋଗେ ସେକାଳରେ ଏ ଉତ୍କଳ ଭୂମିରେ 'ଓଙ୍କାର-ଝଙ୍କାରମୟୀ' ବ୍ରହ୍ମୋପାସନାର ପ୍ରତିଷ୍ଠା ହେଲା । ଉପାସନା ନିମିତ୍ତ ଅବଶ୍ୟ ତେତେବେଳେ କୌଣସି ନିର୍ଦ୍ଦିଷ୍ଟ ମନ୍ଦିର ନଥିଲା । ଆଦି ବ୍ରାହ୍ମସମାଜର ଜଣେ ପ୍ରଧାନ ସଭ୍ୟ ଏବଂ ପୃଷ୍ଠପୋଷକ ପରଲୋକଗତ ମହାତ୍ମା ଜଗନ୍ମୋହନ ରାୟ ଏ ଅଭାବ ପୂରଣ କରାଇଥିଲେ । ଏହାଙ୍କର ନାମ ଅନେକେ ଶୁଣିଥିବେ, ତାଙ୍କ ପରି ଉଦାରଚେତା ଓ ପରୋପକାରୀ ପୁରୁଷ ଅତି ବିରଳ ଦେଖାଯାନ୍ତି । ଆଧୁନିକ ଉତ୍କଳର କେତେ କୃତୀ ବିଶିଷ୍ଟ ଆତ୍ମା ଏହାଙ୍କ ନିକଟରେ ନାନା ଭାବରେ ଉତ୍ସାହ ଏବଂ ଉପକାର ଲାଭ କରି ଧନ୍ୟ ହୋଇଅଛନ୍ତି । ତାଙ୍କରି ସବିଶେଷ ଉଦ୍ୟମରେ ତେତେବେଳେ ଗଙ୍ଗାମନ୍ଦିର ଉପରେ ଗୋଟିଏ ହର୍ମ୍ୟ ନିର୍ମିତ ହୋଇଥିଲା । ପୂର୍ବୋକ୍ତ ନବ୍ୟସମାଜର ଯୁବକଦ୍ୱୟଙ୍କ ଅନୁରୋଧରେ ଜଗନ୍ମୋହନ ଉକ୍ତ ମନ୍ଦିରଟିକୁ ଉଭୟ ସମାଜର ଉପାସନା ନିମିତ୍ତ ଛାଡ଼ି ଦେଲେ ଏବଂ ଉପାସନାର ଦିବସ ଶନିବାର ଓ ରବିବାର ନିର୍ଦ୍ଦିଷ୍ଟ କରିଦେଲେ । ତଦ୍‌ବଧି ଉକ୍ତ ମନ୍ଦିରରେ ଯଥାନିର୍ଦ୍ଦିଷ୍ଟ ଦିବସରେ ବ୍ରହ୍ମୋପାସନା ଯଥାରୀତି ହୋଇ ଆସୁଅଛି । ଏଥିରେ ମଧୁସୂଦନ ସମ୍ପାଦକ ଭାବରେ, ସଭାପତି ରୂପରେ, ଆଚାର୍ଯ୍ୟ ରୂପରେ ଅଥବା ସମାଜର ମୂର୍ତ୍ତିମାନ ଉତ୍ସାହରୂପରେ ପ୍ରାୟ ୩୫ ବର୍ଷ କାଳ ଅତି ପ୍ରଶଂସିତ ଭାବରେ କାର୍ଯ୍ୟ ନିର୍ବାହ କରିଗଲେ, ଧର୍ମମାର୍ଗର ବା ଈଶ୍ୱରସେବାର ଏକ ନବୀନ ଓ ଉଜ୍ଜ୍ୱଳ ଆଦର୍ଶ ପ୍ରଦର୍ଶନ କରିଗଲେ । ଏହି ନବୀନତା ଦେଖାଇବାକୁ ଯାଇ ତାହାଙ୍କୁ ଏଥି ମଧ୍ୟରେ ଶତ ଶତ ବିଘ୍ନ ପ୍ରତିବନ୍ଧକ ଅକାତରେ ଅତିକ୍ରମ କରିବାକୁ ପଡ଼ିଅଛି ! ସମାଜର କେତେ ଯେ କଠୋର କଶାଘାତ ସହିବାକୁ ହୋଇଅଛି, ତାହାର ଇୟତ୍ତା ନାହିଁ । ଜାଣୁ ଜାଣୁ କେତେ ଅଭାବ ଅଙ୍ଗହାନି ମଧ୍ୟ ଅନୁଭବ ଓ ଅଙ୍ଗୀକାର କରିବାକୁ ପଡ଼ିଅଛି, କେତେଆଡୁ କେତେ ଆକ୍ରମଣ ଓ ବଳପ୍ରୟୋଗକୁ ମଧ୍ୟ ସୁଯୋଗ ମନେ କରିବାକୁ ହୋଇଅଛି । କିନ୍ତୁ ଏ ସମସ୍ତ ବଳ ତୁଳନାରେ ମହାପୁରୁଷର ମନ ଆହୁରି ବଳଶାଳୀ । ତେଣୁ ମହାତ୍ମାମାନେ ଏକ ମହାବଳର ଆଶ୍ରୟରେ ସେ ସମସ୍ତକୁ ତୃଣବତ୍ ଅକିଞ୍ଚିତ୍‌କର ଜ୍ଞାନ କରନ୍ତି । ସମାଜ ମଧ୍ୟରେ କିଛି ନୂତନ ପରିବର୍ତ୍ତନ ବା ସଂସ୍କାର ଅଥବା ପ୍ରାଚୀନତାର ଉଚ୍ଛେଦ ଦେଖା ଗଲେ ରକ୍ଷଣଶୀଳ

* ପୁଲିସ୍ ଇନସ୍ପେକ୍ଟର ଶ୍ରୀ ନାରାୟଣ ବନ୍ଦ୍ୟୋପାଧ୍ୟାୟ ଏବଂ ସ୍କୁଲ୍ ସବ୍‌ଇନସ୍ପେକ୍ଟର ଶ୍ରୀ ଯୋଗୀନ୍ଦ୍ର ବନ୍ଦ୍ୟୋପାଧ୍ୟାୟ ଏହାଙ୍କର ଦୁଇ ସନ୍ତାନ ।

ଲୋକେ ହଠାତ୍ ଯେପରି ମାତି ଉଠିଥାନ୍ତି, ବ୍ରାହ୍ମ ସମାଜର ଅଭ୍ୟୁଦୟରେ ମଧ୍ୟ ସେହିପରି ମାତି ଉଠିଥିଲେ । କିଏ କେତେ ଭାବରେ ନବ ଧର୍ମ ଓ ଧର୍ମିଙ୍କର ନିନ୍ଦା ରଟନା କରିବାକୁ ଲାଗିଲେ । ଧର୍ମୋପଦେଶ ବା ବ୍ୟାଖ୍ୟାନ କାଳରେ କେହି କୁତ୍ସାବ୍ୟଞ୍ଜକ ବାକ୍ପ୍ରୟୋଗ ଦ୍ୱାରା, ବକ୍ତୃତା କାଳରେ କେହି ବା ବିରୋଧିଭାବାପନ୍ନ ବକ୍ତୃତା ଦ୍ୱାରା ବକ୍ତାଙ୍କର ଉତ୍ସାହଭଙ୍ଗ କରୁଥିଲେ । କେବଳ ତେତିକି ନୁହେଁ । ନଗର-ସଂକୀର୍ତ୍ତନରେ କେହି କେହି ନିଷ୍କର୍ମା ମତ୍ତ ଯୁବକ ପଥ ମଧ୍ୟରେ ନାନା ବ୍ୟଙ୍ଗ ବିରୂପ ସହ କୁତ୍ସାତ୍ମକ କୀର୍ତ୍ତନ କରି ଯାଉଥିବାର ମଧ୍ୟ ଶୁଣାଯାଇଅଛି । ଏହା ମଧ୍ୟ ଶୁଣା ଯାଇଅଛି ଯେ ବ୍ରାହ୍ମମନ୍ଦିରରେ ଉପାସନା କାଳରେ ସଭ୍ୟମାନଙ୍କର ଚକ୍ଷୁ ମହାଭାବରେ ନିମୀଳିତ ଥିବାବେଳେ ଦୁଷ୍ଟ ଯୁବକମାନେ ସେ ଘରେ ପଶି ଲାମ୍ପର ଚେମିଣି କାଢ଼ି ନେଇ ତାହାକୁ ଘୋର ଅନ୍ଧକାରରେ ନିକ୍ଷିପ୍ତ କରୁଥିଲେ । ମଧ୍ୟଭାଗରେ ମଧ୍ୟ ଉତ୍କଳ ବ୍ରାହ୍ମସମାଜର ପ୍ରବର୍ତ୍ତକ ଏହି ମଧୁସୂଦନଙ୍କ ପ୍ରତି ଚାରି ଆଡୁ ବାଗ୍‌ବାଣ ବୃଷ୍ଟି ହୋଇଥିଲା । ଅନେକେ ତାହାଙ୍କୁ ବାଣବର୍ଷଣରେ ଉଡ଼ାଇ ଦେବାକୁ ବସିଥିଲେ । ଧର୍ମଧ୍ୱଂସୀ, ଦେଶଦ୍ରୋହୀ ଓ ନାସ୍ତିକ ବୋଲି କାହା ମୁଖରୁ ତାହାଙ୍କର କେତେ ବିଶେଷଣ ବାହାରିଲା । ତତ୍କାଳୀନ ରାଜପୁରୁଷଙ୍କ ନିକଟରେ ମଧ୍ୟ ଏହି ବ୍ୟବହାର ବିଜ୍ଞାପିତ ହୋଇଥିଲା । କିନ୍ତୁ ଏ ସମସ୍ତ ଭୟ ଭ୍ରାନ୍ତି ସତ୍ତ୍ୱେ ମଧୁସୂଦନ ଜୟୀ ହୋଇଅଛନ୍ତି ଏବଂ ସେ ସମସ୍ତ ଧୀର ଗମ୍ଭୀର ଭାବରେ ସହି ଆର୍ଯ୍ୟର୍ଷିସେବିତ ସେହି ମହାସତ୍ୟକୁ ସଯତ୍ନରେ ପାଳନ କରି ଆସିଅଛନ୍ତି । ଏହାହିଁ ତାହାଙ୍କର ମହାପ୍ରାଣର ମହାପରୀକ୍ଷା ।

## ୩

## କର୍ମଜୀବନ

ଏଫ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ମଧୁସୂଦନ ପୁରୀ ଜିଲ୍ଲା ସ୍କୁଲର ଅସ୍ଥାୟୀ ତୃତୀୟ ଶିକ୍ଷକରୂପେ ନିଯୁକ୍ତ ହୋଇ ଗଲେ, ମାତ୍ର ସେ କର୍ମରେ ଯୋଗଦାନ କରିବା ପୂର୍ବରୁ ତଦାନୀନ୍ତନ ଇନସ୍ପେକ୍ଟର ମାର୍ଟିନ ସାହେବ (R. L. Martin) ଅନ୍ୟ ଜଣଙ୍କୁ ଉକ୍ତ ପଦରେ ବଙ୍ଗ ଦେଶରୁ ନିଯୁକ୍ତ କରି ପଠାଇଲେ । ଏଥିରେ ସେ ଭଗ୍ନମନୋରଥ ହୋଇ ଫେରି ଆସିଲେ । କର୍ମ-ଜୀବନର ସର୍ବପ୍ରଥମେ ମଧୁସୂଦନଙ୍କର ମନରେ ଏ ଯେଉଁ ଗୁରୁ ଆଘାତ ହେଲା, ତାହା ତାଙ୍କ ବ୍ୟତୀତ ଆଉ ଜଣେ ବନ୍ଧୁ ହୃଦୟଙ୍ଗମ କରିଥିଲେ । ସେ କବିବର ରାଧାନାଥ । ତେତେବେଳକୁ ସେ ବାଲେଶ୍ୱର ଜିଲ୍ଲାର ଡେପୁଟୀ ଇନସ୍ପେକ୍ଟର ହୋଇଥିଲେ । ଏ ଦୁଃଖ ତାହାଙ୍କ ମନରେ ଏପରି ଜାଗରୁକ ଥିଲା ଯେ ମାର୍ଟିନ ସାହେବ

ଯେତେବେଳେ କଲିକତାରୁ ଓଡ଼ିଶା ଗ୍ରସ୍ତରେ ଆସିଲେ, ତେବେବେଳେ ରାଧାନାଥ ବାବୁ ବାଲେଶ୍ୱରଠାରେ କଥାପ୍ରସଙ୍ଗରେ ମଧୁବାବୁଙ୍କ କଥା କହି ଏହି ଭାବରେ ନିଜ ଅଭିମତ ପ୍ରକାଶ କଲେ ଯେ "ଆପଣ ପୁରୀ ନିୟୋଗରେ ମଧୁସୂଦନ ରାଓଙ୍କ ପରି ଲୋକଙ୍କୁ ହତାଶ କଲେ, ଏହା ଶୋଭନୀୟ ହେଲାନାହିଁ । ସେ ଏଫ୍.ଏ. ପାସ କରିଥିଲେହେଁ ଓଡ଼ିଶାରେ ତାଙ୍କ ପରି ଯୋଗ୍ୟ ଲୋକ ବଡ଼ ବିରଳ । ଅନେକ ବି.ଏ. ଉପାଧିଧାରିଙ୍କଠାରୁ ତାଙ୍କର ଯୋଗ୍ୟତା ଅଧିକ ବୋଲି ମୁଁ ମନେ କରେଁ । ଆପଣଙ୍କର ସର୍ବାଗ୍ରେ ତାଙ୍କୁ ନିଯୁକ୍ତ କରିବା ଉଚିତ୍ ଥିଲା ।" ମାର୍ଟିନ୍ ସାହେବ ଏ ଘଟନାରେ ଅପାତତଃ କିଞ୍ଚିତ୍ ଅପ୍ରତିଭ ହୋଇ 'ମଧୁସୂଦନଙ୍କୁ କିପରି ଯୋଗ୍ୟ କର୍ମରେ ନିଯୁକ୍ତ କରିବେ' ଏହି କଥା ଭାବି କଟକରେ ଉପସ୍ଥିତ ହେଲେ । ତେତେବେଳେ କଟକ ହାଇସ୍କୁଲରେ ସାରଦା ପ୍ରସାଦ ସାନ୍ୟାଲ୍ ନାମକ ଜଣେ କ୍ଷିପ୍ତ ବା ବିକୃତମସ୍ତିଷ୍କ ବ୍ୟକ୍ତି ଅତିରିକ୍ତ ଶିକ୍ଷକ ଥିଲେ । ମାର୍ଟିନ୍ ସାହେବ ତାଙ୍କୁ ପଦଚ୍ୟୁତ କରି ମଧୁବାବୁଙ୍କୁ ଟ ୭୫/- ବେତନରେ ସେହି ପଦରେ ନିଯୁକ୍ତ କରିବାର ପ୍ରସ୍ତାବ ପଠାଇଲେ । ମାତ୍ର ଏଠାରେ ମଧ ମଧୁସୂଦନଙ୍କର ସେହି ଦଶା ହେଲା । ପଛେ ପଛେ ସେ ପଦଟି ସ୍କୁଲରୁ ଉଠି ଯିବାର ପ୍ରସ୍ତାବ ଆସିଲା । ସାହେବ ଅନ୍ୟୋପାୟ ନ ଦେଖି ଯିବା ପୂର୍ବରୁ ଯାଜପୁରର ମଧ-ଇଂରାଜୀ ସ୍କୁଲ୍‌ର ପ୍ରଧାନ ଶିକ୍ଷକ ପଦ ଶୂନ୍ୟ ହେବାର ଶୁଣିବା ମାତ୍ରେ ତାହାଙ୍କୁ ମାସିକ ୪୫ ଟଙ୍କା ବେତନରେ ଉକ୍ତ ପଦରେ ନିଯୁକ୍ତ କରି ଗଲେ । ପବିତ୍ର କର୍ମକ୍ଷେତ୍ରରେ ପୁଣ୍ୟାତ୍ମା ମଧୁସୂଦନଙ୍କର ଏହି ପ୍ରଥମ ପ୍ରବେଶ । ଉତ୍କଳରେ ଆଦିବ୍ରାହ୍ମଣପଦାର୍ପଣପୂତ, 'ପୂଣ୍ୟା ପୟସ୍ୱିନୀ ବୈତରଣୀ'– ସ୍ରୋତଧୌତ, ମହାକ୍ରତୁସୁସଂସ୍କୃତ, ଦୁରନ୍ତ ପରିପନ୍ଥିନିର୍ମଥିତ, ବିରୋଧୀ ଧର୍ମସଂଘର୍ଷ-ସମନ୍ୱିତ ଉତ୍କଳର ଆଦ୍ୟନଗରୀ ଏହି ଯାଜପୁର ତାହାଙ୍କ କର୍ମଜୀବନର ଆଦ୍ୟରୁ ଆଦର୍ଶ ହେଲା । ବୌଦ୍ଧକେନ୍ଦ୍ରସ୍ଥଳୀ ପୁରୀ ଯାହାଙ୍କ ଆବିର୍ଭାବକୁ ସମ୍ଭାବିତ କରିଥିଲା, ଶୈଶବରେ ସମୁନ୍ନତ ଜଗନ୍ନାଥମନ୍ଦିର ଯାହାଙ୍କ ହୃଦୟକୁ ଉନ୍ନତ କରିଥିଲା, ନବୀନ ଯୌବନରେ ପବିତ୍ର ବିରଜା-ପୀଠ ତାହାଙ୍କ ହୃଦୟକୁ ଯେ ବିରଜସ୍କା (ରଜୋବିହୀନ) କରିବ, ସେଥିରେ ଆଉ ସନ୍ଦେହ କ'ଣ ? ୧୮ ବର୍ଷ ବୟସରେ ମଧୁସୂଦନ ଏଠାରେ ପ୍ରଥମେ ସସ୍ତ୍ରୀକ ଅବସ୍ଥାନ କଲେ । ଏହିଠାରେ ତାଙ୍କର ଜୀବନର ସୁଚିର ଅନ୍ତରଙ୍ଗ ବନ୍ଧୁ ଉତ୍କଳଭକ୍ତ ଶ୍ରୀ ଫକୀରମୋହନ ସେନାପତିଙ୍କ ସହିତ ପ୍ରଥମ ପରିଚୟ ଓ ପ୍ରଣୟ ହେଲା ।

ସେ ଯାଜପୁରଠାରେ କିପରି କାର୍ଯ୍ୟ କରିଥିଲେ, ସେ ସବୁର ବିଶେଷ ଘଟନା ଏହିକ୍ଷଣି ପ୍ରକାଶ କରିବାକୁ ଅକ୍ଷମ । ତେବେ କାର୍ଯ୍ୟାରମ୍ଭ ସମୟର କଥା ତାଙ୍କ ମୁଖରୁ ପ୍ରସଙ୍ଗକ୍ରମେ ଯେତିକି ଶୁଣିଅଛି, ତାହା କେବଳ ପାଠକମାନଙ୍କ କୌତୂହଳର ଉପଶମ

ନିମିତ୍ତ ପ୍ରକାଶ କରୁଅଛି – ''ମୁଁ ଯେତେବେଳେ ଯାଜପୁର ସ୍କୁଲ୍‌କୁ ଗଲି, ତେତେବେଳେ ଦେଖିଲି ଯେ ମୋହଠାରୁ ବଡ଼ ବଡ଼ ପିଲାମାନେ ସେଠାରେ ପଢୁଛନ୍ତି । ସେମାନେ ମୋତେ ଅଳ୍ପବୟସ୍କ ଓ ଖର୍ବକାୟ ଦେଖି ପ୍ରଥମେ ପ୍ରଥମେ ଅଶ୍ରଦ୍ଧା ପ୍ରକାଶ କରୁଥିଲେ ଏବଂ ମୋତେ ଦେଖିବାପାଇଁ ନିର୍ଭୟରେ ଆସି ମୋହ ପାଖରେ ରୁଣ୍ଡ ହେଉଥିଲେ । କିନ୍ତୁ ଯେତେବେଳେ ମୁଁ ଗୋଟାଏ ପାଟି କରିଦିଏଁ, ତତ୍‌କ୍ଷଣାତ୍ କେ କାହିଁ ଲଣ୍ଡଭଣ୍ଡ ହୋଇ ପଳାଇ ଯାଇ ନିସ୍ତବ୍ଧ ହୋଇଯାନ୍ତି । ଶ୍ରେଣୀରେ ଯାଇଁ ଦେଖେଁ, ସମସ୍ତେ ଚିତ୍ରାର୍ପିତ ପରି ରହିଅଛନ୍ତି ।'' ଏକଥା କେବଳ ଯାଜପୁରରେ କାହିଁକି, ତାହାଙ୍କ ଜୀବନରେ ସର୍ବତ୍ର ଏହା ଦେଖା ଯାଇଅଛି । ଯେତେବେଳେ ସେ ଗୋଟାଏ ଚିତ୍କାର କରନ୍ତି, ତେତେବେଳେ କି ଛାତ୍ର କି ଭୃତ୍ୟ ସମସ୍ତେ ମୃଗେନ୍ଦ୍ରନାଦରେ ଅରଣ୍ୟବାସୀ ଅନ୍ୟାନ୍ୟ ସମସ୍ତ ମୃଗ ସ୍ତବ୍ଧ ଓ ସାବଧାନ ହୋଇଗଲା ପରି ସ୍ତବ୍ଧଭାବ ଅବଲମ୍ବନ କରନ୍ତି । ପରୋକ୍ଷରେ ସୁଦ୍ଧା ତାହା ଯଥେଷ୍ଟ କାର୍ଯ୍ୟ କରେ । ଯେଉଁ ଶିକ୍ଷକଙ୍କୁ ଏତେ ଭୟ ଓ ସମ୍ମାନ, ତାହାଙ୍କ ସମୀପରେ ଛାତ୍ରଗଣଙ୍କର କୌଣସିପ୍ରକାର ମନ୍ଦାଚରଣ ବା ଅସଦ୍‌ବୃତ୍ତି ସମ୍ଭବେ କି ? ଯାଜପୁରରେ ପ୍ରାୟ ଦେଢ଼ବର୍ଷ କାର୍ଯ୍ୟ କରିଅଛନ୍ତି, ଏହି ସମୟରେ ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ର ହେଡ୍‌ମାଷ୍ଟର ପଦ ଶୂନ୍ୟ ହେଲା । ବାଲେଶ୍ୱର ଜିଲ୍ଲା ସମିତିର ସଭାପତି ଉତ୍କଳବନ୍ଧୁ ବୀମସ୍ ସାହେବ ଦ୍ୱିତୀୟ ଶିକ୍ଷକ ଉମାପ୍ରସାଦ ଦେଙ୍କୁ (ଯେ ପୁରୀ ଓ କଟକର ଡେପୁଟି ଇନସ୍ପେକ୍ଟର ହୋଇଥିଲେ) ଉକ୍ତ ପଦରେ ନିଯୁକ୍ତ କରି ମଧୁସୂଦନଙ୍କୁ ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ କରିନେଲେ । ଏହି ସରକାରୀ କର୍ମରେ ମଧ୍ୟ ଯୋଗ ନ ଦେଉଣୁ ପୂର୍ବବତ୍ (ତୃତୀୟ) ବିଘ୍ନ ଉପସ୍ଥିତ ହେଲା । ତତ୍‌କାଳୀନ ଇନ୍‌ସ୍ପେକ୍ଟର ହପ୍‌କୀନ ସାହେବ ଏ ନିଯୋଗରେ ଡ଼ିଷ୍ଟ୍ରିକ୍ଟ କମିଟୀର ଅନଧିକାର ଚର୍ଚ୍ଚାର ଘୋର ପ୍ରତିବାଦ ଆରମ୍ଭ କଲେ । ଏସବୁ ବିସଂବାଦ ଦେଖି ସାଧୁ ମଧୁସୂଦନ ଫେରି ଆସିବାକୁ ବସିଥିଲେ, ମାତ୍ର ସୌଭାଗ୍ୟ କ୍ରମେ ବିମ୍‌ସ ସାହେବ ତେତେବେଳେ ଅସ୍ଥାୟୀ କମିଶନର ହୋଇ ଆସିବାରୁ ସେ ଅସୁବିଧା ଦୂରୀଭୂତ ହୋଇଗଲା । ପ୍ରଶଂସିତ ସାହେବ ହଠାତ୍ କଟକଠାରୁ ପ୍ରିୟବନ୍ଧୁ ବାଲେଶ୍ୱର ଡ଼େପୁଟୀ ଇନ୍‌ସ୍ପେକ୍ଟର ରାଧାନାଥ ବାବୁଙ୍କୁ ନିମ୍ନୋକ୍ତଭାବରେ ତାର-ସମ୍ବାଦ ଦେଇ ସ୍ୱମତକୁ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ଅନୁମୋଦିତ କରାଇନେଲେ – "Let Madhusudan stay where he is". ଏହିରୂପେ ମଧୁସୂଦନ ଉପସ୍ଥିତ ବିଘ୍ନମାନ ଅତିକ୍ରମ କରି ୧୮୭୩ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସ ୨୯ ତାରିଖରେ ସରକାରୀ କର୍ମରେ ପ୍ରଥମ ପ୍ରବେଶ କଲେ ।

ବାଲେଶ୍ୱର ନଗରରେ ଯଥାର୍ଥ ମଣିକାଞ୍ଚନର ଯୋଗ ହେଲା । ମଧୁସୂଦନ, ରାଧାନାଥ ଓ ଫକୀରମୋହନଙ୍କ ସଙ୍ଗ ଲାଭ କରି ମାତୃଭୂମି ଓ ମାତୃଭାଷା ପ୍ରତି ଅନୁରାଗୀ

ହେଲେ । ଏହିଠାରେ ଯଥାର୍ଥ ସାହିତ୍ୟଚର୍ଚ୍ଚାର ଆରମ୍ଭ ହେଲା । ତେତେବେଳେ ଅବଶ୍ୟ କୌଣସି ପ୍ରକାଶିତ ଓଡ଼ିଆ ପୁସ୍ତକ ନଥିଲା ବୋଲି ଏଥିପୂର୍ବେ ବୋଲା ଯାଇଅଛି । ସ୍ୱର୍ଗୀୟ ଦାମୋଦର ପ୍ରସାଦ ଦାସଙ୍କ ପୁସ୍ତକାଳୟରୁ ବଙ୍ଗଳା ପୁସ୍ତକମାନ ଏବଂ ତାଳପତ୍ର ପୋଥିରୁ ରସକଲ୍ଲୋଳାଦି ପ୍ରାଚୀନ ଓଡ଼ିଆ କାବ୍ୟାଦି ଆଲୋଚନା କରି ସେମାନେ ଓଡ଼ିଆରେ ନୂତନ ପାଠ୍ୟପୁସ୍ତକମାନ ରଚନା କରିବାକୁ ମନ ବଳାଇଲେ । କୁମାର ବୈକୁଣ୍ଠନାଥ ଦେ (ବର୍ତ୍ତମାନ ମହାରାଜା) ଏ ଦଳରେ ପ୍ରକାଶକ ଓ ଉତ୍ସାହଦାତା ରୂପେ ମିଳିବାରୁ ସେ ଇଚ୍ଛା ବଳବତୀ ହୋଇ କାର୍ଯ୍ୟତଃ ପ୍ରକଟିତ ହେଲା । ଏହାର ପ୍ରାୟ ପାଞ୍ଚବର୍ଷ ପୂର୍ବରୁ ଜ୍ୟେଷ୍ଠ ଫକୀରମୋହନ ମାତୃଭାଷାର ଉନ୍ନତିକଳ୍ପେ କେତେକ ବନ୍ଧୁମାନଙ୍କ ସାହାଯ୍ୟରେ ଗୋଟିଏ ମୁଦ୍ରାଯନ୍ତ୍ର ସ୍ଥାପନ କରାଇ ସେଥିରୁ ବୋଧଦାୟିନୀ ଓ ସମ୍ବାଦବାହିକା ପତ୍ରିକା ପ୍ରକାଶ କରୁଥିଲେ ଏବଂ ନୂତନ ପାଠ୍ୟପୁସ୍ତକ ରଚନାର ମଧ୍ୟ ସୂତ୍ରପାତ କରିଥିଲେ । ତାଙ୍କ ପଛେ ପଛେ ବୈକୁଣ୍ଠନାଥଙ୍କ ନବପ୍ରତିଷ୍ଠିତ ଯନ୍ତ୍ରାଳୟରୁ ରାଧାନାଥ ଓ ମଧୁସୂଦନଙ୍କୁ ଘେନି ନୂତନ ନୂତନ ପୁସ୍ତକମାନ ପ୍ରକାଶିତ ହେବାର ଆୟୋଜନ ହେଲା । ଏହି ଦୁଇ ବନ୍ଧୁଙ୍କ ଯତ୍ନରେ ଉକ୍ତ ଯନ୍ତ୍ରାଳୟରୁ 'ଉତ୍କଳଦର୍ପଣ' ନାମକ ଯେଉଁ ମାସିକ ପତ୍ରିକା ପ୍ରକାଶିତ ହେଲା, ବିଷୟଗୌରବରେ ଏପର୍ଯ୍ୟନ୍ତ କୌଣସି ସାହିତ୍ୟିକ ପତ୍ରିକା ତାହାର ସ୍ଥାନ ପୂରଣ କରିନାହିଁ । ଏହି ଦୁଇଜଣ ତାହାର ପ୍ରଧାନ ନିୟମିତ ଲେଖକ ଥିଲେ ଏବଂ ଉଭୟଙ୍କର ପ୍ରଥମ ଲେଖା ଏଥିରେ ଦେଖା ଦେଇଥିଲା । ଦୃଷ୍ଟାନ୍ତସ୍ୱରୂପ ରାଧାନାଥଙ୍କର ଇଟାଲିୟ ଯୁବା, ବିବେକୀ ପ୍ରଭୃତି ଗଦ୍ୟରଚନା ଓ ମେଘଦୂତର ପଦ୍ୟାନୁବାଦ ଏବଂ ମଧୁସୂଦନଙ୍କର 'ପ୍ରଣୟର ଅଦ୍ଭୁତ ପରିଣାମ' ଉପନ୍ୟାସ ଓ ଚନ୍ଦ୍ରତାରା, ଉଲ୍‌କାପିଣ୍ଡ, ସୂର୍ଯ୍ୟ, ଆଗ୍ନେୟଗିରି ପ୍ରଭୃତି ପ୍ରବନ୍ଧ ଏବଂ ନିଶୀଥଚିନ୍ତା, ଶ୍ମଶାନ ପ୍ରଭୃତି କବିତା, ରଘୁବଂଶର ଅନୁବାଦ (ଅଯୋଧ୍ୟା ପ୍ରତ୍ୟାଗମନ) ଏଥିରେ ସର୍ବପ୍ରଥମେ ପ୍ରତିଫଳିତ ହୋଇଥିଲା । ତପରେ ଏହି ସବୁ କବିତା ଓ ପ୍ରବନ୍ଧମାନଙ୍କୁ ପ୍ରଧାନ ଅଂଶ ଧରି କବିତାବଳୀ ଓ ପ୍ରବନ୍ଧମାଳା ପ୍ରକାଶିତ ହୋଇଥିଲା । ଏଥିମଧ୍ୟରୁ 'ଶ୍ମଶାନ' କବିତାଟି ମଧୁସୂଦନଙ୍କର ପ୍ରଥମ ଲେଖା ବୋଲି ଅନୁମାନ ହୁଏ । ଅନୁମାନର ପ୍ରଧାନ କାରଣ ଏହି ଯେ, ଜନନୀଙ୍କ ସ୍ୱର୍ଗାରୋହଣ ଉତ୍ତାରେ ସେ ମଧ୍ୟେ ମଧ୍ୟେ ପୁରୀ ସ୍ୱର୍ଗଦ୍ୱାର ଶ୍ମଶାନକୁ ଭ୍ରମଣ କରିବାକୁ ଯାଉଥିଲେ । ସେ ଶ୍ମଶାନ ଦର୍ଶନରେ ମୃତ ଜନନୀ ଓ ଭଗିନୀ ପ୍ରଭୃତି ତାହାଙ୍କ ସ୍ମୃତିପଥାରୂଢ଼ ହେଉଥିଲେ । ବାଲ୍ୟକାଳରୁ ଏହି ଭାବୋଚ୍ଛ୍ୱାସ କବିଙ୍କ ହୃଦୟରେ ବଦ୍ଧମୂଳ ହୋଇଥିଲା । ପରେ ସାମୟିକ ଉତ୍ତେଜନା ପାଇ ତାହା କବିତା ଆକାରରେ ପ୍ରକାଶିତ ହେଲା । ଆଉ ମଧ୍ୟ ଏହି ଲେଖା ଦେଖିଲେ ତାହା କବିଙ୍କର ପ୍ରଥମ ଉଦ୍ୟମ ବୋଲି ଜଣାଯାଏ । ନିମ୍ନୋଦ୍ଧୃତ କେତୋଟି ପଂକ୍ତିରୁ ପାଠକମାନେ ତାହା ବିଚାର କରି ଦେଖନ୍ତୁ —

"ଭ୍ରମୁ ଭ୍ରମୁ ଏକସ୍ଥାନେ ହେଲି ଉପନୀତ,
ଭୀଷଣ ଶ୍ମଶାନ ଯହିଁ ଅଟେ ବିରାଜିତ ।
ଅସ୍ଥିମାଳା ନରମୁଣ୍ଡେ ଧବଳିତ ଦେଶ,
ଭସ୍ମରାଶି ଚିତାନଳେ ବିକଟ ବିଶେଷ ।
ଭୀମବାଦେ ଚଉପାଶେ ବେଢ଼ି ଶିବାଗଣ
କ୍ରୂରହର୍ଷେ ଶବରାଶି କରନ୍ତି ଭକ୍ଷଣ ।
ସ୍ୱର୍ଗୀୟ ଆନନଶିରୀ ମୃତ ମାତାଙ୍କର,
ନବୀନ କୁସୁମପ୍ରଭା ମୃତ ଭଗିନୀର,
ମୃତ ଜ୍ଞାନଦାତା ପୁଣି ମୃତ ପରିଜନ
ନୟନ ଅଗ୍ରତେ ଯେହ୍ନେ ନାଚିଲେ ତକ୍ଷଣ ।"

ସେ ଯାହାହେଉ ବାଲେଶ୍ୱରଠାରେ ତାହାଙ୍କର ଯଥାର୍ଥ ବିଦ୍ୟାଚର୍ଚ୍ଚା ଓ ସାହିତ୍ୟ-ସେବାର ମୂଳପତ୍ତନ ହୋଇଗଲା । ଏହିଠାରେ ଥାଇ ସେ ସୁଲେଖକର ପ୍ରତିଷ୍ଠା ଲାଭ କରିଥିଲେ । ବାଲେଶ୍ୱର ଜିଲ୍ଲା ସ୍କୁଲ୍‌ରେ ପ୍ରାୟ ଦୁଇବର୍ଷ କାର୍ଯ୍ୟ କରିଅଛନ୍ତି, ଏମନ୍ତ ସମୟରେ ମାର୍ଟିନ ସାହେବଙ୍କ ପ୍ରସ୍ତାବିତ କଟକ ହାଇସ୍କୁଲ୍‌ର ପ୍ରୋକ୍ତ ଅତିରିକ୍ତ ପଦ ପୁନଃ-ସ୍ଥାପିତ ହେବାରୁ ମଧୁବାବୁ ଉକ୍ତ ପଦରେ ମାସିକ ୭୫ ଟଙ୍କା ବେତନରେ କଟକକୁ ଆସିଲେ । ବାଲେଶ୍ୱରରୁ ଫେରିଲା ବେଳକୁ ସେ ଏକ କନ୍ୟାରତ୍ନ ଲାଭ କରିଥିଲେ । ଖ୍ରୀଷ୍ଟୀୟ ୧୮୭୪ ଅବ୍ଦର ଜ୍ୟେଷ୍ଠ ମାସରେ ତାଙ୍କର ଜ୍ୟେଷ୍ଠା କନ୍ୟା ଶ୍ରୀମତୀ ବାସନ୍ତୀ ଦେବୀ (ବର୍ତ୍ତମାନ ବଙ୍ଗର ସୁଲେଖକ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାରଙ୍କ ପତ୍ନୀ) ବାଲେଶ୍ୱର ବାସଗୃହରେ ଭୂମିଷ୍ଠ ହୋଇଥିଲେ । ଏହାଙ୍କ ବ୍ୟତୀତ ଅନ୍ୟ ସମସ୍ତ ସନ୍ତାନ କଟକରେ ଜନ୍ମଗ୍ରହଣ କରିଅଛନ୍ତି । ଏହି ୭୫ ସାଲଠାରୁ ଚରମକାଳ ପର୍ଯ୍ୟନ୍ତ ମଧୁସୂଦନ କଟକରେ ସ୍ଥାୟୀ ଅଧିବାସ ସ୍ଥାପନ କଲେ । ପ୍ରଥମ ବର୍ଷ ସେ ହାଇସ୍କୁଲ୍‌ରେ ଅତିରିକ୍ତ ଶିକ୍ଷକ ଥାଇ ପ୍ରଶଂସିତ ଭାବରେ କାର୍ଯ୍ୟ ନିର୍ବାହ କଲେ । ଦ୍ୱିତୀୟବର୍ଷ ଦ୍ୱିତୀୟ ଶିକ୍ଷକପଦ ଶୂନ୍ୟ ହେବାରୁ ସେ ଅନ୍ୟ ପ୍ରତିଦ୍ୱନ୍ଦୀ ସତ୍ତ୍ୱେ ସ୍ୱୀୟ ଯୋଗ୍ୟତା ଗୁଣରେ ଉକ୍ତ ପଦପ୍ରାପ୍ତ ହେଲେ । ତେତେବେଳେ ଏ ସ୍କୁଲ୍‌ରେ ଦୁଃଶୀଳତାରେ ଚିରାଭ୍ୟସ୍ତ ଅନେକ ଦୁର୍ଦ୍ଦାନ୍ତ ଛାତ୍ର ଥିଲେ । ସେମାନେ ମଧୁବାବୁଙ୍କର ଅଦୃଷ୍ଟପୂର୍ବ କଠୋର ଶାସନ ଦେଖି ବିସ୍ମିତ ଏବଂ ବିଚଳିତ ହୋଇ ପଡ଼ିଥିଲେ । ଯାହାହେଉ ତାହାଙ୍କ ଚରିତ୍ର ପ୍ରଭାବରେ ତଜ୍ଜାତୀୟ ଅନେକ ଛାତ୍ରଙ୍କର ଜୀବନର ଗତି ପରିବର୍ତ୍ତିତ ଓ ଉଜ୍ଜ୍ୱଳୀକୃତ ହୋଇଥିଲା । ଏହିଠାରୁ ଶିକ୍ଷାପ୍ରାପ୍ତ ଅନେକ ଛାତ୍ର ବର୍ତ୍ତମାନ ଉତ୍କଳରେ ନାନା ବିଭାଗରେ ସୁନାମ ଅର୍ଜନ କରିଅଛନ୍ତି । ମଧୁବାବୁ

ଯେଉଁବର୍ଷ ଦ୍ୱିତୀୟ ଶିକ୍ଷକ ହେଲେ, ସେହିବର୍ଷ (୧୮୭୬ ଖ୍ରୀଷ୍ଟାବ୍ଦ) ପୂର୍ବ ଦୁଇ ତିନି ବର୍ଷର ଆନ୍ଦୋଳନ ଫଳରେ ଏବଂ ମୟୂରଭଞ୍ଜ ମହାରାଜ ପ୍ରମୁଖ ଉତ୍କଳର ରାଜନ୍ୟ ତଥା ଅନ୍ୟ ବଦାନ୍ୟଗଣଙ୍କ ସାହାଯ୍ୟ ଓ ଉତ୍କଳବନ୍ଧୁ ମହାମତି ରେଭେନ୍ସା ସାହେବଙ୍କ ପ୍ରଯତ୍ନବଳରେ ରେଭେନ୍ସା କଲେଜ ସ୍ଥାପିତ ହେଲା । କଲେଜ ସ୍ଥାପିତ ହେବାରୁ ଉକ୍ତ ବର୍ଷଠାରୁ କଟକ ହାଇସ୍କୁଲ୍ ରେଭେନ୍‌ସା କଲେଜିଏଟ୍ ସ୍କୁଲ୍ ନାମରେ ଅଭିହିତ ହୋଇ ଆସୁଅଛି । ମଧୁବାବୁ କଲେଜ ଅଧକ୍ଷଙ୍କ ଅଧୀନରେ ଏହି କଲେଜିଏଟ୍ ସ୍କୁଲ୍‌ରେ ପ୍ରାୟ ୩ବର୍ଷ କାଳ ଶିକ୍ଷକତା କର୍ମ ପ୍ରଶଂସିତ ଭାବରେ ସମ୍ପାଦନକରି ଅଶୀ ଟଙ୍କାରୁ ଏକଶତ ଟଙ୍କା ବେତନରେ କଟକ ଜିଲ୍ଲା ସ୍କୁଲ ସମୂହର ଡେ଼ପୁଟି ଇନ୍‌ସ୍ପେକ୍ଟର ପଦରେ ନିଯୁକ୍ତ ହୋଇଗଲେ । ଏହି ପଦରେ ଥାଇ ତାହାଙ୍କୁ ଯୁଗବ୍ୟାପୀ କାର୍ଯ୍ୟ କରିବାକୁ ପଡ଼ିଥିଲା । ଏହି ଯୁଗ (୧୨ ବର୍ଷ) ମଧ୍ୟରେ ମଧୁବାବୁ କିପରି ନବଯୁଗର ପ୍ରବର୍ତ୍ତନ କରିଥିଲେ, ତାହାର ଆଭାସ କନିଷ୍ଠ ପାଠକମାନଙ୍କୁ ପ୍ରଦାନ କରୁଅଛି ।

ମିସନାରୀମାନେ ଏ ଦେଶକୁ ପ୍ରଥମେ ମୁଦ୍ରାଯନ୍ତ୍ର ଆଣିଥିଲେ, ଏ କଥା ପ୍ରାୟ ସମସ୍ତଙ୍କୁ ବିଦିତ ଅଛି । ସେହିମାନେ ମଧ୍ୟ ଓଡ଼ିଆ ପାଠ୍ୟପୁସ୍ତକ ପ୍ରଥମେ ରଚନା କରିଥିଲେ । ଏହି ଶ୍ରେଣୀର ମିସନାରୀମାନଙ୍କ ମଧ୍ୟରେ ଶଟନ ସାହେବଙ୍କ ନାମ ଅଗ୍ରେ ଉଲ୍ଲେଖଯୋଗ୍ୟ । ପ୍ରଥମ ଅବସ୍ଥାରେ ଏହି ଶଟନ ସାହେବଙ୍କ କୃତ ଓଡ଼ିଆ ଅଭିଧାନ, ଇତିହାସ ଓ ସାହିତ୍ୟ ପୁସ୍ତକହିଁ ଉତ୍କଳ ଛାତ୍ର ମଣ୍ଡଳୀର ସମ୍ବଳ ହୋଇଥିଲା । ତତ୍କୃତ ସାରସଂଗ୍ରହର ପ୍ରଥମ ଓ ଦ୍ୱିତୀୟ ଭାଗ ଯଥାକ୍ରମେ ପ୍ରାଥମିକ ଓ ମଧ୍ୟଶ୍ରେଣୀ ବିଦ୍ୟାଳୟମାନଙ୍କରେ ପଠିତ ହେଉଥିଲା । ଶଟନ ସାହେବ ଆମ୍ଭମାନଙ୍କ ଗଦ୍ୟସାହିତ୍ୟର କି ପ୍ରକାର ପ୍ରଥମ ଅବତାର ସୃଷ୍ଟି କରିଥିଲେ, ତାହାର କେତେକ ସ୍ତବକ ତଳେ କୌତୂହଳୀ ପାଠକମାନଙ୍କୁ ଉପହାର ପ୍ରଦାନ କଲୁଁ ।

### ୧ - ଜଳୀୟ ବାମ୍ପର କଥା

''ଅତ୍ରମ୍ପା ସ୍ଥାନସ୍ଥ ପାଣିର କ୍ରମଶେ କ୍ରମଶେ ବାମ୍ପ ଉଠାଯାୟେ ଏହା ପୂର୍ବରେ କୁହାଗଲା । ଏହି ବାମ୍ପ ପବନଠାରୁ ଲଘୁ ହୋଇ ଆକାଶରେ ଉଠା ଯାଇ ନାନାଦିପ୍ରକାର ଆକୃତି ଧାରଣ କରେ ।''

### ୨ - ପକ୍ଷୀର କଥା

''ପକ୍ଷିଗଣରେ ପରମେଶ୍ୱରଙ୍କର ଯେମନ୍ତ ନିପୁଣତା ପ୍ରକାଶ ହୋୟେ ଅନ୍ୟ କୌଣସି ବସ୍ତୁରେ ତାହାର ଅଧିକ ହୁଅଇ ନାହିଁ । × × ସେମାନଙ୍କର ଦେହ ପକ୍ଷିରେ

ଆଚ୍ଛାଦିତ ଅଛି ପୁଣି ସେହି ପକ୍ଷରେ ହାଲୁକାଇ, ତବତି, ଦୁଇ ବିପରୀତ ଗୁଣ ଅଛି ପୁଣି ସେହି ଏକର ଉପରେ ଏକ ଏହିମତେ ଆଗ ପଛ ସବୁଠାରେ ସ୍ଥାପିତ ଅଛି ତାହାଦ୍ୱାରା ଉଡ଼ିବାର କୌଣସି ବାଧା ଜନ୍ମଇ ନାହିଁ ।''

## ୩ - ମନର ଧୈର୍ଯ୍ୟର କଥା

''ମନୁଷ୍ୟର ପାଇଁ ଯେଉଁ ସବୁଠୁଁ ଉତ୍ତମ ବିଷୟ ତାହା ମନୁଷ୍ୟର ଦ୍ୱାରା ହାନି ନ ହୋଯେ କେହି ତାକୁ ହରଣ କରି ନ ପାରନ୍ତି ଅବା କାହାକୁ ତାହା ଦିଆହିଁ ନ ଯାୟେ । ପରମେଶ୍ୱରଙ୍କର ମହାକାର୍ଯ୍ୟ ଏହି ଜଗତ ଯେମନ୍ତ ଉତ୍ତମ ତେମନ୍ତ ଏହି ଜଗତର ବିବେଚନା କରିବାକୁ ମନୁଷ୍ୟର ମନ ଉତ୍ତମ ବରଞ୍ଚ ଜଗତର ସର୍ବୋତ୍ତମ ଭାଗ ହୁଅଇ । ଏହି ଦୁଇ ବସ୍ତୁ ଏଘାନ୍ତ ଆମ୍ଭମାନଙ୍କର ଅଛି ଯେସରିକି ଜଗତରେ ବାସକରି ଓ ମନର ଦ୍ୱାରା ସମସ୍ତ ଭୋଗ କରି ସେସରିକି ଏହି ଜଗତ୍ ମନ ଆମ୍ଭମାନଙ୍କଠାରୁ କେହି ହରଣ କରି ନପାରଇ ।''

ପାଠକେ, ଦେଖନ୍ତୁ କି ସୁନ୍ଦର ଗଦ୍ୟ ଏକ କାଳରେ ଉତ୍କଳ ଭାଷାର କଳେବରକୁ ଅବଦ୍ୟ କରୁଥିଲା । ମାତୃଭାଷା ଓଡ଼ିଆ ହେଲେ ମଧ୍ଯ କେଉଁ ଅଭିଧାନ ଓ ବ୍ୟାକରଣର ସାହାଯ୍ୟରେ ଏହାର ଅର୍ଥ ବୁଝାଯିବ ? ଏହା ପୁଣି ବଙ୍ଗଳାର ଅନୁବାଦ । ଏ ଅନୁବାଦ ପରେ ପରଲୋକଗତ ଉତ୍କଳ-ହିତୈଷୀ ବିଚ୍ଛନ୍ଦ ପଟ୍ଟନାୟକଙ୍କ ବଙ୍ଗଳା ଚାରୁପାଠ ପ୍ରଭୃତିର ଅନୁବାଦ ପାଠ୍ୟ ହୋଇଥିଲା । ତାହା କିପରି ବିକୃତ ଏବଂ ଅବିଶୁଦ୍ଧ ଥିଲା, ତାହା ଦେଖାଇବାକୁ ଗଲେ ପ୍ରବନ୍ଧ ଅଯଥା ଦୀର୍ଘ ହୋଇଯିବ । ତେବେ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏହି ଅନୁବାଦ 'ହିଁ' 'ସୁଦ୍ଧା' 'ମଧ୍ଯ' ପ୍ରଭୃତି କେତୋଟି ଅବ୍ୟୟର ଅଯଥା ବାହୁଲ୍ୟରେ ଭାରାକ୍ରାନ୍ତ ହୋଇଅଛି । ଯଥା—'୭ଇ ଅକ୍ଟୋବର'='୭ ହିଁ ଅକ୍ଟୋବର', 'ସକଳେରଇ' = 'ସମସ୍ତଙ୍କର ସୁଦ୍ଧା' ଇତ୍ୟାଦି । ଏତ ଗଲା ଗଦ୍ୟର କଥା । ପଦ୍ୟ ସାହିତ୍ୟ ମଧ୍ୟରେ ଅଧ୍ୟାପକ ରାମପ୍ରସନ୍ନ ମୁଖୋପାଧ୍ୟାୟଙ୍କଦ୍ୱାରା ଭାଷାନ୍ତରିତ ପଦ୍ୟମାଳା, ପଦ୍ୟପାଠ ପ୍ରଭୃତି । ମଧୁବାବୁ ଡେପୁଟୀ ଇନ୍‌ସ୍ପେକ୍ଟର ହୋଇଯାଇ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ପାଠ୍ୟପୁସ୍ତକର ଶୋଚନୀୟ ଅବସ୍ଥା ଏବଂ ଅଭାବ ଅଗ୍ରେ ଉପଲବ୍ଧି କଲେ । ତେତେବେଳେ ଅଧ୍ୟାପନା ବିଶେଷତଃ ସାହିତ୍ୟ ବ୍ୟାଖ୍ୟା କରିବା ରୀତି ଏପରି ଅଦ୍ଭୁତ ଥିଲା ଯେ ତାହା ଏ ସ୍ଥଳରେ ଦୃଷ୍ଟାନ୍ତଦ୍ୱାରା ପ୍ରତିପାଦନ କରିବା ଅସମ୍ଭବ । ସେ ସବୁ ଦେଖି ମଧୁବାବୁ ମନରେ ଆଘାତପ୍ରାପ୍ତ ହୋଇ ଶିକ୍ଷା ବିଭାଗରେ ଏକ ମହାପରିବର୍ତ୍ତନ

ଘଟାଇବାକୁ ଯତ୍ନବାନ୍ ହେଲେ । ଏହି ସମୟରେ ଜଏଣ୍ଟ ଇନ୍ସପେକ୍ଟର ରାଧାନାଥ ବାବୁ ତାଙ୍କର ଏ ଚେଷ୍ଟାର ପୂର୍ଣ୍ଣ ଅନୁକୂଳ ଓ ପୃଷ୍ଠପୋଷକ ହେବାରୁ ମଧୁବାବୁ ସେହି ଦାୟିତ୍ୱପୂର୍ଣ୍ଣ ରାଜସେବା ସତ୍ତ୍ୱେ ଅକ୍ଳାନ୍ତ ପରିଶ୍ରମ ସହକାରେ ନୂତନ ରୁଚିସମ୍ମତ ମାର୍ଜିତ ଭାଷାର ନିର୍ଦ୍ଦୋଷ ପାଠ୍ୟପୁସ୍ତକମାନ ପ୍ରଣୟନ କରିବାକୁ ଲାଗିଲେ । କ୍ରମେ ବର୍ଣ୍ଣଶିକ୍ଷାଠାରୁ ଆରମ୍ଭ କରି ମଧ ଛାତ୍ରବୃତ୍ତିର ପାଠ୍ୟ ସାହିତ୍ୟପୁସ୍ତକ ପର୍ଯ୍ୟନ୍ତ ସମସ୍ତ ପୁସ୍ତକ ସେ ଉତ୍କଳ ବିଦ୍ୟାଳୟମାନଙ୍କୁ ଉପହାର ଦେଇଅଛନ୍ତି । ସେହି କାଳରୁ ଆଜିପର୍ଯ୍ୟନ୍ତ ତତ୍ପ୍ରଣୀତ ସାହିତ୍ୟ ପୁସ୍ତକମାନ ଉତ୍କଳ ବିଦ୍ୟାଳୟସ୍ଥ ଛାତ୍ରମାନଙ୍କ ହସ୍ତରେ ଶୋଭା ପାଉଅଛି । ତତ୍କୃତ 'ଛାନ୍ଦମାଳା' ଉତ୍କଳ ସାହିତ୍ୟାକାଶରେ 'ଶୁବେରାତ'ରେ ବଙ୍କିମ ଚନ୍ଦ୍ରରେଖା ପ୍ରାୟ ଉଦିତ ହେଲାକ୍ଷଣି ଅନ୍ୟ ସମସ୍ତ ପଦ୍ୟପୁସ୍ତକ ସନ୍ନିହିତ ତାରାପୁଞ୍ଜ ପରି ମ୍ଳାନ ପଡ଼ିଗଲା । ତଦୀୟ ଲେଖନୀନିଃସୃତ 'ପ୍ରବନ୍ଧମାଳା' ଗଦ୍ୟ ସାହିତ୍ୟ ମଧରେ ଅପ୍ରତିଦ୍ୱନ୍ଦୀ ସ୍ଥାନ ଅଧିକାର କଲା ଏବଂ ଆଜିଯାଏ ମଧ ସେହି ସ୍ଥାନରେ ଅଛି । ଅନ୍ଧତମସପଥିକ ଅବଧାନମାନଙ୍କୁ ତାହାଙ୍କ 'ଅବଧାନବନ୍ଧୁ' ନୂତନ ଉଜ୍ଜ୍ୱଳ ମାର୍ଗ ଦେଖାଇ ଦେଲା । ହାୟ ! କି ଦୁର୍ଭାଗ୍ୟ ! ଏପ୍ରକାର ପୁସ୍ତକର ବହୁଳ ପ୍ରଚାରରେ ପୁଣି ଉତ୍କଳରେ ମହାକନ୍ଦଳ ଉପସ୍ଥିତ ହେଲା ! ପୂର୍ବ ପୂର୍ବ ଗ୍ରନ୍ଥକାରମାନେ ଈର୍ଷାନ୍ୱିତ ହୋଇ ମହାଆନ୍ଦୋଳନ ଲଗାଇଲେ । ଗ୍ରନ୍ଥକାର ତଥା ପୃଷ୍ଠପୋଷକ ଜଏଣ୍ଟ ଇନ୍ସପେକ୍ଟରଙ୍କ ଉପରେ ଚାରିଆଡୁ ଗାଳି ବର୍ଷଣ ହେଲା । ଏହି ମହାସଂଗ୍ରାମ ଶେଷରେ ସେହି ସତ୍ୟରହିଁ ଜୟ ହେଲା ।

ମଧୁବାବୁ ବିଦ୍ୟାଳୟମାନଙ୍କୁ କେବଳ ଉପଯୁକ୍ତ ପୁସ୍ତକମାନ ଯୋଗାଇ ଦେଇ କର୍ତ୍ତବ୍ୟ ସମ୍ପନ୍ନ ହେଲା ବୋଲି ମନେ କରି ନଥିଲେ । ସେ ପ୍ରତ୍ୟେକ ବିଦ୍ୟାଳୟ ପରିଦର୍ଶନ କାଳରେ ଆଦର୍ଶ ପଠନରୀତି ଶିକ୍ଷା ଦେଉଥିଲେ । କିପରି ସାହିତ୍ୟ ପଢ଼ାଇବାକୁ ହୁଏ, ତାହା ନିଜେ ପଢ଼ି ବୁଝାଇ ଦେଉଥିଲେ । ଏହାଛଡ଼ା ଛାତ୍ରମାନେ ଯେପରି ପରସ୍ପର ଅଶ୍ଳୀଳ କଥା ବ୍ୟବହାର ନ କରନ୍ତି, ତତ୍ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବାପାଇଁ ଶିକ୍ଷକମାନଙ୍କୁ ଉପଦେଶ ଦେଉଥିଲେ । କୌଣସି ବଡ଼ ଗ୍ରାମରେ ପାଠଶାଳା ଦେଖିଲେ ତାହାକୁ ମଧଶ୍ରେଣୀ ବିଦ୍ୟାଳୟରେ ପରିଣତ କରିବାପାଇଁ ଗ୍ରାମବାସୀମାନଙ୍କୁ ପ୍ରାୟ ସେ ଉପଦେଶ ଦେଉଥିଲେ ଏବଂ ଯଥାଶକ୍ତି ସେମାନଙ୍କ ଉଦ୍ୟମରେ ସାହାଯ୍ୟ କରୁଥିଲେ । କେବଳ ଏତିକିରେ ବିରତ ନ ହୋଇ ସେ ବିଦ୍ୟାଳୟମାନଙ୍କରେ ସୁଶିକ୍ଷାର ପ୍ରଚାର ନିମିତ୍ତ 'ଶିକ୍ଷାବନ୍ଧୁ' ନାମକ ଖଣ୍ଡିଏ ମାସିକ ପତ୍ର ପ୍ରକାଶିତ କଲେ । ଏଥିରେ କେବଳ ବିଦ୍ୟାଳୟ ଶିକ୍ଷୋପଯୋଗୀ ପ୍ରବନ୍ଧମାନ ଲେଖା ଯାଉଥିଲା । ଏ ପତ୍ରିକା ଅଧିକକାଳ ସ୍ଥାୟୀ ହୋଇ

ନଥିଲେହେଁ ସେହି କେତେକବର୍ଷ ତାହାର ବହୁଳ ପ୍ରଚାର ଦ୍ୱାରା ବିଦ୍ୟାଳୟସ୍ଥ ଛାତ୍ର ଓ ଶିକ୍ଷକ ସମାଜର ଯେ ଯଥେଷ୍ଟ ଉନ୍ନତି ସାଧିତ ହୋଇଥିଲା, ଏଥିରେ କାହାରି ଦ୍ୱିରୁକ୍ତି ହେବ ନାହିଁ । ଏହିସବୁ ଆଦର୍ଶ ଦର୍ଶନ ପଛେ ପଛେ ସେ ଆଦର୍ଶ ଶିକ୍ଷାର ଦୃଷ୍ଟାନ୍ତ ଦେଖାଇବାକୁ ପ୍ରୟାସୀ ହୋଇ ୧୮୮୧ ଖ୍ରୀଷ୍ଟାବ୍ଦରେ ଏ ନଗରରେ 'କଟକ ଟାଉନ ସ୍କୁଲ' ନାମରେ ଗୋଟିଏ ଆଦର୍ଶ ମଧ-ଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । ଏହା ଛାତ୍ରସଂଖ୍ୟା ଓ ବାର୍ଷିକ ଫଳ ତୁଳନାରେ ଯଥାର୍ଥ ଆଦର୍ଶ ବିଦ୍ୟାଳୟ ହୋଇଥିଲା । ଶ୍ରୀଯୁକ୍ତ ଭୂପତିନାଥ ବସୁ, ଶ୍ରୀଯୁକ୍ତ ବିଶ୍ୱନାଥ କର, ଶ୍ରୀଯୁକ୍ତ ନନ୍ଦକିଶୋର ବଳ ପ୍ରଭୃତି ବିଦ୍ୟୋତ୍ସାହୀ କୃତୀ ଯୁବକମାନେ ଏଥିରେ ଶିକ୍ଷକତା କରିଅଛନ୍ତି । ବିଶେଷତଃ ବିଶ୍ୱନାଥ ବାବୁଙ୍କ ପ୍ରଧାନଶିକ୍ଷକତାରେ ଏହି ବିଦ୍ୟାଳୟ ସୁଫଳ ପ୍ରସବ କରିଥିଲା । ଟାଉନ ସ୍କୁଲ ଛାତ୍ର ବୃତ୍ତି ନ ପାଇ କୌଣସି ବର୍ଷ ଯାଉ ନଥିଲା । କ୍ରମଶଃ ଛାତ୍ରସଂଖ୍ୟାର ବୃଦ୍ଧି ଦେଖି ବିଦ୍ୟାଳୟର ପ୍ରତିଷ୍ଠାତା ତାହାକୁ ୧୮୮୯ରେ ହାଇସ୍କୁଲରେ ପରିଣତ କଲେ, କିନ୍ତୁ ସାମାନ୍ୟ ବେତନମାତ୍ର ସମ୍ବଳ ମଧୁବାବୁଙ୍କ ପକ୍ଷରେ ଏ ବହୁ ବ୍ୟୟସାଧ ଗୁରୁଭାର ବହନ ଅସମ୍ଭବ ହୋଇଉଠିବାରୁ ଅଚିରେ (ପ୍ରାୟ ଦୁଇବର୍ଷ ପରେ) ତାହା ପୁଣି ମଧ-ଇଂରାଜୀ ବିଦ୍ୟାଳୟ ରୂପରେ ପରିଣତ ହେଲା ।

ବର୍ଣ୍ଣିତ ସମୟ ମଧ୍ୟରେ ମଧୁବାବୁଙ୍କର ବ୍ରାହ୍ମସମାଜର କାର୍ଯ୍ୟ ଉଲ୍ଲେଖଯୋଗ୍ୟ । ସେ ବ୍ରାହ୍ମ ଧର୍ମ ଗ୍ରହଣ କରି ନବଯୁଗର ସେହି ଉନ୍ନତ ଆଦର୍ଶ ସମସ୍ତ ଯୁବକ ବନ୍ଧୁ ଓ ଅନ୍ତେବାସିମାନଙ୍କ ହୃଦୟରେ ସ୍ଥାପନ କରିବାପାଇଁ ସର୍ବଦା ପ୍ରଯତ୍ନଶୀଳ ଥିଲେ । ଏହି ଧର୍ମପ୍ରଚାରର ଉନ୍ନତିକଳ୍ପେ ସେ ପ୍ରଥମେ ଚତୁର୍ଭୁଜ ପ୍ରମୁଖ ବନ୍ଧୁଙ୍କୁ ଘେନି ଗଠିତ ସେବକ ସମ୍ପ୍ରଦାୟରୁ 'ସେବକ' ନାମକ ମାସିକ ପତ୍ର ପ୍ରକାଶିତ କଲେ । ମଧୁବାବୁ ଉତ୍କଳର ମାସିକପତ୍ରର ଜଣେ ପ୍ରଧାନ ପ୍ରବର୍ତ୍ତକ କହିଲେ ଚଳେ । 'ଉତ୍କଳ ଦର୍ପଣ'ଠାରୁ 'ଉତ୍କଳ ସାହିତ୍ୟ' ପର୍ଯ୍ୟନ୍ତ ସମସ୍ତ ସାହିତ୍ୟିକ ପତ୍ରରେ ତାହାଙ୍କର ଯୋଗ ଥିଲା । ତାଙ୍କରି ସହଯୋଗିତା ଓ ଯତ୍ନରେ ୧୮୮୪ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସଠାରୁ 'ସଂସ୍କାରକ' ନାମକ ଆଉ ଖଣ୍ଡିଏ ପତ୍ରିକା ବାହାରିଲା । ଏହି ସାପ୍ତାହିକ ପତ୍ରର ଅଧେ ଇଂରାଜୀ ଓ ଅଧେ ଓଡ଼ିଆ ଲେଖାରେ ପୂର୍ଣ୍ଣ ହେଉଥିଲା । ମୁଖ୍ୟ ଉଦ୍ଦେଶ୍ୟ ସେହି ସତ୍ୟଧର୍ମ ପ୍ରଚାର ଥିଲା । ଏହି ଉଭୟ ପତ୍ରିକାର ପରିଚାଳନ ଓ ନୀତି ବିଷୟରେ ପରଲୋକଗତ ଚତୁର୍ଭୁଜ ପଟ୍ଟନାୟକଙ୍କ ସହିତ ମତଦ୍ୱୈଧ ଘଟିବାରୁ ସେ ସମସ୍ତ ସମ୍ପର୍କ ତ୍ୟାଗ କରିଥିଲେ । ମଧୁବାବୁଙ୍କ ଓଜୋଗାମ୍ଭୀର୍ଯ୍ୟଶାଳିନୀ ବକ୍ତୃତା, ଓଙ୍କାରଝଙ୍କାରମୟୀ ବ୍ରହ୍ମୋପାସନା ଓ ସତ୍ୟଶୁଦ୍ଧ ଉପଦେଶରେ ତେତେବେଳେ ଅନେକ ଯୁବକ ଏହି ଧର୍ମପ୍ରତି ଆକୃଷ୍ଟ ହେଲେ

ଏବଂ ଯେଉଁମାନେ ସଙ୍ଗେ ସଙ୍ଗେ ହିନ୍ଦୁସମାଜ ତ୍ୟାଗ କରି ଏହି ଧର୍ମରେ ଦୀକ୍ଷିତ ହେଲେ, ସେମାନଙ୍କ ମଧ୍ୟରେ ପରଲୋକଗତ ସାଧୁଚରଣ ରାୟ ଓ ଶ୍ରୀଯୁକ୍ତ ବିଶ୍ୱନାଥ କର ପ୍ରଧାନ ଅଟନ୍ତି । ୧୮୮୬ରେ ବିଶ୍ୱନାଥବାବୁ ଯେତେବେଳେ ଅନୁଜଦଳକୁ ଘେନି ଏହି ଧର୍ମ ଗ୍ରହଣ କଲେ, ତେତେବେଳେ ମହା ଆନ୍ଦୋଳନ ଉପସ୍ଥିତ ହୋଇଥିଲା । ପ୍ରତି ସପ୍ତାହ ଉତ୍କଳ ଦୀପିକାର ସ୍ତମ୍ଭ ଏହି ବିଷୟରେ ପୂର୍ଣ୍ଣ ହେବାକୁ ଲାଗିଲା । ତଦାନୀନ୍ତନ ଭଗବଦ୍‌ଭକ୍ତିପ୍ରଦାୟିନୀ ସଭା ଏହି ଦଳ ବିଶେଷତଃ ଆଚାର୍ଯ୍ୟ ମଧୁବାବୁ ଓ ଶିକ୍ଷକ ସାଧୁବାବୁଙ୍କ ବିରୁଦ୍ଧରେ ଖଡ୍‌ଗହସ୍ତ ହୋଇ ଗଭର୍ଣ୍ଣମେଣ୍ଟଙ୍କ ନିକଟରେ ଏହାର ତୀବ୍ର ପ୍ରତିବାଦ କଲା । ମଧୁବାବୁ ରାଜକର୍ମଚାରୀ ଥିବାରୁ ଏପରି ଅପ୍ରୀତିକର ଆନ୍ଦୋଳନରେ ବାହାରେ ଟିକିଏ ସଙ୍କୁଚିତ ହୋଇଥିଲେ ସତ୍ୟ, କିନ୍ତୁ ତଦାନୀନ୍ତନ କମିଶନର ଓର୍ସଲି ସାହେବ ସମସ୍ତ ଶୁଣି ସୁଦ୍ଧା ମଧୁବାବୁଙ୍କ ପ୍ରତି କୌଣସି କଟୁ ଆଦେଶ ପ୍ରଦାନ କରି ନାହାନ୍ତି । ବରଂ କିୟତ୍ ପରିମାଣରେ ତାହାଙ୍କ ମତର ପୋଷକତା କରିଅଛନ୍ତି । ମଧୁବାବୁ ସେହି କାଳରୁ ଏ ବିଷୟରେ ବାହାରେ ସର୍ବଦା ସଙ୍କୁଚିତ ଥାଇ ଆଭ୍ୟନ୍ତରୀଣ ଉନ୍ନତିରେ ଯତ୍ନବାନ ଥିଲେ । ବକ୍ତୃତା ବାହାଦୁରୀରେ ଲୋକମନ ରଞ୍ଜନ କରିବା ବା ପ୍ରତ୍ୟୟ ଜନ୍ମାଇବା ତାଙ୍କର ପ୍ରକୃତିବିରୁଦ୍ଧ ଥିଲା, ସେ ନିଜ ଆଦର୍ଶ ଜୀବନର ଦୃଷ୍ଟାନ୍ତଦ୍ୱାରା ଲୋକଙ୍କର ଆନ୍ତରିକ ଶ୍ରଦ୍ଧା ଓ ଭକ୍ତି ଆକର୍ଷଣ କରିଅଛନ୍ତି । ଆଦର୍ଶ ବିଦ୍ୟାଳୟ ସ୍ଥାପନ କରି ଛାତ୍ରବର୍ଗଙ୍କୁ ଯଥାର୍ଥ ଧର୍ମୋପଦେଶ ଓ ନୀତିଶିକ୍ଷା ଦାନ କରିବା ତାଙ୍କର ଅଭିପ୍ରେତ ଥିଲା ।

ବିଶ୍ୱନାଥବାବୁ ବ୍ରହ୍ମସମାଜରେ ପ୍ରବେଶ କରି କିଛିକାଳ ପ୍ରୋକ୍ତ 'ସଂସ୍କାରକ'ର ସମ୍ପାଦକ ହୋଇଥିଲେ ଓ ପରେ ଟାଉନ ସ୍କୁଲର ଶିକ୍ଷକତା କାର୍ଯ୍ୟ କଲେ । ଏ ପତ୍ରିକାରେ ଧର୍ମ ବିଷୟ ବ୍ୟତୀତ ଅନେକ ସାହିତ୍ୟିକ ପ୍ରବନ୍ଧ ମଧ ପ୍ରକାଶିତ ହେଉଥିଲା । କବିବର ରାଧାନାଥଙ୍କଠାରୁ ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣାଙ୍କ ପର୍ଯ୍ୟନ୍ତ ଅନେକ ସୁଲେଖକ ଓ ନବୀନ ଲେଖକଙ୍କ ପ୍ରବନ୍ଧ ଏଥିରେ ପ୍ରତିଫଳିତ ହୋଇଅଛି । କିନ୍ତୁ ବ୍ୟକ୍ତିବିଶେଷଙ୍କ ତ୍ରୁଟିରେ କାରଣସହ ଅଚିରେ ଏ ପତ୍ରିକାର ପ୍ରଚାର ସ୍ଥଗିତ ହେଲା । ଏଣେ ଏହିସମୟରେ ଉଦ୍ୟମପ୍ରାଣ ମଧୁସୂଦନଙ୍କ ଯତ୍ନରେ 'ନବସମ୍ବାଦ' ନାମକ ନବଯୁଗର ସମ୍ବାଦସମ୍ବଳିତ ଆଉ ଖଣ୍ଡିଏ ସାପ୍ତାହିକ ପତ୍ର ୰ ସାଧୁବାବୁଙ୍କ ସମ୍ପାଦକତାରେ ପ୍ରକାଶିତ ହେଉଥିଲା । ଏହି ଦୁଇ ପତ୍ର କିଛିକାଳ ପରସ୍ପରର ବିରୋଧୀ ହୋଇ ପଡ଼ିଥିଲେ । ଅନେକେ କହନ୍ତ, ଏହି ନବସମ୍ବାଦ ଶିକ୍ଷାବନ୍ଧୁର ରୂପାନ୍ତର । ସେ ଯାହା ହେଉ ଏ ପତ୍ରିକା ଗ୍ରାହକମାନଙ୍କ

ଆନୁକୂଲ୍ୟ ଅଭାବରେ ଅଧିକ ଦିନ ଚଳି ନ ପାରିବାରୁ ତାହାର ଉଦ୍‌ଯୋଗିଦଳ ବାଲେଶ୍ୱରରୁ ନବ ପ୍ରକାଶିତ 'ଓଡ଼ିଆ' ନାମକ ସାପ୍ତାହିକ ପତ୍ରିକା ସହିତ ଏହାକୁ ମିଶାଇ ଦେବାର ପ୍ରସ୍ତାବ କଲେ ଏବଂ ସେହିଦିନ ଠାରୁ (୧୮୮୮ରୁ) ଉକ୍ତ ଯୁକ୍ତ ପତ୍ରିକା 'ଓଡ଼ିଆ ଓ ନବସମ୍ବାଦ' ନାମରେ ପ୍ରକାଶିତ ହୋଇ ଆସୁଅଛି ।

## ୪

ଶେଷୋକ୍ତ ସମୟରେ (୧୮୮୬ ଖ୍ରୀ:) ରାଧାନାଥ ମଧୁସୂଦନ ପ୍ରମୁଖ କେତେକ ଜଣ ସାହିତ୍ୟପ୍ରାଣ ବନ୍ଧୁଙ୍କ ଉଦ୍ୟମରେ ଏ ନଗରରେ 'ଉତ୍କଳସାହିତ୍ୟ ସମ୍ମିଳନୀ' ନାମକ ଗୋଟିଏ ବଡ଼ ସାହିତ୍ୟିକ ସମାଜ ସ୍ଥାପିତ ହୋଇଥିଲା । ଉତ୍କଳ ଭାଷା ଓ ସାହିତ୍ୟର ଉନ୍ନତି ବିଧାନ ଏବଂ ନବ ନବ ପ୍ରକାଶିତ ପୁସ୍ତକାଦିର ଆଲୋଚନା ଏହାର ପ୍ରଧାନ ଲକ୍ଷ୍ୟ ଥିଲା । ଏହି ସଭାରେ ନିମ୍ନଲିଖିତ ଭଦ୍ରବ୍ୟକ୍ତିମାନେ ପ୍ରଧାନ ସଭ୍ୟ ଏବଂ ଉଦ୍ୟୋଗୀ ଥିଲେ । ଶ୍ରୀଯୁକ୍ତ ଗୌରୀଶଙ୍କର ରାୟ, ⁄କାଳୀପଦ ବନ୍ଦୋପାଧ୍ୟାୟ, ⁄ରାଧାନାଥ ରାୟ, ⁄ମଧୁସୂଦନ ରାଓ, ରାମଶଙ୍କର ରାୟ, ⁄କପିଳେଶ୍ୱର ବିଦ୍ୟାଭୂଷଣ, ⁄ଜଗନ୍ମୋହନ ରାୟ, ⁄ଗଦାଧର ତ୍ରିପାଠୀ, ⁄ଦୀନନାଥ ବନ୍ଦୋପାଧ୍ୟାୟ, ⁄ଚତୁର୍ଭୁଜ ପଟ୍ଟନାୟକ ଏବଂ ⁄ନିମାଇବଲ୍ଲଭ ଭଟ୍ଟାଚାର୍ଯ୍ୟ । ପୁସ୍ତକ ସମ୍ବନ୍ଧରେ ଏହି ସଭାର ଅନେକ ଆଲୋଚନା 'ଶିକ୍ଷାବନ୍ଧୁ'ରେ ପ୍ରକାଶିତ ହୋଇଥିଲା । ତେତେବେଳେ ଶିକ୍ଷାବନ୍ଧୁ ଓ ସଂସ୍କାରକ ଉଭୟେ ପାଠ୍ୟପୁସ୍ତକ ଆନ୍ଦୋଳନରେ ବିରୁଦ୍ଧବାଦୀ 'ଦୀପିକା' ଉପରେ ଖଡ୍‌ଗହସ୍ତ ହୋଇଥିଲେ । ଉଭୟ ପକ୍ଷ ମଧ୍ୟରେ କିଛି କାଳ ତୀବ୍ର ବାଦ ପ୍ରତିବାଦ ଚଳିଥିଲା—ଉଭୟ ପାର୍ଶ୍ୱରେ କେତେକ ଲେଖକ ମଧ୍ୟ ଏହି ପ୍ରସଙ୍ଗ ଘେନି ଘନଘନ ଲେଖନୀ ଚାଳନା କଲେ ଏବଂ ଶେଷରେ ଆତ୍ମସ୍ଥିତି ହୃଦୟଙ୍ଗମ କରି ସ୍ଥଗିତ ହେଲେ । ଏହି ଭାବରେ ମଧୁବାବୁଙ୍କର ଡେପୁଟି ଇନ୍‌ସ୍ପେକ୍ଟରୀ କର୍ମ ଶେଷ ହେବାକୁ ବସିଲା । ଏହି ସମୟରେ ରେଭେନ୍‌ସା କଲେଜିଏଟ ସ୍କୁଲର ସୁପରିଚିତ ହେଡ଼ମାଷ୍ଟର ଶ୍ରୀଯୁକ୍ତ ରାମଦାସ ଚକ୍ରବର୍ତ୍ତୀ ସରକାରୀ କର୍ମରୁ ଅବସର ଗ୍ରହଣ କରିବାକୁ ବସିବାରୁ କର୍ତ୍ତୃପକ୍ଷ ତାଙ୍କ ପଦରେ ମଧୁବାବୁଙ୍କୁ ଯୋଗ୍ୟତମ ବିବେଚନା କରି ନିଯୁକ୍ତ କଲେ । ୧୮୯୧ ଖ୍ରୀଷ୍ଟାବ୍ଦର ଜୁଲାଇ ମାସଠାରୁ ମଧୁବାବୁ ଉକ୍ତ ପଦରେ ଅସ୍ଥାୟୀ ଭାବରେ ନିଯୁକ୍ତ ହୋଇ ୧୮୯୨ର ମାର୍ଚ୍ଚ ମାସରେ ମାସିକ ୧୫୦ ଟଙ୍କା ବେତନରେ ସ୍ଥାୟୀ ହେଲେ ଏବଂ ଚିହ୍ନିତ କର୍ମଚାରୀ (Gazetted Officer) ରୂପେ ଗଣ୍ୟ ହେଲେ । ଡେପୁଟି ଇନ୍‌ସ୍ପେକ୍ଟର ଥିଲାବେଳେ ସେ ଜିଲ୍ଲାସମିତିର

(Dt. Board) ସଭ୍ୟରୂପେ ଏପରି ସୁଖ୍ୟାତିସହକାରେ କାର୍ଯ୍ୟ କରିଥିଲେ ଯେ ତଦନ୍ତେ ତାହାଙ୍କୁ ବହୁ ବର୍ଷଯାଏ (୧୮୯୭ ଖ୍ରୀ:) ଉକ୍ତ ସଭ୍ୟ ପଦରେ ନିର୍ବାଚନ କରାଯାଉଥିଲା । କଲେଜିଏଟ ସ୍କୁଲକୁ ମଧୁବାବୁ ପ୍ରଥମ ଓଡ଼ିଆ ହେଡ଼ମାଷ୍ଟର ହୋଇ ଆସି ଯେପରି ଦକ୍ଷତା ସହକାରେ କାର୍ଯ୍ୟ ନିର୍ବାହ କରିଥିଲେ, ତାହା ତଦାନୀନ୍ତନ ଅଧ୍ୟକ୍ଷଙ୍କ ବିମୁଖତାରେ ଲୋକ ସମକ୍ଷରେ ଅନ୍ୟ ପ୍ରକାର ହୋଇଥିଲା । ଅନେକଙ୍କୁ ଜଣା ଯେ ତେତେବେଳେ ଯୁବକ ଶ୍ରୀଯୁକ୍ତ ହଲଉଆର୍ଡ଼ ସାହେବ (N. L. Hollward) ଏଠା କଲେଜର ଅଧ୍ୟକ୍ଷ (ବର୍ତ୍ତମାନ ବିହାର ଓ ଓଡ଼ିଶା ପ୍ରଦେଶର ଡାଇରେକ୍ଟର) ଥିଲେ ଏବଂ ତାଙ୍କର ଶାସନରୀତି ଟିକିଏ କଡ଼ା ଥିଲା । ଏହାଙ୍କ ସମୟର 'ସ୍କୁଲଶାସନ' ତେତେବେଳେ କଟକର ଭଦ୍ରସାଧାରଣଙ୍କର ଯେପରି ମହା ଆନ୍ଦୋଳନର ଏବଂ ଛାତ୍ରମଣ୍ଡଳୀଙ୍କର ମହା ଆତଙ୍କର ବିଷୟ ହୋଇଥିଲା, ତତ୍ସମ୍ବନ୍ଧରେ ଏଠାରେ କିଛି ଉଲ୍ଲେଖ ନ କଲେ ପ୍ରବନ୍ଧର ଅଙ୍ଗହାନି ହେବ ବୋଲି ଆଶଙ୍କା ହୁଏ । ଅଧ୍ୟକ୍ଷଙ୍କର ସ୍କୁଲଶାସନରେ ଗୋଟିଏ ପ୍ରଧାନ ନିୟମ ଏହି ଥିଲା ଯେ ଘ ୧୦।୨୫ ମିନିଟ୍ ପୂର୍ବରୁ କଲେଜକୁ ଫାଟକ ଫିଟିବ ନାହିଁ । ଏପରି କରିବାରୁ ଅନେକ ଛାତ୍ର ଆଗରୁ ଆସି ଖରାରେ ଫାଟକ ବାହାରେ ଠିଆ ହୋଇ କଷ୍ଟ ପାଇଲେ । ତାହାର କୌଣସି ପ୍ରତିକାର ନ ହେବାରୁ ଦୁଷ୍ଟ ଛାତ୍ରମାନେ ରାତିରେ ତାଲା ଚୋରି କରି ନେଲେ । ସେଥିରେ ଦଣ୍ଡର ମାତ୍ରା ଅପାତ୍ରରେ ସୁଦ୍ଧା ଏତେ ବଳି ପଡ଼ିଲା ଯେ ସେଥିପାଇଁ ଅଭିଭାବକମଣ୍ଡଳୀ ମଧ୍ୟରେ ମହା ଚହଳ ପଡ଼ିଗଲା । ସମସ୍ତେ ସଭା ସମିତି କରି ସେ କଠୋର ଶାସନର ତୀବ୍ର ପ୍ରତିବାଦ କଲେ । 'ଦୀପିକା'ର ନିମ୍ନୋଦ୍ଧୃତ କେତେକ ପଂକ୍ତିରୁ ଏହି ଚିତ୍ର ପାଠକମାନଙ୍କର ମାନସ ପ୍ରତ୍ୟକ୍ଷ ହୋଇପାରିବ । ''ଆମ୍ଭମାନଙ୍କ ପ୍ରିନ୍ସିପାଲଙ୍କ କାର୍ଯ୍ୟରେ ଅନେକେ ଅସନ୍ତୋଷ ପ୍ରକାଶ କରିଥିଲେ । ଶୁଣିଲୁଁ, ଯେଉଁ ଛାତ୍ରମାନେ ତାଲାଚୋରି କାର୍ଯ୍ୟରେ ଲିପ୍ତ ହୋଇଥିଲେ, ସେମାନେ ଧୃତ ହୋଇଅଛନ୍ତି । ଗତ ସପ୍ତାହରେ ସେମାନଙ୍କର ପ୍ରଧାନ ନେତାକୁ ବହିଷ୍କୃତ କରି ଦେଇଅଛନ୍ତି ଓ ଆଉ ୯।୧୦ ଜଣ ଛାତ୍ରଙ୍କୁ ତଳ ଶ୍ରେଣୀକୁ ଓହ୍ଲାଇ ଦେଇଅଛନ୍ତି । ସାହେବ ଛାତ୍ରମାନଙ୍କ ବିରୁଦ୍ଧରେ କି ପ୍ରକାର ପ୍ରମାଣ ପାଇ ଏପରି ଦଣ୍ଡବିଧାନ କରିଅଛନ୍ତି, ତାହା ଆମ୍ଭମାନଙ୍କୁ ଜଣା ନାହିଁ । ବାଳକମାନେ ସର୍ବତ୍ର ଊଣା ଅଧିକ ଦୁଷ୍ଟ ବା ଚଞ୍ଚଳ ହୁଅନ୍ତି । ପ୍ରିନ୍ସିପାଲ ସାହେବ ଘ ୧୦।୨୫ ମିନିଟ ପୂର୍ବରୁ ପିଲାଙ୍କୁ ସ୍କୁଲ ଘରକୁ ଆସିବାକୁ ନ ଦେଇ ହତା ବାହାରେ ତାଲା ବନ୍ଦ କରିବାରୁ ପିଲାଏ ଖରାରେ କଷ୍ଟ ପାଇ ଯଦି ତାଲା ହରଣ କରିଥାନ୍ତି, ତାହା କିଛି ଏଡ୍‌ବେଡ଼ ଗୋଟାଏ ଗୁରୁତର ଦୋଷ ନୁହେ ଯେ ତହିଁ ନିମିତ୍ତ ପିନାଲକୋର୍ଡ଼ର ଫାଶିଦଣ୍ଡ ସ୍ୱରୂପ ବାଳକଙ୍କର ଇହକାଳର ଗତି ଏକାବେଳକେ ବନ୍ଦ କରାଯିବ !'' ''ଏକ

ଅପରାଧ ସକାଶେ ଥରେ ଅନ୍ଧାଧୁନ୍ଦି ସାନ ବଡ଼ ସମସ୍ତ ପିଲାଙ୍କୁ ଏକ ସପ୍ତାହ କାଳ କଏଦ କଲେ, ପୁଣି ଆପଣା ମନକୁ ସାବଧାନପୂର୍ବକ ଅନୁସନ୍ଧାନ କରି ସେହି ଅପରାଧ ନିମନ୍ତେ ଏକ ଜଣ ପିଲାକୁ ପ୍ରଧାନ ଦୋଷୀ ବୋଲି ବାହାର କରିଦେଲେ ଏବଂ ଆଉ କେତେକ ଜଣଙ୍କୁ ଡିଗ୍ରେଡ଼୍ କଲେ । ଯେଉଁ ଛାତ୍ର ବାହାରିଗଲା, ତାହାର ସର୍ବନାଶ ହେଲା, ଅଥଚ ତାହାର ଦୋଷ ଠିକ୍ ହୋଇଅଛି କି ନାହିଁ, ଏ କଥା ତାହାକୁ କିମ୍ବା ତାହା ଅଭିଭାବକଙ୍କୁ ଜଣାଇ ଦିଆଗଲା ନାହିଁ ।'' ଇତ୍ୟାଦି । କିନ୍ତୁ ଏ ପ୍ରକାର ଶାସନରେ ମଧୁବାବୁ ସାହେବଙ୍କ ସହିତ ଏକମତ ହୋଇପାରି ନ ଥିଲେ । ସେ ଅନେକ ସ୍ଥଳରେ ନ୍ୟାୟାନୁରୋଧରେ ଅଧ୍ୟକ୍ଷଙ୍କ ଆଦେଶ ସମ୍ପୂର୍ଣ୍ଣ ରୂପେ ପାଳନ କରି ପାରିଲେ ନାହିଁ । କିନ୍ତୁ 'ସମ୍ବଲପୁର ହିତୈଷିଣୀ'ର କଟକ ସମ୍ବାଦଦାତା କହନ୍ତି, ମଧୁବାବୁ ସେ ଶାସନ କାର୍ଯ୍ୟରେ ଲିପ୍ତ ଥିଲେ । ଉଭୟେ କଠୋର ଶାସକ ହେବାରୁ ଉଚ୍ଛୃଙ୍ଖଳ ଛାତ୍ରମାନଙ୍କର ଦୁଷ୍ଟବୁଦ୍ଧି ବରଂ ଉତ୍ତରୋତ୍ତର ବୃଦ୍ଧି ଲାଭ କରିବାକୁ ଲାଗିଲା ଏବଂ ସେହି ଦୂଷିତ ଆବର୍ତ୍ତରେ ପଡ଼ି ନିର୍ଦ୍ଦୋଷ ମଧୁବାବୁ ଯେ ଅଶାନ୍ତିରେ ପଡ଼ି କ୍ଷତିଗ୍ରସ୍ତ ହୋଇଥିଲେ, ତାହା ଉକ୍ତ ସମ୍ବାଦଦାତାଙ୍କ ପତ୍ରର ନିମ୍ନୋଦ୍ଧୃତ କତିପୟ ପଂକ୍ତିରୁ ବୁଝାଯିବ । ''ଦୁଇଜଣ ପ୍ରଧାନ ବ୍ୟକ୍ତି ଏପରି ହେବାରୁ ଉଚ୍ଛୃଙ୍ଖଳ ଛାତ୍ରମାନଙ୍କ ପକ୍ଷରେ ମହା ଅନର୍ଥର କାରଣ ହୋଇଅଛି । ବାର୍ଷିକ ପରୀକ୍ଷା ଉତ୍ତାରୁ ଅନେକ ଛାତ୍ର କ୍ଲାସ ଉଠି ନ ପାରିବାରୁ ହେଡ଼ମାଷ୍ଟରଙ୍କ ଉପରେ ବଡ଼ ରାଗାନ୍ୱିତ ହୋଇଥିଲେ ଏବଂ କୁର୍ଷାପୂର୍ଣ୍ଣ ବେନାମୀ ଚିଠି ବା ନୋଟିସ ଜାରି କରିଥିଲେ । ××× ତଥାପି ଦୁଷ୍ଟ ଛାତ୍ରମାନେ ସାହେବଙ୍କ ନିକଟରେ ଗୋଳମାଳ କଲେ । ତହୁଁ ସାହେବ ହେଡ଼ମାଷ୍ଟରଙ୍କ ସହିତ ପରାମର୍ଶ କରି ନିର୍ଦ୍ଦିଷ୍ଟ ସମୟ ପର୍ଯ୍ୟନ୍ତ ଫାଟକ ବନ୍ଦ କରିବାର ଆଦେଶ ଦେଲେ । କେହି କେହି ଦୁଷ୍ଟ ପିଲା ରାତ୍ରିରେ ଫାଟକର ଚାବି ଦୁଇଥର ଭାଙ୍ଗି ନେଇ ଗଲେ ଏବଂ ଦିନେ ପାଚେରୀରୁ ଖଣ୍ଡେ ଭାଙ୍ଗି ପକାଇଲେ । ପଚାରିବାରେ କେହି ମାନିଲେ ନାହିଁ । ଏଥିପାଇଁ ଅଧ୍ୟକ୍ଷ ସମସ୍ତ ପିଲାଙ୍କୁ ଏକ ସପ୍ତାହ ପ୍ରତିଦିନ ଅଧଘଣ୍ଟା ଲେଖାଏଁ କଏଦ ରହିବାର ଆଦେଶ ଦେଲେ । ଏଥିରେ ଦୁଷ୍ଟ ଛାତ୍ରମାନେ ଅଧିକ କୋପି ଯାଇ ବେନାମୀ ଚିଠିଦ୍ୱାରା ସର୍ବନାଶ କରିବାର ଧମକାଇଥିଲେ । କେତେକ ଦିନ ଉତ୍ତାରୁ ମଧୁବାବୁଙ୍କ ଗୁହାଳଘର ପାଞ୍ଚୋଟି ଗାଈ ସହିତ ଅତ୍ୟନ୍ତ ଶୋଚନୀୟ ରୂପେ ପୋଡ଼ିଗଲା ।'' ଉଲ୍ଲିଖିତ ବିବରଣୀରୁ ସ୍ପଷ୍ଟ ବୁଝାଯାଉଅଛି, କେବଳ କଠୋର ଶାସନ ଏ ଅନର୍ଥର ମୂଳ ନୁହେଁ । କେତେକ ଛାତ୍ରଙ୍କର ଦୁର୍ନୀତି ଏ ପ୍ରକାର ଅନର୍ଥର ମୂଳ । ତାହା ନ ହେଲେ କି ମଧୁବାବୁଙ୍କ ପରି ଚରିତ୍ରବାନ୍ ଅଦୋଷଦୂଷିତ ଶିକ୍ଷକଙ୍କୁ ଛାତ୍ରମଣ୍ଡଳୀରୁ ଏହି ପୁରସ୍କାର ମିଳିଥାନ୍ତା ! ଅବଶ୍ୟ ସେହି ଛାତ୍ରମାନେ ପଶ୍ଚାତ୍ ନିଜ ନିଜ ଭ୍ରମ ଓ ଦୋଷ

ଲାଗି ଅନୁତାପ କରିଥିବେ ଏବଂ ସେହି ତୀବ୍ର ଅନୁତାପ ସେମାନଙ୍କ ଚରିତ୍ରର ଉନ୍ନତି ବିଧାନ କରିଥିବ । ସେ ଯାହାହେଉ, ସ୍କୁଲର ଏହି ଶାସନପ୍ରସଙ୍ଗ ଘେନି ଉଭୟଙ୍କ ମଧ୍ୟରେ ମତାନ୍ତର ଓ ମନାନ୍ତର ହେଲା । ସାହେବ ସ୍କୁଲର କେତେକ ଛାତ୍ରଙ୍କୁ ଲଘୁ ଦୋଷରେ ଗୁରୁ ଦଣ୍ଡ ଦେବାକୁ ପ୍ରସ୍ତାବ କଲେ; କିନ୍ତୁ ହେଡ଼ମାଷ୍ଟର ମଧୁବାବୁ ଏ ପ୍ରକାର ନ୍ୟାୟବିଗର୍ହିତ କାର୍ଯ୍ୟ କରିବାକୁ ଆଦୌ ସମ୍ମତ ହେଲେ ନାହିଁ । ସେ ସାହେବଙ୍କ ପ୍ରସ୍ତାବରେ ପ୍ରତିବାଦ କରି ସ୍ପଷ୍ଟ କହିଲେ, 'ମୁଁ ଆପଣଙ୍କ ଆଦେଶ ମାନିବାକୁ ବାଧ୍ୟ ସତ, କିନ୍ତୁ ମୋହର ବିବେକ ଏହା କରିବାକୁ କହୁ ନାହିଁ ।' ଫଳତଃ ସାହେବ ତାହାଙ୍କୁ ଉତ୍ତମ ଶିକ୍ଷକ ବୋଲି ମାନିଥିଲେହେଁ ଅଧମ ଶାସକ ଜାଣି (He is a very good teacher, but weak disciplinarian.) ତାଙ୍କ ବିରୁଦ୍ଧରେ ଠିଆହେଲେ ଏବଂ ଏହାହିଁ ତାଙ୍କର ସ୍ଥାନାନ୍ତର ଗମନର କାରଣ ହେଲା । ମଧୁବାବୁ ପ୍ରାୟ ଦୁଇବର୍ଷ ହେଡ଼ମାଷ୍ଟରୀ କାର୍ଯ୍ୟ କରି ୧୮୯୩ ଅବ୍ଦର ଅଗଷ୍ଟ ମାସରେ ବାଲେଶ୍ୱର ଜିଲ୍ଲାର ଡେପୁଟୀ ଇନ୍‌ସ୍ପେକ୍ଟର ପଦରେ ନିଯୁକ୍ତ ହୋଇଗଲେ । ଏହି ବଦଳିରେ 'ଦୀପିକା' ତେତେବେଳେ ତଳଲିଖିତରୂପେ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ, ସେଥିରୁ ପାଠକମାନେ ସେକାଳର ଘଟନା ପ୍ରତ୍ୟକ୍ଷ କରିପାରିବେ । "ବାବୁ ମଧୁସୂଦନ ରାଓ ଏଠା କଲେଜିଏଟ ସ୍କୁଲର ହେଡ଼ମାଷ୍ଟର ହେବା ପୂର୍ବେ ବହୁକାଳ ଡେପୁଟୀ ଇନ୍‌ସ୍ପେକ୍ଟରୀ କାର୍ଯ୍ୟ କରିଥିଲେ । ନିରନ୍ତର ଭ୍ରମଣ ହେତୁ ସ୍ୱାସ୍ଥ୍ୟର ଅବନତି ଦେଖି ଆରାମରେ ରହିବା କାରଣ ହେଡ଼ମାଷ୍ଟରୀ ପଦ ଗ୍ରହଣ କଲେ । କିନ୍ତୁ ତାଙ୍କ ବଦଳିର ଗୋଟିଏ କାରଣ ଶୁଣି ବଡ଼ ଦୁଃଖିତ ହୋଇଅଛୁଁ ଓ ତାହା ସାଧାରଣ ଦୁଃଖର ବିଷୟ, ସନ୍ଦେହ ନାହିଁ । ସେ କାରଣ ଏହି କି ଏଠା ରେଭେନ୍‌ସା କଲେଜର ଅଧ୍ୟକ୍ଷ ହଲବାର୍ଡ଼ ସାହେବ ସ୍କୁଲବିଭାଗର ଛାତ୍ରଙ୍କୁ ଯେପରି ଅନ୍ୟାୟ ଦଣ୍ଡ ଦେଇ ଏବଂ ଯହିଁର ପ୍ରସଙ୍ଗ ଆମ୍ଭେମାନେ ଏଥିପୂର୍ବେ ଲେଖିଥିଲୁଁ, ତହିଁରେ ମଧୁବାବୁ ତାଙ୍କର ଆଶାନୁରୂପ ସାହାଯ୍ୟ ନ କରିବା ଏବଂ ଏଥିପାଇଁ ସେ ସ୍କୁଲ ଶାସନର ଯୋଗ୍ୟ ନ ଥିବା ଡାଇରେକ୍ଟରଙ୍କୁ ଜଣାଇବାରୁ ମଧୁବାବୁଙ୍କର ବଦଳି ହେଲା । ମଧୁବାବୁଙ୍କର ଅପରାଧ ଏହି କି, ସାହେବ କେହି କେହି ପିଲାଙ୍କୁ ନିଷ୍ଠୁର ଦଣ୍ଡ ଦେବାକୁ ଆଦେଶ କଲେ, ମଧୁବାବୁ ନ୍ୟାୟର ଅନୁରୋଧରେ ସମ୍ପୂର୍ଣ୍ଣରୂପେ ରକ୍ଷା କରିବାକୁ ଅକ୍ଷମ ହେଲେ ଏବଂ ଯେତେ ପିଲାଙ୍କ ପ୍ରତି ସାହେବ ଅକାରଣ ସନ୍ଦେହ କଲେ, ମଧୁବାବୁ ତାହା ନ କରି ଅଳ୍ପ ପିଲା ଦୋଷୀ ଥିବାର କହିଲେ । ମଧୁବାବୁ ଛାତ୍ରଙ୍କ ଅନ୍ୟାୟ ଦଣ୍ଡର ସହାୟତା ନ କରି ସୁବିଚାରପୂର୍ବକ ଶାସନ କରିବାକୁ ଚେଷ୍ଟା କରିବାରୁ ନିନ୍ଦା ପାଇ ବଦଳି ହେଲେ, ଏହା କି ସାମାନ୍ୟ ପରିତାପର ବିଷୟ ?" ୮-୭-୧୮୯୩ ।

କଟକରେ ଥିବାବେଳେ ସେ 'ଋଷିପ୍ରାଣେ ଦେବାବତରଣ' କବିତା ଏବଂ 'ଉତ୍କଳ ଭାଷା' ଶୀର୍ଷକ ପ୍ରବନ୍ଧ ଲେଖିଥିଲେ । ପ୍ରଥମଟି 'ଉତ୍କଳପ୍ରଭା'ର କଳେବରକୁ ଉଦ୍ଭାସିତ କରିଥିଲା ଏବଂ ଦ୍ୱିତୀୟଟି 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ପରେ କେତେକ ବନ୍ଧୁଙ୍କ ଅନୁରୋଧରେ ସେ ଦିଓଟିକୁ ବଙ୍ଗଳାରେ ଅନୁବାଦ କରି ବଙ୍ଗଳାର ପ୍ରାଚୀନ ମାସିକ ପତ୍ର 'ନବ୍ୟଭାରତ'ରେ ପ୍ରକାଶ କରିଥିଲେ । 'ଋଷିପ୍ରାଣେ ଦେବାବତରଣ' କବିତା ବଙ୍ଗର ଅନେକ ସୁଲେଖକଙ୍କ ମୁଖରେ ପ୍ରଶଂସା ଲାଭ କରିଥିଲା । ବଙ୍ଗର ବରେଣ୍ୟ କବି ରବୀନ୍ଦ୍ରନାଥ ଠାକୁରଙ୍କ ସମ୍ପାଦିତ 'ସାଧନା' ପତ୍ରିକାରେ ତେତେବେଳେ ତାହାର ଯେଉଁ ସମାଲୋଚନା ହୋଇଥିଲା, ସେଥିରୁ ସ୍ୱୟଂ ରବୀନ୍ଦ୍ରଙ୍କ ମୁଖର ଗୋଟିଏ ପଂକ୍ତି ପାଠକମାନଙ୍କୁ ଏଠାରେ ଉପହାର ଦେଉଅଛୁଁ । ''ଆମରା ପ୍ରାଚୀନ ତପୋବନେ ଋଷିକଣ୍ଠେର ଧ୍ରୁପଦ ରାଗିଣୀ ଶୁନିତେ ପେଲାମ୍ ।'' ଯଥାର୍ଥରେ ସେ କବିତାର ମହୋଦାର ଚିତ୍ର ହୃଦୟରେ ସ୍ଥାପନ କରିବାକୁ ଆମ୍ଭେମାନେ ନିତାନ୍ତ ଅପାତ୍ର ଏବଂ ଅକିଞ୍ଚନ । ମଧୁବାବୁ ଯେତେବେଳେ ବାଲେଶ୍ୱରକୁ ଗଲେ, ତେତେବେଳେ ଉତ୍କଳ ସାହିତ୍ୟାକାଶରେ ଅକସ୍ମାତ୍ 'ଇନ୍ଦ୍ରଧନୁ' ଓ 'ବିଜୁଳି'ର ଆବିର୍ଭାବ ହେଲା, ସାହିତ୍ୟଜଗତରେ ଏକ ଦୁର୍ଦ୍ଦିନ ଉପସ୍ଥିତ ହେଲା ବୋଲିବାକୁ ହେବ । 'ଭଞ୍ଜୀୟ ଆନ୍ଦୋଳନ' ନାମଧାରୀ ଏହି ସାହିତ୍ୟିକ ବିପ୍ଳବ ଉତ୍କଳସାହିତ୍ୟକ୍ଷେତ୍ରରେ କି ପରିମାଣରେ ଉପକାର ବା ଅପକାର କରିଅଛି, ତାହା ଭାଷା ଓ ସାହିତ୍ୟର ଇତିହାସ ଲେଖକ ନିର୍ଦ୍ଦେଶ କରିବେ । ଏଠାରେ ତାହା ନିଷ୍ପ୍ରୟୋଜନ । ଅବଶ୍ୟ ଏ ଘଟନା ଅନେକ ପାଠକଙ୍କୁ ଜଣା ଅଛି । ତଥାପି ଯୁବକ ପାଠକମାନଙ୍କ ଲାଗି ଏଠାରେ ତାହାର କିଞ୍ଚିତ ଆଭାଷ(ସ) ଦେବା ସଙ୍ଗତ ମନେ କରୁଅଛୁଁ । ମୟୂରଭଞ୍ଜାଧିପତି ସ୍ୱର୍ଗତ ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ସମୁନ୍ନତ ରାଜସିଂହାସନରେ ଆରୋହଣ କରି ଉତ୍କଳ ସାହିତ୍ୟର ଉନ୍ନତିକଳ୍ପେ 'ଉତ୍କଳପ୍ରଭା' ନାମକ ଏକ ସାହିତ୍ୟିକ ମାସିକ ପତ୍ର ସ୍ୱରାଜଧାନୀରୁ ପ୍ରଚାର କରିବାକୁ ପ୍ରୟାସୀ ହୋଇ ଉତ୍କୃଷ୍ଟ ପ୍ରବନ୍ଧଲେଖକଙ୍କ ଉତ୍ସାହ ନିମିତ୍ତ ଯଥେଷ୍ଟ ପୁରସ୍କାର ଘୋଷଣା କଲେ । ସ୍ୱର୍ଗତ ରାଧାନାଥ, ମଧୁସୂଦନ, ଚତୁର୍ଭୁଜ, ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ (ସମ୍ପାଦକ) ବ୍ୟତୀତ ଶ୍ରୀଯୁକ୍ତ ମହାରାଜ ବୈକୁଣ୍ଠନାଥ ଦେ, ଫକୀରମୋହନ ସେନାପତି, ଗୌରୀଶଙ୍କର ରାୟ ଏବଂ ତିନି ଜିଲ୍ଲାର ଡେପୁଟୀ ଇନ୍‌ସ୍ପେକ୍ଟରଗଣ ପ୍ରକାଶିତ ପ୍ରବନ୍ଧାବଳୀର ଯୋଗ୍ୟତା ପରୀକ୍ଷା ନିମିତ୍ତ ନିର୍ବାଚିତ ହୋଇଥିଲେ । ତାହାରି ଫଳରେ ଏଥିରେ ଉତ୍କଳର ଯୋଗ୍ୟତମ ଲେଖକମାନଙ୍କର ଉତ୍କୃଷ୍ଟ ପ୍ରବନ୍ଧମାନ ପ୍ରତିଫଳିତ ହୋଇଥିଲା । କି ପ୍ରକାର ପ୍ରବନ୍ଧମାନ ସେଥିରେ ସ୍ଥାନ ପାଇଥିଲା,

ତାହାର ଆଉ ଅଧିକ ପରିଚୟ ନ ଦେଇ ଏତିକି କହିଲେ ଯଥେଷ୍ଟ ହେବ ଯେ, କବିବରଙ୍କ 'ଚିଲିକା' ଓ 'ମହାଯାତ୍ରା' ଏବଂ ରାମଶଙ୍କର ବାବୁଙ୍କ 'ବିବାସିନୀ' ଏଥିରେ ସର୍ବପ୍ରଥମେ ପ୍ରଚାରିତ ହୋଇଥିଲା । ପ୍ରାଚୀନ ଓ ଆଧୁନିକ ସାହିତ୍ୟର ଆଲୋଚନା ତାହାର ଗୋଟିଏ ପ୍ରଧାନ ଅଙ୍ଗ ଥିଲା । ତେଣୁ ପ୍ରଥମ ସଂଖ୍ୟାରୁ (୧୮୯୧ର ବୈଶାଖ ମାସ) ପ୍ରାଚୀନ ସାହିତ୍ୟର ଆଲୋଚନାରେ ମହାକବି ଉପେନ୍ଦ୍ରଭଞ୍ଜଙ୍କ ପ୍ରତି ନିମ୍ନୋକ୍ତ ଭାବରେ କଟାକ୍ଷ ଦେଖାଗଲା । ''ଭଞ୍ଜ ପ୍ରଭୃତି ଉଚ୍ଚଦରର କବି ଥିଲେହେଁ ଆଦିରସରୂପ ହଳାହଳ ଦ୍ୱାରା ଗ୍ରନ୍ଥମାନ ଏପରି ଦୂଷିତ ହୋଇଅଛି ଯେ, ତାହା ସବୁ ସମାଜର ବୈଗୁଣ୍ୟ ଜନ୍ମାଇବାକୁ ଏକା ସକ୍ଷମ ।'' ଏ ପ୍ରକାର ଆଲୋଚନାର ପ୍ରତିବାଦ ତେତେବେଳେ 'ଉତ୍କଳ ଦୀପିକା'ରେ ଘନ ଘନ ପ୍ରକାଶିତ ହେଲା । କିନ୍ତୁ ଏହି ବାଦ ପ୍ରତିବାଦ ଅଳ୍ପକାଳ ମଧ୍ୟରେ ଏପରି ବୃଦ୍ଧି ଲାଭ କଲା ଯେ, ତାହା ପ୍ରୋକ୍ତ ସମ୍ବାଦପତ୍ର ପକ୍ଷରେ ସମ୍ଭାଳିବା କଠିନ ହେଲା । ଅତଏବ ସେ ଭାର ସ୍ୱତନ୍ତ୍ର ବହନ କରିବାପାଇଁ ଭଞ୍ଜ ପ୍ରମୁଖ ପ୍ରାଚୀନ କବିଙ୍କ ସପକ୍ଷରେ କଟକରୁ 'ଇନ୍ଦ୍ରଧନୁ' ନିମ୍ନୋକ୍ତ ପ୍ରକାର କୈଫିୟତ୍ ସହ ପ୍ରକାଶିତ ହେଲା । ''ଉତ୍କଳ ସାହିତ୍ୟର ଘୋର ବାଦ ପ୍ରତିବାଦ ଆଜିକାଲି ଲାଗିଥିବାରୁ ଇନ୍ଦ୍ରଦେବ ଏହାକୁ ପଠାଇଅଛନ୍ତି । ବିବାଦଟା ମହାକବି ଉପେନ୍ଦ୍ର ଭଞ୍ଜଙ୍କୁ ଘେନି । ସେ ସୁଧାମୟ କାବ୍ୟ ରଚନା ଦ୍ୱାରା ଉତ୍କଳରେ ଅମରତ୍ୱ ଲାଭ କରିଅଛନ୍ତି, ତାଙ୍କ ନିନ୍ଦାରେ ନିଶ୍ଚେ ଅମରରାଜ କ୍ରୁଦ୍ଧ ହେବେ । ଏଥିରେ ବିଚିତ୍ର କିଛି ନାହିଁ । ଇନ୍ଦ୍ରଧନୁ ନିନ୍ଦୁକମାନଙ୍କ ଭ୍ରମ ଦୂର କରି ଜାତୀୟ ଗୌରବ ରକ୍ଷା କରିବାକୁ ସମର୍ଥ ହେବ—ଏହାହିଁ ଆମ୍ଭମାନଙ୍କ କାମନା ।'' ଇନ୍ଦ୍ରଧନୁ ପ୍ରକାଶିତ ହେବାରୁ ତାହା ପ୍ରତିକୂଳରେ ବାମଣ୍ଡାରୁ 'ବିଜୁଳୀ' ନାମକ ପତ୍ରିକା ବାହାରିଲା । ଏହିରୂପେ ଆଧୁନିକ ଓ ପ୍ରାଚୀନର ପକ୍ଷପାତୀ ଦୁଇଦଳ ଉତ୍ଥିତ ହୋଇ ପଛେ ଏତେ ଉତ୍ତେଜିତ ହୋଇପଡ଼ିଲେ ଯେ ସାହିତ୍ୟିକ ବାଦ ପ୍ରତିବାଦ କରୁ କରୁ ପରେ ପୁଣି ବ୍ୟକ୍ତିଗତ ନାନା ପ୍ରକାର କୁତ୍ସା କଟୂକ୍ତିରେ କେବଳ ପ୍ରବନ୍ଧମାନ ପୂର୍ଣ୍ଣ କଲେ ।* ଏ ପ୍ରକାର ଲେଖାରେ କେତେ ଲେଖକଙ୍କ ଲେଖନୀ ମୁଣ୍ଡା ହୋଇଗଲା—ନୀତିକି କିଛିକାଳ ପାଇଁ ନିର୍ବାସନ ଦଣ୍ଡ ହୋଇଗଲା ! ଏସବୁ ପ୍ରତ୍ୟକ୍ଷ କରି ନୀତିଜୀବିମାନେ ନିତାନ୍ତ ଚକିତ ଓ ମର୍ମାହତ ହୋଇ ଦମନର ପ୍ରତିକାର ଚିନ୍ତା କରିବାକୁ ଲାଗିଲେ । ଏହି ଶ୍ରେଣୀର ଆଦର୍ଶ ଆମ୍ଭମାନଙ୍କ

* ଜଣେ ଦୁଇ ଜଣ ଏହି ଅଗ୍ନି ଜାଳି ଦେଇଥିଲେ ସତ୍ୟ, କିନ୍ତୁ ଏହାକୁ ନିଭାଇବା ପାଇଁ ବହୁଲୋକଙ୍କର ବହୁକାଳ ଚାଲି ଯାଇଥିଲା । ଏ ବିପ୍ଳବର ସବିସ୍ତାର ବର୍ଣ୍ଣନା ଅନ୍ୟ ଚରିତରେ ପ୍ରକାଶ କରିବାକୁ ମାନସ ଥିବାରୁ ଏଠାରେ ଏତିକିରେ ନିବୃତ୍ତ ହେଉଅଛୁଁ ।

ମଧୁସୂଦନ ତେତେବେଳେ କୌଣସି ପକ୍ଷରେ ଲିପ୍ତ ନ ଥାଇ 'ମୁରାରେଃ ତୃତୀୟଃ ପନ୍ଥା' ନୀତିରେ ତୃତୀୟ ପକ୍ଷସ୍ୱରୂପ ବାଲେଶ୍ୱରଠାରେ ନୀରବ ଥିଲେହେଁ ଆଉ ସମ୍ଭାଳି ନ ପାରି ସେହି ଉତ୍ତରଳ ଜଳରେ ଗୋଟିଏ ତୈଳବିନ୍ଦୁ ନିକ୍ଷେପ କରିଦେଲେ । ସେହି ତୈଳବିନ୍ଦୁଟି ତେତେବେଳେ ଉତ୍ତରଳ ଭାବ ଦମନର ଔଷଧ ହୋଇଥିଲେ ହେଁ ବର୍ତ୍ତମାନ ଅବଶ୍ୟ ପାଠକଗଣଙ୍କର କର୍ଣ୍ଣରସାୟନ ହେବ ।

''ସାବାସ୍ ସାହିତ୍ୟଚର୍ଚ୍ଚା ସାବାସ୍ ସାବାସ୍ !''
ଭଲା ଅଲାଜୁକ ଲେଖକେ ବୃଥା ଭିଆଇ କଳି,
ଅମ୍ଳାନ ବଦନେ ପବିତ୍ର ନୀତି ଚରଣେ ଦଳି,
ବାହାଦୂରି ନେବା ଆଶୟେ ହୋଇଅଛ ବାହାର,
ବାହାପିଆ କୁଳଭୂଷଣ, ତୁମ୍ଭ ପଦେ ଜୁହାର !
ଦୁଷ୍ଟବାଣୀ କୋଠ ଭଣ୍ଡାରୁ ବାଛି ଅବାଚ୍ୟ କଥା
କି ଖେଳ ଖେଳୁଛ ଲେଖକେ ଧନ୍ୟ ସ୍ୱରୁଚି ପ୍ରଥା !
ହ୍ରୀମତୀ ପ୍ରକୃତିଦେବୀର ଲଜ୍ଜା-ବସନ ଫେଇ
ମାରାତ୍ମକ ଚିତ୍ର ଚିତ୍ରୁଛ ମାର-ତୂଳିକା ଦେଇ ।
ରଞ୍ଜୁଅଛ ଆହା କି ରଙ୍ଗେ ସେହି ବୀଭତ୍ସ ଚିତ୍ର !
ଉତ୍କଳ ସାହିତ୍ୟ ହେଲା କି ଏତେଦିନେ ପବିତ୍ର !
'ଭୂଷଣ'[୧] ନାମରେ ଦୂଷଣ କେହି ଅଟ ମାୟାବୀ,
କେଶରି ଚର୍ମରେ ରାସଭ କର ଭୀଷଣ ଦାବୀ !
ଗର୍ଜ୍ଜନ ତର୍ଜ୍ଜନ କରିଣ ବହି ସୁରୁଚିବାନା
କୁରୁଚି-ନର୍ଦ୍ଦମା-କର୍ଦ୍ଦମେ ପଡ଼ି ଗଡୁଛ ସିନା !
'ଯୁବରାଜ'[୨] ଶୁଭେ ବିରାଜି ଭଞ୍ଜକାବ୍ୟକୁଞ୍ଜରେ
କି କ୍ରୀଡ଼ା କରୁଛ ସୁଭଗ, ବ୍ରୀଡ଼ାଛଡ଼ା ଖଞ୍ଜରେ !
ବ୍ରଜରାଜ ପ୍ରାୟେ କାହାର ଅଙ୍କ ଉଜ୍ଜଳି ଭଲେ
ଭଣ୍ଡ-ଭାଗବତ ଭାଷୁଛ ମିଶି ରସିକପଲେ !

(୧) 'କବିଭୂଷଣ' ନାମଧାରୀ ଜଣେ ଲେଖକ ।
(୨) 'ଯୁବରାଜ' ମୁଖାଧାରୀ ଲେଖକ ।

ମାଙ୍କଡ଼ସା ପ୍ରାୟେ କେହି ବା ନିଜ ଜାଲେ ଜଡ଼ିତ,
ଜଟିଳ କୁଟିଳ ଗୋଲକ-ଧନ୍ଦା(୧) ରଚି ତ୍ୱରିତ,
କହୁଅଛ 'ଦେଖ ଦେଖରେ ପୂତ କାମାଖ୍ୟାପୁରୀ,
ମେଣ୍ଢା ହୋଇଯାଅ ଭେଣ୍ଡାଏ ଦେଖି ବ୍ୟାଖ୍ୟା ଚାତୁରୀ !'
ହଉ ହଉ ମାତି ବୀଭତ୍ସେ ଯାଅ ଯାଅ ହେ ଢାଳି
ମଳ ମୂତ୍ର କ୍ଳେଦ କୁତ୍ସିତ ସୁଖେ ବଜାଇ ତାଳି !
ଲଜ୍ଜା ଭକ୍ତି ପୁଣି ସାରଲ୍ୟ ଫିଙ୍ଗିଦେଇଣ ଦୂରେ
'ହିପ୍ ହିପ୍ ହୁର୍‌ରେ' ଗାଆରେ କଳିଯୁଗିଆ ଶୂରେ !
ଭାବୀ ବଂଶଧରନିକରେ ନିତ୍ୟ ଆନନ୍ଦଭରେ
ତୁମ୍ଭ ନର୍ଦ୍ଦମାର କର୍ଦ୍ଦମ ପାଣି ପିଆଅ ଖରେ !
ତୁଳସୀ ସମୂଳେ ଉପାଡ଼ି ରୋପ ବିଛୁଆତିକି,
ଦୁଇପତ୍ର ବେଲୁ କୁଣ୍ଢାଇ ହେବ ସିନା ଏତିକି !
ନଦୀ ପ୍ରସ୍ରବଣ ମୂଳକୁ ଫିଙ୍ଗ ନର୍ଦ୍ଦମାପଙ୍କ
କାଳେ ସ୍ରୋତ ହେବ ନିର୍ମଳ ହୃଦେ ଏହି ଆତଙ୍କ !
ମୁରାରି ଭଣଇ, ସ୍ୱର୍ଗକୁ ଜିଣି ଯା ଗରୀୟସୀ,
ଜନ୍ମଭୂମି ପୁଣି ଜନନୀ ତାଙ୍କ ପାଦ ପରଶି ।
ଦେଉଅଛି ମୁହିଁ ଦୋହାଇ ତାଙ୍କ ପବିତ୍ର ନାମେ,
ପୁଣ୍ୟ ଶ୍ରୀ ହ୍ରୀ ପୁଣି ଭକତି ରହୁ ସାହିତ୍ୟଧାମେ ।

(ବାଲେଶ୍ୱର ସମ୍ବାଦବାହିକାରୁ ଉଦ୍ଧୃତ ।)

*ତା ୨୨।୮। ୧୮୯୩। – ମୁରାରି*

ପ୍ରିୟ ପାଠକଗଣ, ଦ୍ୱିବାର ପାଠ କରି ଦେଖନ୍ତୁ, ଏହା ଯଥାର୍ଥ ଉତ୍ତରଳ ଜଳରେ ତୈଳବିନ୍ଦୁ ନିକ୍ଷେପ କି ନା ? କିପରି ମୁଦ୍‌ଗର ପ୍ରହାର ! ମଧୁ ବାବୁ କେବଳ ଗମ୍ଭୀର ଭାବର ଲେଖକ ନୁହନ୍ତି–ସ୍ଥଳ ଦେଖି ଛଳଶ୍ଳେଷରେ କିପରି 'ଠୋକର' ଦେବାକୁ ହୁଏ, ତାହା ସେ ଉତ୍ତମ ଜାଣନ୍ତି । ଏହି ଠୋକର ଖାଇ ଥୋକେ ଲେଖକ ଅବନତ ମସ୍ତକ ହୋଇଥିଲେ । ଲେଖକବିଶେଷଙ୍କ ପ୍ରତି ତାଙ୍କର ପ୍ରଯୁକ୍ତ ଉକ୍ତି କିପରି ମର୍ମସ୍ପର୍ଶିନୀ ! ଏହା

(୧) 'ଗୋଲକଧନ୍ଦା' ବା ଗୋ–ଇନ୍ଦ୍ରଧନୁର ଜଣେ ପ୍ରଧାନ ଲେଖକ ।
(ଏହି ଗୋଲକଧନ୍ଦା ବା ଗୋ ଗୋପାଳବଲ୍ଲଭ ଦାସ ବୋଲି ଅନୁମାନ କରାଯାଏ । –ସଂ.)

ବ୍ୟତୀତ ସେ ବାଲେଶ୍ୱରରେ ଥାଇ ଉକ୍ତ ପ୍ରସଙ୍ଗକୁ ଘେନି 'ଭଣ୍ଡରସାୟନ' ନାମକ ଏକ କାବ୍ୟର ରଚନା ଆରମ୍ଭ କରିଥିଲେ । ତାହାର ପ୍ରଥମ ସର୍ଗ 'ଓଡ଼ିଆ ଓ ନବସମ୍ବାଦ'ରେ ପ୍ରକାଶିତ ହୋଇଥିଲା । ଦ୍ୱିତୀୟ ସର୍ଗ ପ୍ରକାଶିତ ହୋଇ ନାହିଁ, କି ପ୍ରକାଶିତ ହେବାର ବୋଧହୁଏ ପ୍ରୟୋଜନ ହୋଇ ନାହିଁ । ଏଠାରେ ଅଧିକ ପରିଚୟ ମଧ ଅନାବଶ୍ୟକ । ତାହାଙ୍କ ରଚିତ 'ଭଣ୍ଡରସାୟନ' କାବ୍ୟର ନିମ୍ନୋଦ୍ଧୃତ ପ୍ରାରମ୍ଭିକ ସର୍ଗଟି ପାଠ କଲେ ପାଠକମାନେ ସେ ଘଟନାର ଅତି ଉତ୍ତମ ପରିଚୟ ଲାଭ କରିବେ ।

ଉତ୍କଳ ସାହିତ୍ୟ କ୍ଷେତ୍ରେ ଲାଗିଛି ସମର
ଅବ୍ଦବ୍ୟାପୀ ଶବ୍ଦମୟ ମହାଭୟଙ୍କର ।
କୁକ୍ଷଣେ ସ୍ୱରୁଚିଧ୍ୱଜୀ ଲାଲାଜୀ* ଭୀଷଣ
ମନ୍ତ୍ର-ପରତନ୍ତ୍ର ରଣ-ରଥି-ବିଚକ୍ଷଣ,
ଭଞ୍ଜକୀର୍ତ୍ତି-ବିଭଞ୍ଜନ-ବ୍ୟାପାର-ପ୍ରୟାସୀ,
ସମରପ୍ରାଙ୍ଗଣେ ରଙ୍ଗେ ଦେଖାଦେଲେ ଆସି ।
ବଜାଇଲେ ନୀତି-ଭେରୀ ଗରଜି ଭୈରବେ,
ଚକିତେ ଗୋଲକଧନ୍ଦା ଶୁଣିଲେ ସେ ରବେ ।
ବୃଷଭ ଗର୍ଜନ ଶୁଣି ବୃଷଭ ଯେସନ,
ପୁଙ୍ଗବ ଗୋଲକଧନ୍ଦା ଗରଜି ତେସନ
ମିଳିଲେ ନାଛୋଡ଼ବନ୍ଦା ସମରଚତ୍ୱରେ,
ଏହିରୂପେ ବାକ୍ୟଯୁଦ୍ଧ ଉପୁଜିଲା ଖରେ ।
ରେରେକାର ଶବ୍ଦେ ଧନ୍ଦା ବୋଇଲେ ସକୋପେ,
ସୂଚ୍ୟଗ୍ରପ୍ରମାଣ ଦୋଷ ଭଞ୍ଜେ ଯେ ଆରୋପେ,
ସେ ଉତ୍କଳକୁଳାଙ୍ଗାର ମୂଢ଼ ଅବିବେକ,
ନ ଜାଣଇ ନିଷ୍କଳଙ୍କ ଭଞ୍ଜକବି ଟେକ ।
ତୁ କି ଜାଣିବୁ ରେ ଲାଲା ଉପେନ୍ଦ୍ର ଗୌରବ,
ପୁଂସପୁଂସୀମଣିଙ୍କର ପୀରତି ସୌରଭ ?

* ୰ ଲାଲା ରାମନାରାୟଣ ରାୟଙ୍କ ପ୍ରଥମଲିଖିତ ସମାଲୋଚନା ପ୍ରବନ୍ଧରୁ ଏ ଅଗ୍ନିଜାତ ।

ଆରେ ଲାଲା ରାୟ* ଚେଲା ! ହୁଅ ସାବଧାନ,
ନୋହିଲେ ହୋଇବ ଲଙ୍କାକାଣ୍ଡର ବିଧାନ ।

ଥାଇ ବୋଇଲେ ଲାଲାଜୀ, ଆରେ ଧନ୍ଦାସୁର,
ଅଲାଜୁକ ମାରଣିଷ୍ୟ ବିଷ-ବୀଜାଙ୍କୁର !

ରେ ଅନ୍ଧ ଗୋଲକଧନ୍ଦା, ଦେଖିଛୁ କି ଫେଡ଼ି
ରୌରବପୂରିତ ଭଞ୍ଜଗୌରବର ପେଡ଼ି ?
ଦେଖିଥିଲି ଥରେ ବସ୍ତ୍ର ନାସିକାରେ ଗୁଞ୍ଜି
ପୁଂସ ପୁଂସୀ ଭିଡ଼ାଭିଡ଼ି ଭଞ୍ଜକାବ୍ୟ ପୁଞ୍ଜି !
ନାଗର-ବିଲୁଆଙ୍କର ହୁକେ ହୁଁ ଶବଦ,
ନାଗରୀ-କୁକ୍କୁରୀଙ୍କର ଇଷି ଇଷି ପଦ,
ଆଞ୍ଚୁଡ଼ାଆଞ୍ଚୁଡ଼ି ପୁଣି କାମୁଡ଼ାକାମୁଡ଼ି,
ପରସ୍ପର ଚଟାଚଟି ପୁଣି ଗଡ଼ାଗଡ଼ି ।
ଏ ବୀଭତ୍ସ ବ୍ୟାପାରର କ୍ଳେଦମୟ ଗନ୍ଧ
ଅସୁର ନିକଟେ ସିନା ଅଟଇ ସୁଗନ୍ଧ !

ଦୁର୍ଯ୍ୟୋଧନ ପ୍ରାୟେ ମାନୀ ଧନ୍ଦା ମହାବୀର
ଜର୍ଜର ଦାରୁଣ ରୋଷେ ବୋଲେ ଭୀମ ଗିର,
ଆରେ ଲାଲା ଅବିନୀତ ! ଏଡ଼େ ତୋ ବଡ଼ାଇ
ରହ ରହ କ୍ଷଣେ, ଗର୍ବ ଦେବି ତୋ ଛଡ଼ାଇ ।
ଭଞ୍ଜଶିଷ୍ୟଗଣେ ଯେବେ ଶୁଣିବେ ତୋ କଥା,
ତୁ କି ଛାର, ନ ରହିବ ତୋର ଗୁରୁ ମଥା !

ଏଥୁଅନ୍ତେ ପରସ୍ପରେ ଚାହିଁ କଟମଟେ
ସୁମରିଲେ ଯେଝା ମିତ୍ରେ ଏ ମହାସଙ୍କଟେ ।
ସ୍ମରଣ ମାତ୍ରକେ ମିତ୍ରେ ପତ୍ରିକାକ୍ଷେତ୍ରରେ
ଗୋଲକା ଲାଲକାଶ୍ଚୈବ ମିଳିଲେ ସତ୍ୱରେ ।
ଧର୍ମକ୍ଷେତ୍ରେ କୁରୁକ୍ଷେତ୍ରେ ଯେସନ ଦ୍ୱାପରେ
କୌରବାଃ ପାଣ୍ଡବାଶ୍ଚୈବ ପ୍ରଚଣ୍ଡ ସମରେ ।

* ସ୍ୱର୍ଗୀୟ କବିବର ରାଧାନାଥ ରାୟ ।

ଲାଗିଲା ମନ୍ତ୍ରଣା ତହୁଁ ଉଭୟ ଶିବିରେ,
ଯୁଝିବେ ଏ ମହାଯୁଦ୍ଧେ କେଉଁ କେଉଁ ବୀରେ ।
କି ଅସ୍ତ୍ର ପ୍ରୟୋଗେ ହେବ ରିପୁ ପରାଭବ,
କି କୌଶଳେ ଜିଣାଯିବ ଏ ମହା ଆହବ ।
ଗୋଲକ ଶିବିରେ ଲାଗିଥିଲା କୋଳାହଳ,
କିନ୍ତୁ ଏ କି ସହସା ଯେ ହୋଇଲା ନିଶ୍ଚଳ ।
ସମ୍ମୁଖେ ହୋଇଲେ ଉଭା ଛଇଳାମଣିର
ଭ୍ରୂର ସମ ଇନ୍ଦ୍ରଧନୁ ହସ୍ତେ ଧରି ବୀର ।
ଆଦିରସ-ରସାତଳ-ଅତଳ-ବିତଳ-
ମନ୍ଥନକୁଶଳ ଅଭିନବ ଆଖଣ୍ଡଳ,
ପୀରତିଆ ନାମେ ଶୂର ଭଞ୍ଜ-ଅନ୍ତେବାସୀ,
ଉଲ୍ଲାସେ କହଇ, "ଦେଖ ଯୋଧବୃନ୍ଦେ ଆସି,
ମନ୍ତ୍ରପୂତ ଏହି ଧନୁ କଟାକ୍ଷସଙ୍ଗତ
ବ୍ୟାଖ୍ୟାଶରେ ହେଲେ ଯୁକ୍ତ ଜିଣେ ତ୍ରିଜଗତ ।"
ଦର୍ଶନେ ଅବାକ ହୋଇ କ୍ଷଣେ ଯୋଧଚୟ
ଆଶା ଆନନ୍ଦରେ ମାତି ବୋଲନ୍ତି ନିର୍ଭୟ ।
ପୀରତିଆରୂପୀ ଇନ୍ଦ୍ର ଧନ୍ୟ ଧନୁର୍ଦ୍ଧର !
ହେଲୁଁ ଆଜିଠାରୁ ସର୍ବେ ତୁମ୍ଭ ଅନୁଚର,
ଯୋଗାଇବୁଁ ମୁହୁର୍ମୁହୁଃ ବ୍ୟାଖ୍ୟାରୂପ ଶର ।

ତେଣେ ଉପୁଜିଲା ତ୍ରାସ ଲାଲା ଶିବିରରେ
ଧନୁ ଆସ୍ଫାଳନ ଦେଖି ବିପକ୍ଷ ଦଳରେ ।
କି ହେବ କି ହେବ ବୋଲି ପଡ଼ିଗଲା ରଡ଼ି,
ଶର୍ମା ନାମେ ମର୍ମାନ୍ୱେଷୀ ପକାଇଣ ଖଡ଼ି
ବୋଇଲେ ସେ ଆଶୁଦେବ ବିନା ନାହିଁ ଗତି,
ଶରଣ ପଶ ହେ ସର୍ବେ ଯାଇ ତାଙ୍କ କତି ।
ଶରଣବତ୍ସଳ ଦେବ ସ୍ମରଣମାତ୍ରକେ
ଉପସ୍ଥିତ ହେଲେ ଆସି ଲାଲାଙ୍କ କଟକେ ।

ବୋଇଲେ, "ଦେଖ ଏ ଅସ୍ତ୍ର ବିଜୁଳି ସୁନ୍ଦର,
ଅନୁଗତ ଯାର ନିତ୍ୟ ବଜ୍ର ଭୟଙ୍କର,
ବିଜୁଳିର ଉପହାସ ସଙ୍ଗେ ବଜ୍ରନାଦୀ
ଗୋଟାକେତେ ଭାଷ୍ୟ ଘେନି ହୁଅ ହେ ବିବାଦୀ ।"
ଆହ୍ଲାଦେ ଗରଜି ତହୁଁ ରୁଚିଧ୍ୱନୀ ବୀରେ
ହାସ୍ୟଭାଷ୍ୟରଙ୍ଗେ ତହୁଁ ମାତିଲେ ଅଧୀରେ ।
ଇନ୍ଦ୍ରଧନୁ ବ୍ୟାଖ୍ୟା ପୁଣି ବିଜୁଳିର ଭାଷ୍ୟ
ପରସ୍ପର ଯୁଦ୍ଧଫଳ କ୍ରମଶଃ ପ୍ରକାଶ୍ୟ ।

୫

ମଧୁସୂଦନ ବାଲେଶ୍ୱରରେ କେତେକ ମାସ ମାତ୍ର ଡେପୁଟି ଇନ୍ସପେକ୍ଟର କାର୍ଯ୍ୟ କରିଅଛନ୍ତି, ଏହି ସମୟରେ କଟକ ଟ୍ରେନିଙ୍ଗ ସ୍କୁଲର ହେଡ଼ମାଷ୍ଟର ଶ୍ରୀଯୁକ୍ତ ଦ୍ୱାରିକାନାଥ ଚକ୍ରବର୍ତ୍ତୀ ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କରିବାରୁ ତାଙ୍କ ପଦରେ ନିଯୁକ୍ତ ହୋଇ ଉକ୍ତ ବର୍ଷ (୧୮୯୩) ଦଶହରା ଅବକାଶରେ କଟକକୁ ଆସିଲେ । ଅକ୍ଟୋବର ମାସର ୨୬ ତାରିଖରେ ଟ୍ରେନିଙ୍ଗ ସ୍କୁଲରେ ତାହାଙ୍କର ପ୍ରଥମ ପ୍ରବେଶ ଏବଂ ସେହିଦିନଠାରୁ ଉକ୍ତ ବିଦ୍ୟାଳୟର ନୂତନତ୍ୱ ଓ ବିଶେଷତ୍ୱ ଦେଖାଗଲା । ମଧୁବାବୁ ଏ ସ୍କୁଲକୁ ଯିବା ପୂର୍ବରୁ ତହିଁର ଶିକ୍ଷକ ଓ ଶିକ୍ଷାପଦ୍ଧତି ସମ୍ବନ୍ଧରେ ଅତ୍ୟନ୍ତ ଅସନ୍ତୁଷ୍ଟ ହୋଇ ଅଚିରେ ସେ ସବୁ ପୁରାତନର ପରିବର୍ତ୍ତନ ଲାଗି କେହି କେହି ଆନ୍ଦୋଳନ କରିଥିଲେ । ଏହି ଆନ୍ଦୋଳନକାରୀଙ୍କ ମଧ୍ୟରେ ଆମ୍ଭମାନଙ୍କର ଶ୍ରଦ୍ଧେୟ ସମ୍ପାଦକ ମୁଖ୍ୟ ବ୍ୟକ୍ତି ଥିଲେ । ବିଶ୍ୱନାଥ ବାବୁ ୧୮୯୨ ଅବ୍ଦର ସମ୍ବଲପୁର ହିତୈଷିଣୀରେ ଏ ସମ୍ବନ୍ଧରେ ଯେପରି ଆନ୍ଦୋଳନ ଉତ୍ଥାପନ କରି ନର୍ମାଲ ସ୍କୁଲର ତଦାନୀନ୍ତନ ଶିକ୍ଷା ପ୍ରଣାଳୀର ପରିଚୟ ଦେଇଅଛନ୍ତି, ତହିଁର ଟିକିଏ ଆଭାସ ଏଠାରେ ପ୍ରଦାନ ନ କଲେ ପରବର୍ତ୍ତୀ ପ୍ରସଙ୍ଗ ସୁବ୍ୟକ୍ତ ହେବ ନାହିଁ । ତେତେବେଳେ ନର୍ମାଲ ସ୍କୁଲର କି ସାହିତ୍ୟ, କି ଗଣିତ, କି ସଂସ୍କୃତ, କି ଭୂଗୋଳ ଇତିହାସ ସମସ୍ତ ଶାସ୍ତ୍ରର ଶିକ୍ଷା ଅତି ହୀନଭାବରେ ହେଉଥିଲା । ଶିକ୍ଷାର୍ଥିମାନେ ଛାତ୍ରବୃତ୍ତି ପରୀକ୍ଷାରେ ଯେଉଁ ସାହିତ୍ୟ ପଢ଼ି ଆସିଥାନ୍ତି, ଏଠାରେ ଆସି ଦୁଇ ତିନି ବର୍ଷ ତାହାକୁ ଆବୃତ୍ତି କରୁଥାନ୍ତି । ରଚନାର ଅନୁଶୀଳନ ଏକପ୍ରକାର ନ ଥିଲା କହିଲେ ଚଳେ । ସୁତରାଂ ଉତ୍ତୀର୍ଣ୍ଣ ପଣ୍ଡିତମାନଙ୍କର ରଚନା ବିଶ୍ୱନାଥ ବାବୁଙ୍କ ଭାଷାରେ ପ୍ରକୃତପକ୍ଷେ 'ରଞ୍ଜନା' ଥିଲା । ଅଙ୍କଶିକ୍ଷା ମଧ୍ୟ ତଥୈବଚ ! ମରହଟ୍ଟା ଅମଳର କେତେଟା ଅଙ୍କକଷା

ଖାତା—ତସ୍ୟ ନକଲ—ତସ୍ୟ ନକଲ ହୋଇ ଗଣିତ ଶିକ୍ଷା ଦିଆଯାଉଥିଲା । ସଂସ୍କୃତରେ ବ୍ୟୁତ୍ପତ୍ତି ଜନ୍ମିବା ଦୂରେ ଥାଉ, କିଛି ମାତ୍ର ଜ୍ଞାନ ହେଉ ନ ଥିଲା । ସଂସ୍କୃତ ଘଣ୍ଟାରେ ଅନେକଙ୍କର ଦ୍ୱାରୀ ବାବୁଙ୍କ ଶିକ୍ଷାବିଧାନ ମୁଖସ୍ଥ କରି କାଳ କଟିଯାଏ । ବିଜ୍ଞାନ ଶାସ୍ତ୍ରରେ ତ ବୀତଜ୍ଞାନ । ଭୂଗୋଳ ଇତିହାସର ଶିକ୍ଷା ଖାତାରୁ ଆବୃତ୍ତି ଭିନ୍ନ ଆଉ କିଛି ନୁହେଁ । ଭୂଗୋଳ ଶିକ୍ଷାର ସମୁତ୍କର୍ଷ ନିମ୍ନଲିଖିତ ରହସ୍ୟଜନକ ଗଳ୍ପରୁ ବୁଝି ନିଅନ୍ତୁ । ''ଜଣେ ଶିକ୍ଷକ ଶ୍ରେଣୀରେ ଭୂଗୋଳ ଶିକ୍ଷା ଦେଉ ଦେଉ ଜଣେ ବୁଦ୍ଧିମାନ୍ ଛାତ୍ର ଜିଜ୍ଞାସା କଲା, ''ପଣ୍ଡିତ ମହାଶୟ ! ଏଥିରେ ଲେଖା ଅଛି, ପୃଥିବୀ ଶୂନ୍ୟରେ ଅଛି ଓ ସୂର୍ଯ୍ୟ ଚତୁର୍ଦ୍ଦିଗରେ ଘୂରୁଅଛି; ମାତ୍ର ପୁରାଣରେ ଅଛି, ଏହା ସ୍ଥିର, ବାସୁକି ଏହାକୁ ମୁଣ୍ଡେଇଅଛି । ଏଥିରୁ କେଉଁଟି ସତ୍ୟ ?'' ପଣ୍ଡିତ ମହାଶୟ ଗମ୍ଭୀର ଭାବରେ ଉତ୍ତର କଲେ, ''ମୂର୍ଖ ! ପୁରାଣ କି ମିଥ୍ୟା ହୋଇପାରେ ? ଏଥିରେ ଯାହା ଲେଖାଅଛି, ସେ ସମସ୍ତ ପାସ କରିବା ପାଇଁ—କଣ୍ଠସ୍ଥ କରିଯାଅ—ପାଠ ସରିଲା ।'' ଏ ସବୁ ରୀତି ଦେଖି ଲେଖକ ମହାଶୟ ପରୀକ୍ଷାବିଧି ପରିବର୍ତ୍ତନ, ଉପଯୁକ୍ତ ଶିକ୍ଷକ ନିର୍ବାଚନ ଓ ପାଠ୍ୟପୁସ୍ତକ ପରିବର୍ତ୍ତନର ବ୍ୟବସ୍ଥା ଲୋଡ଼ିଥିଲେ । ତାହାରି ଫଳରେ ଏ ବିଦ୍ୟାଳୟ ଅଚିରେ ଉପଯୁକ୍ତ ଶିକ୍ଷକ ଲାଭ କଲା । ମଧୁବାବୁ ଏହି ଦାୟିତ୍ୱପୂର୍ଣ୍ଣ ଶାନ୍ତିମୟ ଶିକ୍ଷାଳୟର କାର୍ଯ୍ୟଭାର ଗ୍ରହଣ କରି ଛାତ୍ରମାନଙ୍କର ଆଧ୍ୟାତ୍ମିକ, ନୈତିକ, ସାହିତ୍ୟିକ ଆଦି ସର୍ବବିଧ ଉନ୍ନତି ବିଧାନରେ ଯତ୍ନଶୀଳ ହେଲେ । ଈଶ୍ୱରଙ୍କ ରାଜ୍ୟରେ ଏହା ପ୍ରାୟ ଦେଖାଯାଏ, ଯେ ଯାହା ବ୍ୟାକୁଳ ଭାବରେ ଲୋଡ଼େ, ସେ ତାହା ପାଇଥାଏ । ମଧୁବାବୁ ଡେପୁଟି ଇନ୍ସପେକ୍ଟର ଥିବାବେଳେ ମଧ୍ୟମ ଶ୍ରେଣୀ ବିଦ୍ୟାଳୟ ସମୂହର ଶିକ୍ଷକମାନଙ୍କ ଯୋଗ୍ୟତା ଓ ଅଧ୍ୟାପନାଦିରେ ଯେଉଁସବୁ ତ୍ରୁଟି ବା ଅଭାବ ଉପଲବ୍ଧି କରି ମନରେ ଅତ୍ୟନ୍ତ କ୍ଷୋଭ ବହିଥିଲେ ଏବଂ ତାହା ଦୂର କରିବା ଲାଗି ସର୍ବଦା ବ୍ୟାକୁଳ ଥିଲେ, ଭଗବାନ ସେହି ଭାର ଆଣି ତାଙ୍କରି ଉପରେ ପକାଇଲେ । ଏହିଠାରେ ତାହାଙ୍କୁ ଦୀର୍ଘକାଳ ରହି ମନୋମତ ଶିକ୍ଷକ ଗଢ଼ିବାକୁ ପଡ଼ିଲା । ତେତେବେଳେ ସୁପଣ୍ଡିତ ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା (ବର୍ତ୍ତମାନ ହେଡ଼ ମାଷ୍ଟର) ଏବଂ ପଣ୍ଡିତ ମଧୁସୂଦନ ଦାଶ (ଓଡ଼ିଆ ଟ୍ରାନ୍ସଲେଟର) ଏହି ଦୁଇଜଣ ଦକ୍ଷ ସହକାରୀ ସେ ପାଇଥିଲେ । ଏହି ଦୁହିଁଙ୍କୁ ଘେନି ସେ ଯେଉଁ ଅପୂର୍ବ ପରିବର୍ତ୍ତନ ଘଟାଇଥିଲେ, ତାହା ଟ୍ରେନିଙ୍ଗ ସ୍କୁଲର ଇତିହାସରେ ଗୋଟିଏ 'ନୂତନ ଯୁଗ' । ଏହି ସମୟ 'ମଧୁସୂଦନ ଯୁଗ' ନାମରେ ଆଖ୍ୟାତ ହେବା ଉଚିତ । ଅର୍ଥତଃ ଏହି ଯୁଗରେ ସ୍କୁଲର ମୁଖ ଉଜ୍ଜ୍ୱଳ ଥିଲା । ମଧୁବାବୁ ପ୍ରଥମେ ଆସି ଦେଖିଲେ ଯେ, ଛାତ୍ରମାନେ ଯେଉଁ ଜ୍ଞାନ ଅର୍ଜନ କରୁଅଛନ୍ତି, ତାହା ଜଣେ ଶିକ୍ଷକ ପ୍ରତି ପର୍ଯ୍ୟାପ୍ତ ନୁହେଁ, ଅନେକ ବିଷୟରେ ଅଭାବ ଏବଂ ଅପୂର୍ଣ୍ଣତା

ରହି ଯାଉଅଛି । ତେଣୁ ପ୍ରଥମେ ଜ୍ଞାନୋନ୍ନତିକଳ୍ପେ ଉଚ୍ଚମାନର ଉତ୍କୃଷ୍ଟ ପାଠ୍ୟପୁସ୍ତକମାନ ନିର୍ବାଚନ କଲେ । କେବଳ ସାହିତ୍ୟ, ଗଣିତ, ଭୂଗୋଳ, ଇତିହାସ ଓ ପଦାର୍ଥବିଜ୍ଞାନ ଏହି କେତୋଟି ପୂର୍ବନିର୍ଦ୍ଧାରିତ ବିଷୟରେ ଯେ ଅଧିକ ଶିକ୍ଷାର ପ୍ରସ୍ତାବ ହେଲା, ତାହା ନୁହେଁ । ଏତଦ୍‌ବ୍ୟତୀତ ଜ୍ୟୋତିର୍ଗଣିତ (Astronomy) , ଅର୍ଥ ବ୍ୟବହାର (Political Economy), ରସାୟନ (Chemistry) ଏବଂ ଗତି-ସ୍ଥିତି-ଶାସ୍ତ୍ର (Statics) ଏହି କେତୋଟି ବିଶ୍ୱବିଦ୍ୟାଳୟ ଗୃହୀତ ବିଷୟରେ ଶିକ୍ଷାର ପ୍ରସ୍ତାବ ହେଲା । ଏହି କେତୋଟି ବିଷୟର ଏବଂ ଜ୍ୟାମିତି (ଛ ଅଧ୍ୟାୟ) ଓ ଇତିହାସର (ଇଂଲଣ୍ଡ, ଗ୍ରୀସ୍ ଏବଂ ରୋମ) ପୁସ୍ତକ ଓଡ଼ିଆରେ ନ ଥିବାରୁ ଛାତ୍ରମାନେ ତେତେବେଳେ ବଙ୍ଗଳା ବହି ପଢ଼ିବାକୁ ବାଧ ହୋଇଥିଲେ । ଏ ସମସ୍ତ ବିଷୟରେ ଛାତ୍ରମାନେ କିପରି ଜ୍ଞାନଲାଭ କରୁଅଛନ୍ତି, ତାହା ଜାଣିବା ପାଇଁ ମଧୁବାବୁ ସର୍ବଦା ପ୍ରଯତ୍ନବାନ୍ ଥିଲେ । ତେଣୁ ସେ ବାରମ୍ବାର ଅନ୍ୟ ଶିକ୍ଷକଙ୍କ ଅଧ୍ୟାପନା ସମୟରେ ଶ୍ରେଣୀରେ ଉପସ୍ଥିତ ହୋଇ ନାନା ସୁବୁଦ୍ଧିପରିଚାୟକ ପ୍ରଶ୍ନଦ୍ୱାରା ଛାତ୍ରଗଣଙ୍କ ଜ୍ଞାନ ପରୀକ୍ଷା କରୁଥିଲେ ଏବଂ ତତ୍‌ତତ୍‌ବିଷୟର ଯେଉଁ ଆଦର୍ଶ ବ୍ୟାଖ୍ୟା ବା ଅଧ୍ୟାପନା ଦେଖାଇ ଦେଉଥିଲେ, ତାହା ଶିକ୍ଷକ ଓ ଛାତ୍ର ଉଭୟଙ୍କ ହୃଦୟରେ ସୁଚିରକାଳ ଉଜ୍ଜ୍ୱଳ ଭାବରେ ଅଙ୍କିତ ହୋଇ ଭବିଷ୍ୟତ ମାର୍ଗ ଫିଟାଇ ଦେଉଥିଲା । ତେତେବେଳେ ପ୍ରାଚୀନ ରୀତିର ସଂସ୍କୃତ ଅଧ୍ୟାପନାରେ ତାଙ୍କର ଏକାନ୍ତ ଅତୃପ୍ତି ଥିଲା । କାରଣ ତଦ୍ୱାରା ସେ ବିଷୟ ନିର୍ବାଚନର ମୂଳ ଉଦ୍ଦେଶ୍ୟ ସାଧିତ ହେଉ ନ ଥିଲା । ତାଙ୍କର ଏହି ଅଭିମତ ଥିଲା ଯେ, ବ୍ୟାକରଣରେ ଶୁଦ୍ଧଜ୍ଞାନ ଲାଭ କରି ଛାତ୍ରମାନେ ସଂସ୍କୃତକୁ ମାତୃଭାଷାରେ ଉତ୍ତମରୂପେ ବ୍ୟକ୍ତ କରିପାରିବେ ଅଥବା ନିପୁଣ ଭାବରେ ଅନୁବାଦ କରିପାରିବେ । ଏଥିପାଇଁ ସେ ଅନେକ ସମୟରେ ଶ୍ରେଣୀକୁ ଆସି ସଂସ୍କୃତ ସାହିତ୍ୟର (ବିଶେଷତଃ ପାଠ୍ୟ ଉତ୍ତରଚରିତ ନାଟକର) ଆଦର୍ଶ ଅନୁବାଦ ଛାତ୍ରମାନଙ୍କୁ ଶିଖାଇ ଦେଉଥିଲେ । ତାଙ୍କର ବ୍ୟାକୁଳ ଭାବ ଦେଖି ବେଳେବେଳେ ଅନୁମାନ ହୁଏ, ଯେପରି କି ଅବସର ଥିଲେ ସେ ସମସ୍ତ ବିଷୟ ସ୍ୱୟଂ ପଢ଼ାନ୍ତେ । ମଧ୍ୟରେ କେତେକ ବର୍ଷ (୧୮୯୯ରେ ଚନ୍ଦ୍ରମୋହନ ବାବୁ ପୁରୀ ଯିବାରୁ) ସେ ସାହିତ୍ୟ ଓ ଗଣିତ ଉଭୟ ବିଷୟର ଶିକ୍ଷାଭାର ଗ୍ରହଣ କରିଥିଲେ । ଅନ୍ୟ ଯୋଗ୍ୟ ସହକାରୀ ସତ୍ତ୍ୱେ ଗଣିତକୁ ସେ ଆଗ୍ରହ ସହକାରେ ଘେନିବାର ଏହି କାରଣ କହନ୍ତି ଯେ, ପାଠଦ୍ଦଶାରେ ସେ ଆଶାନୁରୂପ ଗଣିତଚର୍ଚ୍ଚା କରି ପାରି ନ ଥିଲେ । ସେଥିରେ ଯେଉଁ ତ୍ରୁଟି ରହି ଯାଇଅଛି, ତାହା ଏ ସମୟରେ ଅନୁଶୀଳନ କଲେ ଅନେକ ପରିମାଣରେ କଟିଯିବ । ଏହି ଉପଦେଶ ମଧ୍ୟ ସେ ଅନେକ ଛାତ୍ରଙ୍କୁ ଦେଇଥାନ୍ତି, "ତୁମେ ଟିକିଏ ଅଙ୍କରେ କଞ୍ଚା ଅଛ, ତୁମେ ଶିକ୍ଷକ

ହେଲେ ଅଙ୍କ ନେବ । ତାହା ହେଲେ ତୁମ୍ଭର ସେ ଦୋଷ ଅବଶ୍ୟ କଟିଯିବ ।'' ଶ୍ରେଣୀରେ କେବେ ଖଣ୍ଡେ କଠିନ ଅଙ୍କ ପଡ଼ିଗଲେ ସେ ସ୍ୱୟଂ ଛାତ୍ରମାନଙ୍କୁ ଡାକି ଦେଇ ଖାତା ଧରି କଷୁଥାନ୍ତି । ଛାତ୍ରମାନଙ୍କର ଉତ୍ତରରେ ଅକ୍ଷମତା ଦେଖିଲେ ଆଉ କାଳକ୍ଷୟ ନ କରି ତତ୍‌କ୍ଷଣାତ୍ ବୁଝାଇ ଦିଅନ୍ତି । ଏ ବିଷୟରେ ତାଙ୍କର ସାଧାରଣ ଉପଦେଶ ଏହି ଥିଲା ଯେ, ''ଅଙ୍କ ଦେଖିଲେ ବାଘ ଭାଲୁ ବିଚାରି ହଠାତ୍ ଡରିଯିବ ନାହିଁ—ସିଂହ, ହାତୀ ଉପରେ ମାଡ଼ି ବସିଲା ପରି ସାହସସହକାରେ ସଙ୍ଗେ ସଙ୍ଗେ କଷି ବସିଲେ ଅବଶ୍ୟ ସଫଳ ହେବ ।'' ପାଟୀଗଣିତ ପ୍ରଶ୍ନସମାଧାନର ସହଜ ସୁବୋଧ ରୀତି ଏବଂ ଶିଶୁମାନଙ୍କ ବୋଧୋପଯୋଗୀ ସରଳ ବ୍ୟାଖ୍ୟାନ ପରବର୍ତ୍ତୀ ଶିକ୍ଷକ ଜୀବନରେ ଅତ୍ୟନ୍ତ ଆବଶ୍ୟକ ହେବ ବୋଲି ସେ ଛାତ୍ରମାନଙ୍କୁ ତାହା ଉତ୍ତମରୂପେ ବୁଝାଇ ଦେଉଥିଲେ । ଫଳତଃ ଗଣିତରେ ଶିକ୍ଷୋନ୍ନତି ପୂର୍ବ ତୁଳନାରେ ତାଙ୍କ ବର୍ଷ ଅଧିକ ଏବଂ ପ୍ରଶସ୍ତ ହୋଇଥିଲା । ସାହିତ୍ୟ ପଢ଼ାଇବାବେଳେ ସେ କେବଳ ପାଠ୍ୟପୁସ୍ତକ ଖଣ୍ଡି ଧରି ବସୁ ନ ଥିଲେ । ଅଧୀତବ୍ୟ ବିଷୟର ସଧର୍ମ ବିଷୟ ଅନ୍ୟାନ୍ୟ ପୁସ୍ତକରୁ ପ୍ରଦର୍ଶନ କରି ତଦ୍‌ବିଷୟକ ଜ୍ଞାନ ବା ଧାରଣାକୁ ଦୃଢ଼ୀଭୂତ କରୁଥିଲେ । ସେଥିପାଇଁ ମଧ୍ୟେ ମଧ୍ୟେ ସଂସ୍କୃତର କେତେ କାବ୍ୟ ନାଟକ ଓ ଉପନିଷଦ୍‌ଗ୍ରନ୍ଥ ଆସି ମେଜ ଅଳଙ୍କୃତ କରୁଥିଲା । ଅଳଙ୍କାର ଶାସ୍ତ୍ର ପଢ଼ାଇଲାବେଳେ ମଧୁବାବୁ ଇଂରାଜୀ ଭାଷାର ଅନଭିଜ୍ଞ ଛାତ୍ରମାନଙ୍କୁ ସୁଦ୍ଧା ସେ ଭାଷାର ଅଳଙ୍କାର ଶାସ୍ତ୍ରର ପରିଚୟ ଏବଂ ସଂସ୍କୃତର ଅଳଙ୍କାର ସହିତ ତାହାର ତୁଳନା କରାଇବାକୁ ଛାଡ଼ୁ ନ ଥିଲେ । ତାହାଙ୍କ ଅଧ୍ୟାପନାର ଗୋଟିଏ ବିଶେଷ ରୀତି ଏହି ଥିଲା ଯେ, ଅଳ୍ପକାଳ ମଧ୍ୟରେ କିପରି ଛାତ୍ରମାନଙ୍କ ହୃଦୟରେ ନାନା ଭାବରାଶି ପ୍ରବେଶ କରାଇବେ । ଆଉ ମଧ୍ୟ ସେମାନଙ୍କ ଅଭିନିବେଶ ଶକ୍ତିକୁ ଏପରି ଆୟତ୍ତ ରଖିଥିଲେ ଯେ, ତାହା ସେ ଅସାଧାରଣ ରୂପେ କରିପାରୁଥିଲେ । ଅନେକ ଶିକ୍ଷକ ଥାନ୍ତି, ସେମାନେ ଅଳ୍ପ ଜ୍ଞାନକୁ ଦୃଢ଼ ଭାବରେ ଅଙ୍କିତ କରିବାକୁ ଯାଇ ବେଳେ ବେଳେ ଦୀର୍ଘସୂତ୍ରତାରେ ବହୁକାଳ କ୍ଷେପଣ କରନ୍ତି, କିନ୍ତୁ 'ଅନନ୍ତଶାସ୍ତ୍ରଂ ବହୁବେଦିତବ୍ୟଂ ସ୍ୱଳ୍ପଶ୍ଚ କାଳୋ ବହବଶ୍ଚ ବିଘ୍ନାଃ' ଦୃଷ୍ଟିରେ ମଧୁବାବୁଙ୍କର ସେ ରୀତି ଆଦୌ ନ ଥିଲା । ତାହା ବୋଲି ସେ ଯାହା ତାହା ଅଶୁଦ୍ଧ କରି ଶୀଘ୍ର ଆୟତ୍ତ କରିବା ତାଙ୍କର ଅଭିପ୍ରେତ ଥିଲା, ଏହା କଦାପି ନୁହେଁ । ନିର୍ଦ୍ଦୋଷ ଶୁଦ୍ଧ ଜ୍ଞାନ ପ୍ରତି ସର୍ବଦା ତୀକ୍ଷ୍ଣ ଦୃଷ୍ଟି ଥିଲା । ଇତିହାସର ଶିକ୍ଷୋନ୍ନତି ଆଶୟରେ ସେ ଅନେକ ସମୟରେ ଶ୍ରେଣୀକୁ ଆସି ନାନା କୌତୂହଳୋଦ୍ଦୀପକ ସୂକ୍ଷ୍ମ ପ୍ରଶ୍ନଦ୍ୱାରା ଏବଂ ସୁନ୍ଦର ଭାଷାରେ କୌଣସି କୌଣସି ଗଳ୍ପ କହିଦେବା ଦ୍ୱାରା ଛାତ୍ରମାନଙ୍କର ତଦ୍‌ପ୍ରତି

ଅନୁରାଗ ଆକର୍ଷଣ କରୁଥିଲେ । ଅନ୍ୟାନ୍ୟ ବିଷୟ ପ୍ରତି ମଧ୍ୟ ସେହି ଦୃଷ୍ଟି ଥିଲା । ଏପରିକି 'ଡ୍ରିଲ' ଶିକ୍ଷା ପ୍ରତି ଛାତ୍ରମାନଙ୍କର ଅନୁରାଗ ନ ଥିବା ଏବଂ ବହୁଶଃ ଡ୍ରିଲଶିକ୍ଷକଙ୍କ ମୁଖରୁ ଅସନ୍ତୋଷର କଥା ଶୁଣି ସେ ଡ୍ରିଲ ଘଣ୍ଟାରେ ଉପସ୍ଥିତ ହୋଇ ଛାତ୍ରମାନଙ୍କ ସହିତ ଶିକ୍ଷକଙ୍କ ଆଦେଶକ୍ରମେ ନିର୍ବିକାର ଭାବରେ ସ୍ୱୟଂ ଡ୍ରିଲ କରନ୍ତି । ଏହା ଦେଖି କେଉଁ ଛାତ୍ର ବା ତତ୍‌ପ୍ରତି ଆକୃଷ୍ଟ ନ ହେବ ? ମଧୁବାବୁଙ୍କ ପରି ଉଚ୍ଚପଦସ୍ଥ କର୍ମଚାରୀଙ୍କ କଥା ଛାଡ଼ନ୍ତୁ, କେଉଁ ସାମାନ୍ୟ ଶିକ୍ଷକ ଏପରି କରନ୍ତି ବା କରିବାକୁ ପ୍ରସ୍ତୁତ ? ଏ ତ ଗଲା ସ୍କୁଲ ପଢ଼ାର କଥା । ଛାତ୍ରମାନଙ୍କର ଘରପଢ଼ା କିପରି ହୁଏ, ସେଥିପ୍ରତି ସେ କିପରି ଯତ୍ନଶୀଳ ଥିଲେ, ସେ ବିଷୟରେ ପଦେ ଦୁଇପଦ ଏଠାରେ କହିବୁଁ । ବୋର୍ଡ଼ିଙ୍ଗର ସୁପରିଣ୍ଟେଣ୍ଡେଣ୍ଟ ଥିବାରୁ ଅନେକ ଥର ସନ୍ଧ୍ୟା ପରେ ଛାତ୍ରାବାସ ବୁଲି ଛାତ୍ରମାନଙ୍କ କାର୍ଯ୍ୟର ସମାଲୋଚନା କରି ଆସନ୍ତି । ସେମାନଙ୍କର ନିର୍ଦ୍ଦିଷ୍ଟ ସମୟରେ ଉପସ୍ଥିତି ଅନୁପସ୍ଥିତି ଜଣାଇବା ପାଇଁ ତୃତୀୟବର୍ଷୀୟ ଶ୍ରେଣୀରୁ ଜଣେ ବଡ଼ଚାଟ ନିଯୁକ୍ତ ଥାଏ । ତଥାପି ସେ ଏପରି ଗୋଟିଏ କେନ୍ଦ୍ରସ୍ଥାନରେ ବସି ସନ୍ଧ୍ୟା ପରେ କାର୍ଯ୍ୟ କରୁଥାନ୍ତି, ଯହିଁରେ ଦଳବଦ୍ଧ ଛାତ୍ରମାନଙ୍କର କଥାବାର୍ତ୍ତା ବା କିଛି ଗୋଳମାଳ ହେଲେ କାନରେ ପଡ଼େ । ତାହା ଶୁଣିଲେ ସେ ଏପରି ଗୋଟାଏ ପାଟି (ଏଥି ପୂର୍ବରୁ ଏହାର ପରିଚୟ ଦେଇଅଛୁଁ) କରନ୍ତି, ଯାହା ପଛେ ପଛେ ସମସ୍ତ ଛାତ୍ରାବାସ ଏକାବେଳକେ ନିସ୍ତବ୍‌ଧ ହୋଇଯାଏ । ଆଉ କାହାର ସାହସ ଯେ ଆଉ କିଛିଦିନ ଯାଏ ସେପରି ଆଚରଣ କରିବ ? କେବେ କେବେ ରାତିରେ ନିଃଶବ୍ଦରେ ଛାତ୍ରାବାସରେ ପଶି ତନ୍ଦ୍ରାଳୁ ଓ ନିଦ୍ରାଗତ ଛାତ୍ରମାନଙ୍କର ନାନାରୂପତା ନିରୀକ୍ଷଣ କରନ୍ତି । କେବଳ ତେତିକି ନୁହେଁ, ଜାଗ୍ରତ ଛାତ୍ରମାନଙ୍କୁ ହସ୍ତସଙ୍କେତରେ ସାବଧାନ କରିଦେଇ କାହାର ବକ୍ଷରୁ, କାହାର କରତଳରୁ, କାହାର ବା ଅଙ୍ଗୁଷ୍ଠ ତର୍ଜମା ସନ୍ଧିରୁ ବିପର୍ଯ୍ୟସ୍ତ, ଅର୍ଦ୍ଧମୁଦ୍ରିତ ବା ମୁଦ୍ରିତ ପୁସ୍ତକମାନ ଘେନିଯାଇ ଅନ୍ୟ ଛାତ୍ର ପାଖରେ ରଖିଯାନ୍ତି । କେବେ କେବେ ବା କାହାର କାନ ପାଖରେ ଗୋଟାଏ ବିକଟ ଚିତ୍କାର, କାହାର ଖଟ ଉପରେ ବା ଯଷ୍ଟିଦ୍ୱାରା ଗୋଟାଏ କଠୋର ଶବ୍ଦ ଇତ୍ୟାଦି କରି ତତ୍‌କ୍ଷଣାତ୍ ଚେତାଇ ଦିଅନ୍ତି । ଏହାଦ୍ୱାରା ସେମାନେ ଏତେ ଲଜ୍ଜିତ ଓ ଅନୁତାପଜର୍ଜ୍ଜରିତ ହୁଅନ୍ତି ଯେ, ଆଉ ସେ ଦୁରଭ୍ୟାସ ଦୂର କରିବାପାଇଁ ଅନ୍ୟପ୍ରକାର ଶାସନ ବା ଅର୍ଥଦଣ୍ଡର ପ୍ରୟୋଜନ ହୁଏନାହିଁ ।

ଛାତ୍ରମାନଙ୍କର ସାଧାରଣ ଆଚରଣ ଓ ନୈତିକ ଚରିତ୍ର ପ୍ରତି ତାଙ୍କର ସର୍ବଦା ତୀକ୍ଷ୍ଣ ଦୃଷ୍ଟି ଥିଲା । ଶ୍ରେଣୀରେ ପଢ଼ିଲାବେଳେ କିଏ କିପରି ବସିଛି, କିପରି ଲୁଗା ପିନ୍ଧିଛି, କାହାର ହାତ କେଉଁଠି ଅଛି, କାହା ମୁଖରେ ତାମ୍ବୁଳର ରକ୍ତିମା ଅଛି,

କାହାର ବା ମାଙ୍ଗଭଙ୍ଗାରେ ଅନୁରାଗ ଅଛି, କିଏ ଅସ୍ପଷ୍ଟ କହୁଛି, କିଏ ବା ସତ୍ୟ ଗୋପନ କଲା, ଏସବୁ ପ୍ରତି ତାଙ୍କର ଏତେ ନଜର ଥାଏ ଯେ, ସେଥିରେ ଅଳ୍ପଦିନରେ ବଙ୍କା ଲୋକ ସଳଖ ହୋଇଯିବ । ବଜାରରେ ବା ବାହାରେ କିଏ କେଉଁ ଦୋକାନକୁ ଯାଇଛି, ବା କେଉଁଠି ବୁଲେ, ତାହାର ସେ ସନ୍ଧାନ ରଖନ୍ତି ଏବଂ କେବେ କେହି ଅସ୍ଥାନରେ ଆଖିରେ ପଡ଼ିଗଲେ, ତାକୁ ସେହିଦିନ ଡକାଇ ଉଚିତ ଶିକ୍ଷା ଦିଅନ୍ତି । କେବେ କେବେ ସନ୍ଧ୍ୟା ସମୟରେ ଛାତ୍ରମାନଙ୍କୁ ଡାକି ପାଖରେ ବସାଇ ଦୁଃଖସୁଖ କଥାବାର୍ତ୍ତା କରୁ କରୁ ସଦ୍ଧର୍ମ ପାଳନ ଓ କୁସଂସ୍କାର ବର୍ଜନ ବିଷୟରେ ନାନା ସଦୁପଦେଶ ପ୍ରଦାନଦ୍ୱାରା ସେମାନଙ୍କୁ ଚରିତାର୍ଥ କରନ୍ତି । ଏପରି ମଧ ସନ୍ଧ୍ୟା ଯାଇଛି, ଯହିଁରେ ସେ 'ନିରଞ୍ଜନାତଟରେ ସଶିଷ୍ୟ ଗୌତମ' ଅଥବା 'ବ୍ରହ୍ମପୁତ୍ରର ଶୁଭ୍ର ସୈକତରେ ସଶିଷ୍ୟ ଶଙ୍କର'ଙ୍କ ପରି କାଠଯୋଡ଼ୀର ବାଲୁକାଶଯ୍ୟାରେ ଶିଷ୍ୟମଣ୍ଡଳୀପରିବୃତ ହୋଇ ତାରକାଚିତ୍ରିତଚାରୁଚନ୍ଦ୍ରାତପ ତଳେ ବ୍ରହ୍ମୋପାସନା କରି ଶ୍ରୋତୃବର୍ଗଙ୍କ ହୃଦୟକନ୍ଦରରେ ଏକ ସ୍ୱଚ୍ଛ ଜଳଧାରା ଝରାଇ ଦେଇଅଛନ୍ତି । ଦିନଦିନକର ଏହିସବୁ ଘଟନା ଛାତ୍ରବର୍ଗଙ୍କ ଆଧ୍ୟାତ୍ମିକ ଉନ୍ନତିର ସୂଚନା କରିଥିଲା । ଏ ବିଷୟରେ ତାହାଙ୍କର ଜୀବନର ପ୍ରଭାବ ଛାତ୍ରମାନଙ୍କ ଜୀବନରେ ଅସାଧାରଣଭାବରେ କାର୍ଯ୍ୟ କରିଥିଲା ।

ବିଦ୍ୟାଳୟର ଏ ସବୁ ଶିକ୍ଷା ବ୍ୟତୀତ ଛାତ୍ରମାନଙ୍କର ରଚନାଶକ୍ତିରେ ପଟୁତାଲାଭ ଓ ସେମାନଙ୍କ ମନରେ ଉଚ୍ଚ ଭାବର ବିକାଶର ସାହାଯ୍ୟ ନିମିତ୍ତ ମଧୁସୂଦନ ଏକ 'ଆଲୋଚନା ସଭା' ସ୍ଥାପନର ପ୍ରୟୋଜନ ଉପଲବ୍ଧି କରି ଏ ନଗରର କେତେକ ଜଣ ସାହିତ୍ୟାନୁରାଗୀ ବନ୍ଧୁଙ୍କୁ ଘେନି ୧୮୯୪ ଖ୍ରୀଷ୍ଟାବ୍ଦରେ ଟ୍ରେନିଙ୍ଗ ସ୍କୁଲରେ ଗୋଟିଏ 'ଆଲୋଚନା ସଭା' ପ୍ରତିଷ୍ଠିତ କରାଇଲେ । ସାହିତ୍ୟର ବିଶେଷତଃ ଉତ୍କଳ ସାହିତ୍ୟର ଅନୁଶୀଳନ ଏହାର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଏବଂ ପ୍ରତି ଶନିବାର ସଭାର ଅଧିବେଶନ ହେଉଥିଲା । ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା ସେ ସଭାର ସର୍ବପ୍ରଥମ ସମ୍ପାଦକ ଏବଂ ଟ୍ରେନିଙ୍ଗ ସ୍କୁଲର ସମସ୍ତ ଶିକ୍ଷକ ଓ ଛାତ୍ରମାନେ ତାହାର ସଭ୍ୟ ହେଲେ । ଅନ୍ୟ ସ୍କୁଲରୁ ଶ୍ରୀଯୁକ୍ତ ବିଶ୍ୱନାଥ କର, ରାଜମୋହନ ବସୁ, ମିଚ୍ଛୁ ନନ୍ଦ, ନନ୍ଦକିଶୋର ବଳ (ଟାଉନ ସ୍କୁଲ) ଏବଂ କୃଷ୍ଣପ୍ରସାଦ ଚୌଧୁରୀ (ବାଳିକା ସ୍କୁଲ) ପ୍ରଭୃତି ଶିକ୍ଷକମାନେ ବିଶିଷ୍ଟ ସଭ୍ୟରୂପେ ଏଥିରେ ଯୋଗ ଦେଉଥିଲେ । ଏହି ଆଲୋଚନା ସଭା ଯେ ଟ୍ରେନିଙ୍ଗ ସ୍କୁଲର ଅନେକ ଛାତ୍ରଙ୍କର ରଚନାଶକ୍ତିରେ ଯଥେଷ୍ଟ ସାହାଯ୍ୟ କରିଅଛି, ଏ କଥାରେ ଅନ୍ୟ କେହି ସାକ୍ଷ ଦିଅନ୍ତୁ ନ ଦିଅନ୍ତୁ, ଏ ଅଧମ

ଲେଖକର ଯାହା କିଛି ଲେଖିବାର ଅଭ୍ୟାସ, ତାହା ସେହି ଆଲୋଚନା ସଭା ଯୋଗେ ହୋଇଅଛି । ତାହା ତେତେବେଳେ ଟ୍ରେନିଙ୍ଗ୍ ସ୍କୁଲରେ ଆବଦ୍ଧ ଥିଲେହେଁ ଏ ନଗରର ଏକମାତ୍ର ସାହିତ୍ୟିକ ସଭା ଥିଲା । ସଭାର ପ୍ରତିଷ୍ଠା ଦିବସଠାରୁ ପ୍ରତିଷ୍ଠାପୟିତା ମଧୁସୂଦନ ପ୍ରାୟ ୯ ବର୍ଷ କାଳ ଏ ସଭାର ସଭାପତି କାର୍ଯ୍ୟ ସୁନିପୁଣ ଭାବରେ ପରିଚାଳନ କରିଥିଲେ । ଗଞ୍ଜାମ ସମ୍ମିଳନୀରୁ ନବୀନ ଉତ୍ସାହ ହୃଦୟରେ ଧାରଣା କରିଆସି କେତେଜଣ ସାହିତ୍ୟାନୁରାଗୀ ବନ୍ଧୁ ଉତ୍କଳରେ ଗୋଟିଏ ସାଧାରଣ ସାହିତ୍ୟିକ ସଭାର ପ୍ରୟୋଜନୀୟତା ଉପଲବ୍ଧିରେ ଗୋଟିଏ ବଡ଼ ସାହିତ୍ୟିକ ସଭା ସ୍ଥାପନର ପରାମର୍ଶ କଲେ । ତଦନୁସାରେ ଉକ୍ତ ଆଲୋଚନା ସଭା ୧୯୦୩ ଅବ୍ଦର ମେ ମାସର ସପ୍ତମ ଦିବସରେ ପ୍ରଶସ୍ତତର ଭିତ୍ତିରେ ସ୍ଥାପିତ ହୋଇ 'ଉତ୍କଳ ସାହିତ୍ୟ ସମାଜ' ନାମରେ ଉତ୍କଳର ସାଧାରଣ ସାହିତ୍ୟିକ ସଭା ରୂପେ ପ୍ରଚାରିତ ହେଲା । ଏ ସଭା ବରଣ ଏବଂ ତାହାର ନାମକରଣ ସ୍ୱସ୍ତିବାଚନ ପ୍ରଭୃତି ସବୁ ସେହି କରିଅଛନ୍ତି ଏବଂ ଆମରଣ ସଭାପତିର କର୍ମ ସେହି ରୋଗକ୍ଷୀଣ ଦୁର୍ବଳ ଦେହରେ ସୁଚାରୁରୂପେ ସମ୍ପାଦନ କରିଅଛନ୍ତି । ସେ ଯେ ନାମତଃ ସଭାପତି ପଦ ବହନ କରିଥିଲେ, ତାହା ନୁହେଁ—ସେ ସାହିତ୍ୟର ଉନ୍ନତି ଆଶାରେ ସଭାକୁ ପ୍ରାଣପରି ଭଲ ପାଇ ତାହାର ଶ୍ରୀବୃଦ୍ଧି କାମନା କରୁଥିଲେ । ସଭାର ସ୍ପନ୍ଦନ ନ ଦେଖିଲେ ସେ ବଡ଼ ବ୍ୟାକୁଳ ହେଉଥିଲେ ଏବଂ ବିଶିଷ୍ଟ ସଭ୍ୟଙ୍କୁ ଦେଖିଲେ ଆଗେ କିପରି ସଭା ହେବ, ଭଲ ଭଲ ବିଷୟର ଆଲୋଚନା ହେବ, ଏହି ବିଷୟ ଘେନି ତର୍କ କରୁଥିଲେ । ଅନେକ ସମୟରେ ସେ କୌଣସି କୌଣସି ଦୁଷ୍ପୋତ୍ସାହ ଯୁବକ ସଭ୍ୟଙ୍କ ଘରକୁ ଯାଇ ଦୁଃଖିତ ହୋଇ କହୁଥିଲେ, ''ତୁମେ ସଭା ପ୍ରତି କାହିଁକି ମନ ଦେଉ ନାହଁ—ତୁମ୍ଭର ଉତ୍ସାହ ଓ ଅନୁରାଗ ଊଣା ଦେଖି ମୁଁ ବଡ଼ ହତାଶ ହୋଇପଡୁଛି । ତୁମ୍ଭେ ଟିକିଏ ଯତ୍ନ କଲେ ସଭାର କାର୍ଯ୍ୟ ଭଲ ଚାଲନ୍ତା ।'' କେବେ କେବେ ବିରକ୍ତ ହୋଇ ମଧ କହିଛନ୍ତି, ''ଯଦି କେହି କିଛି ନ କରିବେ, ତେବେ ମୋତେ ସଭାପତିପଦରୁ ଅବ୍ୟାହତି ଦିଅ, ମୁଁ କାହିଁକି ଗୋଟିଏ ନିର୍ଲଜ୍ଜ ପ୍ରାୟ ସମାଜରେ ନାମ ରଖିଥିବି ?'' ଇତ୍ୟାଦି ପ୍ରକାର ଦୁଃଖ ପ୍ରକାଶ ବା ଆକ୍ଷେପରେ କୌଣସି ଫଳ ଦେଖାଯାଇ ନାହିଁ । ତାହାର କାରଣ ବୋଧହୁଏ ଉତ୍କଳର ଜଳବାୟୁ ଓ ମୃତ୍ତିକାର ଦୋଷ । ଏହାର ଜଳବାୟୁଗୁଣରେ ଏହା ଦେଖା ଯାଉଅଛି ଯେ, ବୃଦ୍ଧମାନଙ୍କ ଅପେକ୍ଷା ଯୁବକମାନେ ଅଧିକ ଅପଟୁ । ଉତ୍କଳର ଆଭ୍ୟନ୍ତରିକ ପ୍ରଦେଶ ଆଲୋଚନା କରି କଣ ଦେଖୁଁ ? ଯେଉଁ ପରିବାରରେ ବୃଦ୍ଧ ପିତା ଅନବରତ ଏଣେତେଣେ ଧାଇଁ ଶକ୍ତିହୀନ ଅବସ୍ଥାରେ ସମସ୍ତ ଗୃହକର୍ମ ସମ୍ପାଦନ

କରୁଅଛନ୍ତି, ସେ ଘରେ ଯୁବକ ପୁତ୍ର ପୁଣି ନାନା କ୍ରୀଡ଼ାରସରେ କେବେ ବା ସୁଖନିଦ୍ରାବେଶରେ ଦିନଯାପନ କରୁଅଛି ! ଏହି ଅଦ୍ଭୁତ ଚିତ୍ର ବର୍ତ୍ତମାନ ଉତ୍କଳୀୟ ସମାଜର ସର୍ବଶ୍ରେଣୀରେ ଦେଖା ଯାଉଅଛି । ବୃଦ୍ଧମାନେ କେବଳ ଭବିଷ୍ୟତ ପୁରୁଷଙ୍କଠାରୁ ହତାଶ ହୋଇ ଦ୍ରୁତଗତିରେ ଦ୍ୱିଗୁଣ ଉତ୍ସାହରେ ଅଚିରସ୍ଥାୟୀ ଜୀବନକାଳ ମଧ୍ୟରେ କର୍ତ୍ତବ୍ୟ କର୍ମ ସାଧନରେ ଲାଗିଅଛନ୍ତି । ଯୁବକମଣ୍ଡଳୀରେ ଅନ୍ୟ କୌଣସି ଆଶାର ଲକ୍ଷଣ ଦେଖା ଯାଉ ନ ଯାଉ, ସେହି କର୍ମୀ ବୃଦ୍ଧମାନଙ୍କୁ ଅମାର୍ଜନୀୟ ରୂପେ ସମାଲୋଚନା କରିବାର ଲକ୍ଷଣ ଉତ୍ତମ ଦେଖା ଗଲାଣି ! ମଧୁସୂଦନ ପ୍ରାୟ ଅଷ୍ଟାଦଶ ବର୍ଷକାଳ ଗୋଟିଏ ସାହିତ୍ୟିକ ସଭାର ସଭାପତି କାର୍ଯ୍ୟ ଯେପରି ସ୍ଥିର ଅବିଚ୍ଛିନ୍ନ ଭାବରେ ସମ୍ପାଦନ କରିଅଛନ୍ତି, ସେଥିରୁ ତାଙ୍କର ଶକ୍ତିମତ୍ତା, ଧୈର୍ଯ୍ୟ ଏବଂ ଚରିତ୍ରର ମହତ୍ତ୍ୱ ଅନୁଧେୟ ।

ଯେଉଁ 'ଉତ୍କଳ-ସାହିତ୍ୟ' ଯୋଗେ ଆମ୍ଭେମାନେ ବର୍ତ୍ତମାନ ଯଥାଶକ୍ତି ଯତ୍‌କିଞ୍ଚିତ୍ ସାହିତ୍ୟିକ କସରତ୍ କରୁଅଛୁଁ, ବିଗତ ସପ୍ତଦଶ ବର୍ଷ ମଧ୍ୟରେ ଯାହା ଦଶ ପାଞ୍ଚ ଜଣ ଲେଖକ ପ୍ରସ୍ତୁତ କରିଅଛି, ବିବିଧ ଲେଖାର ପ୍ରଚାରଦ୍ୱାରା ଏ ପାଠବିମୁଖ ଭୂମିରେ ଗୋଟିଏ ପାଠକଦଳ ସୃଷ୍ଟି କରିଅଛି ଏବଂ ଅର୍ଥତଃ ଆଧୁନିକ ଉତ୍କଳସାହିତ୍ୟକୁ ଟିକିଏ ଉନ୍ନତତର ଭିତ୍ତିରେ ସ୍ଥାପନ କରିଅଛି, ତାହାର ମଧ୍ୟ ପ୍ରବର୍ତ୍ତକ ସେହି ମଧୁସୂଦନ । ଉତ୍କଳ- ସାହିତ୍ୟ କଥା କହିବାକୁ ଗଲେ ଆଗେ ଆଉ ଦୁଇଟି ପତ୍ରିକାର କଥା ଉଲ୍ଲେଖ କରିବାକୁ ହେବ, କାରଣ ତତ୍‌ସହିତ ଏହାର ପୂର୍ବାପର ସମ୍ବନ୍ଧ ଦୃଢ଼ ରହିଅଛି । ୧୮୯୧ ଖ୍ରୀଷ୍ଟାବ୍ଦରେ ନବଧର୍ମର ପ୍ରଚାର ଅଭିପ୍ରାୟରେ ପୂର୍ବପ୍ରକାଶିତ 'ନବସମ୍ବାଦ' ପରି 'ଆଶା' ନାମକ ଖଣ୍ଡିଏ ମାସିକ ପତ୍ର ତାହାଙ୍କ ପ୍ରବର୍ତ୍ତନାରେ ପ୍ରଚାରିତ ହେଲା । ସ୍ୱର୍ଗୀୟ ସାଧୁଚରଣ ରାୟ ଏହାର ସମ୍ପାଦକ ଥିଲେ । ନବସମ୍ବାଦ ପତ୍ରିକାର ପ୍ରାରମ୍ଭରେ 'ନବସମ୍ବାଦ' କବିତା ପ୍ରାୟ

''ଶୁଣ ନରେ ନବସମ୍ବାଦ ବାରେ ଡେରି ଶ୍ରବଣ,
ନବଯୁଗ ବିଭୁବିଧାନେ ଆସୁଅଛି ବହନ ।
ମଙ୍ଗଳ ବାଜଣା ବାଜୁଛି ଶୁଣ ଭାରତଦ୍ୱାରେ,
ଚୌଦିଗେ ଉଡୁଛି ବିଜୟ-ବାନା ଅନାଥ ବାରେ ।''

'ଆଶା'ର ପ୍ରାରମ୍ଭରେ ପାପୀ ତାପୀ ଜଗଦ୍‌ବାସୀଙ୍କର ମହା ଆଶ୍ୱାସବାଣୀମୟୀ 'ଆଶା' କବିତା ପ୍ରକାଶିତ ହୋଇଥିଲା ।

''ଭକ୍ତି-ପ୍ରୀତି-ସହଚରୀ-ଆଶା-ଅଧିଷ୍ଠିତ
ଏ ସ୍ୱର୍ଗତୋରଣ,
ସଦା ଅବାରିତଦ୍ୱାର ପ୍ରଭା-ବିଭାସିତ
ବିଶ୍ୱବିମୋହନ ।
ଆସ ଆସ ପାପୀ ତାପୀ ଯେ ଅଛ ଜଗତେ
ସେବି ଦେବୀପଦ
ପ୍ରବେଶ ସ୍ୱରଗଧାମେ ଭୁଞ୍ଜରେ ସନ୍ତତେ
ଅମୃତ ସମ୍ବାଦ ।''

କେତେକ ଅବସ୍ଥାବିପର୍ଯ୍ୟୟ ପରେ ଏହା ପ୍ରଧାନତଃ ସ୍ତ୍ରୀଶିକ୍ଷା ପ୍ରଚାର ଉଦ୍ଦେଶ୍ୟରେ ନିୟୋଜିତ ହେଲା ଏବଂ ଉତ୍କଳର ସୁପରିଚିତା ଶ୍ରୀମତୀ ରେବା ରାୟ ଏହାର ସମ୍ପାଦିକା ହେଲେ । ଆଶାର ପ୍ରକାଶ ସମୟରେ ଦୀପିକା ଆଶାନ୍ୱିତ ହୋଇ ପ୍ରକାଶ କରିଥିଲେ, ''ପତ୍ରିକାର ଲେଖା ଆଶାପ୍ରଦ । କାମନା କରୁଁ ଆଶା ସ୍ତ୍ରୀମଣ୍ଡଳୀରେ ଆଦୃତ ହେବ । ସମ୍ପାଦିକା ଆଶାର ଭାଷା ଆହୁରି ସରଳ କରିବେ ।'' କିନ୍ତୁ 'ଆଶା' ଉତ୍କଳରେ ଅଧିକ ଦିନ ଦେଖା ଯାଇ ନାହିଁ । ଆଶାର ସଫଳତାରେ ବିଘ୍ନ ଘଟିଲେ ସୁଦ୍ଧା ଆଶାଯୁକ୍ତ ମଧୁସୂଦନ କଦାପି ହତାଶ ହୋଇ ନାହାନ୍ତି । ତାଙ୍କରି ଉତ୍ସାହ ଓ ପ୍ରବର୍ତ୍ତନାରେ ପୁଣି ପ୍ରୋକ୍ତ ଉଦ୍ଦେଶ୍ୟରେ 'ବ୍ରାହ୍ମ' ନାମକ ମାସିକ ପତ୍ରିକା ତଦାନୀନ୍ତନ ଭିକ୍ଟୋରିଆ ଯନ୍ତ୍ରାଳୟରୁ ପ୍ରଚାରିତ ହେଲା । ଏହି ସମୟରେ ମଧ୍ୟ ପୂର୍ବକଥିତ ଶିକ୍ଷା-ସାହିତ୍ୟ ସମ୍ବଳିତ 'ଶିକ୍ଷାବନ୍ଧୁ' ଆଠବର୍ଷ ପରେ ପୁନରୁଜ୍ଜୀବିତ ହୋଇଥିଲା ।

'ଦୀପିକା' ତେତେବେଳେ ପୁନର୍ଜ୍ଜୀବନକାରିଙ୍କୁ ଧନ୍ୟବାଦ ପ୍ରଦାନ କରିଥିଲେ । ଏ ଦୁଇ ପତ୍ରିକା ମଧ୍ୟ ଗ୍ରାହକ ଅଭାବରୁ ଅଧିକ କାଳ ରହି ପାରିଲା ନାହିଁ । ଦୁଇଥର ଉଦ୍ୟମ ବିଫଳ ହେଲା । କଥାରେ ଅଛି, ତୃତୀୟ ଥର ଧର୍ମ ଛାଡ଼େ । କିନ୍ତୁ ଉତ୍ତମ ଲୋକେ ସପ୍ତମ ଉଦ୍ୟମ ପର୍ଯ୍ୟନ୍ତ ବଦ୍ଧପରିକର ଥାନ୍ତି । ଯାହା ହେଉ, ତୃତୀୟ ଉଦ୍ୟମରେ ଆମ୍ଭମାନଙ୍କର ପ୍ରିୟଦର୍ଶନ ଏହି 'ଉତ୍କଳସାହିତ୍ୟ'ର ସୃଷ୍ଟି । ପୂର୍ବକଥିତ ଆଲୋଚନା ସଭାରେ ସାହିତ୍ୟ ଚର୍ଚ୍ଚା ସମୟରେ ଗୋଟିଏ ସାହିତ୍ୟିକ ପତ୍ରିକାର ଅଭାବ ଗଭୀର ଭାବରେ ଅନୁଭବ କରି ମଧୁବାବୁ ଟ୍ରେନିଂସ୍କୁଲଠାରେ ସ୍ୱର୍ଗୀୟ ସାଧୁଚରଣ ରାୟ, ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା, ଶ୍ରୀଯୁକ୍ତ ଫକୀରମୋହନ ସେନାପତି, କୃଷ୍ଣପ୍ରସାଦ ଚୌଧୁରୀ ଏବଂ ବିଶ୍ୱନାଥ କର ଏହି କେତେକ ଜଣ ଆତ୍ମୀୟ ବନ୍ଧୁଙ୍କୁ ଘେନି ପରାମର୍ଶ କଲେ ଏବଂ

ତାହାର ଫଳସ୍ୱରୂପ 'ଉତ୍କଳସାହିତ୍ୟ' ପତ୍ରିକା ପ୍ରଚାରିତ ହେଲା । ପୂର୍ବ ବ୍ରାହ୍ମ ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ବିଶ୍ୱନାଥ କର ତହିଁର ସମ୍ପାଦକ ପଦରେ ନିଯୁକ୍ତ ହେଲେ । ଧର୍ମପ୍ରଚାର ଏ ପତ୍ରିକା ପ୍ରବର୍ତ୍ତନର ମଧ୍ୟ ମୂଳବୀଜ ଥିଲେହେଁ ଦୂରଦର୍ଶୀ ବିଚକ୍ଷଣ ସମ୍ପାଦକଙ୍କ ଗୁଣରେ ତାହା ସାଧାରଣ ଭାବରେ ସାହିତ୍ୟ ପ୍ରଚାର କରି ଗ୍ରାହକସମାଜରେ ସମାଦର ଲାଭ କଲା । ୧୮୯୭ ଅଙ୍କର ମାଘ ମାସରେ ଏହାର ପ୍ରଥମ ସଂଖ୍ୟା ପ୍ରକାଶିତ ହେଲା । ଉତ୍କଳରେ ପତ୍ରିକାର ଉଦୟ ପଛେ ପଛେ ଅସ୍ତ ଦେଖି ଦୀପିକାର ବୃଦ୍ଧ ସମ୍ପାଦକ ତେତେବେଳେ କହିଥିଲେ—''ଅନ୍ୟାନ୍ୟ କାରଣ ମଧ୍ୟରେ ଇନ୍ଦ୍ରଧନୁର ଅଦର୍ଶନକୁ ଲକ୍ଷ୍ୟ କରି ଉତ୍କଳ ସାହିତ୍ୟର ଅଧିକାରିମାନେ ଓଡ଼ିଶାରେ ଖଣ୍ଡିଏ ମାସିକ ପତ୍ରିକାର ଅଭାବ ଅନୁଭବ କରିଥିଲେ । ଦୁହେଁ (ଉତ୍କଳସାହିତ୍ୟ ଓ ଇନ୍ଦ୍ରଧନୁ ଚତୁର୍ଥ ଭାଗ ପ୍ରଥମ ସଂଖ୍ୟା) ଏକତ୍ର ବାହାରିବାରୁ ସେ ଅଭାବ ଦ୍ୱିଗୁଣରେ ପୂର୍ଣ୍ଣ ହେଲା । × × ଓଡ଼ିଶାରେ ମାସିକ ପତ୍ରର ଅଭାବ ମେଣ୍ଟାଇବାର ଚେଷ୍ଟା କରିବା ପୂର୍ବେ ଶିକ୍ଷା ଓ ଅର୍ଥ ବୃଦ୍ଧିର ଚେଷ୍ଟା କର୍ତ୍ତବ୍ୟ ହେଉଅଛି ।'' (୧୩।୨।୯୭ ଦୀପିକା) ଯଥାର୍ଥରେ ଉତ୍କଳର ପାଠକଙ୍କ ଗ୍ରାହକତା ଦୋଷରେ କେତେ କେତେ ସାଧୁ ଉଦ୍ୟମ ମରୁଭୂମିରେ ବୀଜରୋପଣ ପ୍ରାୟ ନିଷ୍ଫଳ ହୋଇଅଛି । ଏହି 'ଉତ୍କଳସାହିତ୍ୟ' ଯେ କେତେ ଶିଶୁଗଣ୍ଡ ଅତିକ୍ରମ କରି କିପରି ଅତି ଅପୁଷ୍ଟ ଦେହରେ ଆଜିଯାଏ ଅଛି, ତାହା ବିଶେଷତଃ ସମ୍ପାଦକଙ୍କୁ ଜଣା ! ସେ ପ୍ରସଙ୍ଗର ଉଦ୍‌ଘାଟନ ଏଠାରେ ନିଷ୍ପ୍ରୟୋଜନ । ପ୍ରଥମାବସ୍ଥାରେ ମଧୁବାବୁ ଏହି ଉତ୍କଳସାହିତ୍ୟକୁ ଲେଖିବା ଛଡ଼ା ଅନ୍ୟ ଭାବରେ ମଧ୍ୟ ସାହାଯ୍ୟ କରୁଥିଲେ । ପ୍ରଥମେ ପ୍ରଥମେ ପ୍ରାପ୍ତ ପ୍ରବନ୍ଧାଦି ଦେଖି ସେଥିରୁ ପ୍ରକାଶଯୋଗ୍ୟ ପ୍ରବନ୍ଧମାନ ସଂଶୋଧନପୂର୍ବକ ନିର୍ବାଚନ କରି ଦେଉଥିଲେ । ତାହାଙ୍କ ରଚିତ ନବବର୍ଷ, ଶ୍ରୀପଞ୍ଚମୀ, ନଦୀ ପ୍ରତି, ମହାଦେବୀ ଭିକ୍ଟୋରିଆ ପ୍ରଭୃତି କବିତା ଏବଂ ଅଶୋକ, ବାରାଣସୀ ପ୍ରଭୃତି ପ୍ରବନ୍ଧମାନ ଏହି ପତ୍ରିକାରେ ପ୍ରଥମେ ପ୍ରକାଶିତ ହୋଇଥିଲା ।

ଉତ୍କଳ ସାହିତ୍ୟର ସୃଷ୍ଟି ସମୟରେ ଏକ ସାହିତ୍ୟିକ ଆନ୍ଦୋଳନ ଉପସ୍ଥିତ ହୋଇଥିଲା, ଯହିଁରେ ମଧୁସୂଦନଙ୍କ ସଂସ୍ରବ ଓ ସାହାଯ୍ୟ ଉଲ୍ଲେଖଯୋଗ୍ୟ । କେହି ଈର୍ଷାପର ସୂଚକ ରାୟକବିଙ୍କ ମହାଯାତ୍ରାରେ କେତେକ ଅଂଶ ରାଜଦ୍ରୋହମୂଳକ ବା ବ୍ରିଟିଶ ଜାତିର କୁତ୍ସାବ୍ୟଞ୍ଜକ ବୋଲି ରାଜକୁଳରେ ଜଣାଇଥିଲେ । ଜଣେ ବିଶିଷ୍ଟ ରାଜପୁରୁଷଙ୍କ ଲେଖନୀରୁ ଅଭକ୍ତିସୂଚକ କଥା ବାହାରିବାର ଶୁଣି ସରକାରଙ୍କର ଘୋର ସଂଶୟ ଏବଂ ତତ୍ସହ ମହା ଆନ୍ଦୋଳନ ଲାଗିଲା । ଏଥିରେ କେହି କେହି ରାଜକର୍ମଚାରୀ

ମଧୁସୂଦନଙ୍କୁ ମଧ୍ୟ ସନ୍ଦେହ କରିଥିଲେ । କିନ୍ତୁ ଯେଉଁ ରାଧାନାଥ ଏଥି ପୂର୍ବରୁ 'ମହାରାଣୀ ଭିକ୍ଟୋରିଆ' କବିତାରେ ଏବଂ ଜୁବିଲୀ ସଙ୍ଗୀତରେ ପ୍ରଗାଢ଼ ରାଜଭକ୍ତି ପ୍ରଦର୍ଶନ କରିଅଛନ୍ତି ଏବଂ ଯେଉଁ ମଧୁସୂଦନ ପଶ୍ଚାତ୍ ଶୋକୋପଲକ୍ଷିତ 'ମହାଦେବୀ ଭିକ୍ଟୋରିଆ' କବିତାରେ ଏବଂ ଭିକ୍ଟୋରିଆଙ୍କ ନାମ ସ୍ମରଣାର୍ଥ ଉଚ୍ଚ ବିଦ୍ୟାଳୟ ସ୍ଥାପନରେ ଦୃଢ଼ ରାଜଭକ୍ତି ପ୍ରକାଶ କରିଅଛନ୍ତି, ସେପରି ସୁଜନଙ୍କ ଚରିତ୍ରରେ ଏପରି ଆଶଙ୍କା ଅସମ୍ଭବ । ମଧୁବାବୁ ତେତେବେଳେ ମହାଯାତ୍ରାର ତତ୍ ତତ୍ ଅଂଶର ଯଥାର୍ଥ ଅଦୋଷଦୁଷ୍ଟ ବ୍ୟାଖ୍ୟା ପ୍ରଦର୍ଶନ ଦ୍ୱାରା କବିଙ୍କର ସଦଭିପ୍ରାୟ ପ୍ରତିପାଦନରେ ଯଥେଷ୍ଟ ସାହାଯ୍ୟ କରିଥିଲେ । ୧୮୯୯ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ ଯେତେବେଳେ ଡିରେକ୍ଟର ପେଡ୍‌ଲର ସାହେବ (Sir Alexander Pedlar) ପ୍ରଥମ ପରିଦର୍ଶନରେ କଟକ ଆସିଲେ, ତେତେବେଳେ ସେ ଉକ୍ତ ସନ୍ଦେହ ଯୋଗେ ତାଙ୍କ ପ୍ରତି ବିରକ୍ତି ପ୍ରଦର୍ଶନ କରିଥିଲେ ଏବଂ ବିଦ୍ୟାଳୟ ପରିଦର୍ଶନରେ କାର୍ଯ୍ୟତଃ ସନ୍ତୁଷ୍ଟ ହୋଇଥିଲେହେଁ କେତେକ ବିଷୟରେ ଅନଧିକାର ଚର୍ଚ୍ଚା କରିଥିବାର ଦେଖାଇ ଅସନ୍ତୋଷ ପ୍ରକାଶ କରିଥିଲେ । କିନ୍ତୁ ମଧୁବାବୁ ଦୃଢ଼ଭାବରେ ଆପଣାର ରାଜଭକ୍ତି ଓ ନିର୍ଦ୍ଦୋଷତାର ପ୍ରମାଣ ଦେଇ ତାଙ୍କର ସେ ବିରକ୍ତି ଏପରି ଦୂରୀଭୂତ କରିଥିଲେ ଯେ, ଦ୍ୱିତୀୟବାର ପରିଦର୍ଶନରେ ତାଙ୍କର ସମସ୍ତ କାର୍ଯ୍ୟର ସୁଖ୍ୟାତି ଓ ସମର୍ଥନ କରି ଉକ୍ତ ସାହେବ ଅକପଟ ଚିତ୍ତରେ ସହାନୁଭୂତି ପ୍ରକାଶ କରିଥିଲେ । ପ୍ରୋକ୍ତ ଆନ୍ଦୋଳନର ନିଷ୍ପତ୍ତି ପରେ ୧୯୦୦ ଅବ୍ଦରେ ଯେତେବେଳେ ରାଧାନାଥ ବାବୁ ବର୍ଦ୍ଧମାନର ଇନ୍ସପେକ୍ଟର ପଦରେ ନିଯୁକ୍ତ ହୋଇ ପ୍ରିୟତମ ଉତ୍କଳ ଭୂମିରୁ ଦାରୁଣ ବିଦାୟ ଗ୍ରହଣ କଲେ, ତେତେବେଳେ ତାଙ୍କ ସ୍ଥାନରେ ବାବୁ ଜଗଦ୍‌ବନ୍ଧୁ ଲାହା ଓଡ଼ିଶାକୁ ଆସିଥିଲେ । ତାହାଙ୍କର ପ୍ରାୟ ଦେଢ଼ବର୍ଷ କାର୍ଯ୍ୟ ପରେ ସୁପରିଚିତ ଇନ୍ସପେକ୍ଟର ଶ୍ରୀଯୁକ୍ତ ଷ୍ଟାର୍କ ସାହେବଙ୍କ ଆଗମନ ପୂର୍ବେ ଶ୍ରୀଯୁକ୍ତ ରୁଥର ସାହେବ ଉକ୍ତ ପଦରେ କିଛି କାଳ ନିଯୁକ୍ତ ହୋଇ ଆସିଥିଲେ । ଏହି ଅଳ୍ପକାଳ ମଧ୍ୟରେ ତାହାଙ୍କ ଅସଦ୍ ବ୍ୟବହାରରେ ମଧୁସୂଦନଙ୍କୁ ଏପରି ମାନସିକ କଷ୍ଟ ଭୋଗ କରିବାକୁ ପଡ଼ିଥିଲା ଯେ, ତାହା ଗୋଟିଏ ଅଶାନ୍ତିର ଯୁଗ ବୋଲି ମନରେ ଅଙ୍କିତ ହୋଇଥିଲା । ସାହେବ ମଧୁସୂଦନଙ୍କ ସ୍ନେହପାଳିତ କୌଣସି ଖଳ କର୍ମଚାରୀଙ୍କଦ୍ୱାରା ଚାଳିତ ହୋଇ ତାହାଙ୍କୁ ନାନା ଅନଧିକାରଚର୍ଚ୍ଚା ଦୋଷରେ ଅଭିଯୁକ୍ତ କଲେ ଏବଂ କେତେକ ଅଧିକାର ନିଜ ହାତକୁ ଘେନିଯିବାକୁ ବସିଲେ । ଯାହାହେଉ, ଏହି ଅବିମୃଶ୍ୟକାରିତା ଓ ତ୍ରୁଟି ସେ ଅଳ୍ପଦିନ ପରେ ଏହିଠାରେ କାର୍ଯ୍ୟରୁ ଅବସର ଗ୍ରହଣ କଲାବେଳେ ଉତ୍ତମରୂପେ ବୁଝି ପାରିଥିଲେ ଏବଂ ସେଥିଲାଗି ସେ ଅନୁତାପର ଏପରି ତୀବ୍ର ଯାତନା ଅନୁଭବ କଲେ ଯେ, ଦିନେ ଅଯାଚିତ ଭାବରେ

ମଧୁସୂଦନଙ୍କ ଗୃହକୁ ଆସି ନିଜ କୃତ ଦୋଷ ପାଇଁ କ୍ଷମା ଭିକ୍ଷା କରିଥିଲେ । ଏହିପରି ଆଚରଣ ଅନେକଙ୍କ ଜୀବନରେ ଘଟିଅଛି । ଯେଉଁମାନେ ଆପଣାର ଅପରିଣାମଦର୍ଶିତ ବା ଅବିମୃଶ୍ୟକାରିତାବଶତଃ କିଛି ତ୍ରୁଟି କରିଅଛନ୍ତି, ସେମାନେ ପରେ ପୁଣି ତାହାଙ୍କ ନିକଟରେ କ୍ଷମାର୍ଥ ନତମସ୍ତକ ହୋଇଅଛନ୍ତି ଅଥବା ଗଭୀର ଅନୁତାପ ପ୍ରକାଶ କରିଅଛନ୍ତି । ଏହାହିଁ ମଧୁସୂଦନଙ୍କ ଶୁଦ୍ଧ ଚରିତ୍ରର ମହତ୍ତ୍ୱ ।

## ୬

ନବୀନ (ବିଂଶ) ଶତାବ୍ଦୀର ପ୍ରାରମ୍ଭରେ ମଧୁସୂଦନ ନବୀନ ବିଦ୍ୟାଳୟର ପ୍ରତିଷ୍ଠା ଲାଗି ବ୍ୟାକୁଳ ହେଲେ । ତେତେବେଳେ ଏ ନଗରର ପ୍ରତ୍ୟେକ ହାଇସ୍କୁଲରେ ଛାତ୍ରସଂଖ୍ୟାର ବୃଦ୍ଧି ଏବଂ ମଫସଲରୁ ଅନେକ ଦରିଦ୍ର ବିଦ୍ୟାର୍ଥୀ ଆସି ଇତସ୍ତତ ହେଉଥିବାର ଦେଖି ତାଙ୍କର ସେହି ଚିରପୋଷିତ ଅଭିଳାଷ ଆହୁରି ପ୍ରବଳ ହେଲା । ମନ ସଙ୍ଗରେ ଧନର ଯୋଗ ହେଲେ ଅଗ୍ନିଜଳ ସଂଯୋଗବତ୍ ତଦ୍ୱାରା ଅନେକ ମହତ୍ କାର୍ଯ୍ୟ ସାଧିତ ହୋଇପାରେ । କିନ୍ତୁ ସଂସାରରେ ଦେଖାଯାଏ, ଯେଉଁଠି ମନ ଅଛି, ସେଠାରେ ଧନ ନାହିଁ; ଅଥବା ଯେଉଁଠି ଧନ ଥାଏ, ସେଠାରେ ମନ ନ ଥାଏ । ମାତ୍ର ଉଭୟ ମଧ୍ୟରେ ମନର ଶକ୍ତି ବଳବତ୍ତର । ତାହାରି ବଳରେ ମଧୁସୂଦନ ସମଗ୍ର ପ୍ରାଣକୁ ଉକ୍ତ ମହତ୍ କାର୍ଯ୍ୟରେ ନିୟୋଜିତ କରିଥିଲେ । ୧୯୦୧ ଖ୍ରୀଷ୍ଟାବ୍ଦର ଫେବୃଆରୀ ମାସର ଚତୁର୍ଥ ଦିବସ ସୋମବାରରେ ଏହି ବିଦ୍ୟାଳୟର ପ୍ରତିଷ୍ଠା ହେଲା । ପାଠକମାନଙ୍କୁ ଉତ୍ତମରୂପେ ଜଣାଥିବ ଯେ ଉକ୍ତ ବର୍ଷର ଜାନୁଆରୀ ମାସ ୨୨ ତାରିଖ ମଙ୍ଗଳବାର ସନ୍ଧ୍ୟା ସମୟରେ ପୁଣ୍ୟକାରୁଣ୍ୟବତୀ କୀର୍ତ୍ତିଶାଳିନୀ ମହାରାଣୀ ଭିକ୍ଟୋରିଆ ଦେବୀ ଭବଧାମ ତ୍ୟାଗ କରିଥିଲେ । ଶୋକାକୁଳ ରାଜଭକ୍ତ ପ୍ରଜାବର୍ଗ ନାନା ଭାବରେ ତାଙ୍କର ସ୍ମୃତିରକ୍ଷା କରିବାକୁ ଲାଗିଲେ । କିନ୍ତୁ ମଧୁସୂଦନଙ୍କ ଭଳି ଜଣେ ପ୍ରଜା ତେତେବେଳେ ତାହାଙ୍କ ନାମରେ ବିଦ୍ୟାଳୟ ସ୍ଥାପନ କରି ସ୍ମୃତିକୁ ଅମର କରିଦେଲେ ଏବଂ କେବଳ ବାକ୍ୟତଃ ନୁହେଁ, କାର୍ଯ୍ୟତଃ ଗଭୀର ରାଜଭକ୍ତିର ପରିଚୟ ପ୍ରଦାନ କଲେ । ପ୍ରତିଷ୍ଠା ଦିବସ କଟକ ଚାନ୍ଦିନୀଚୌକ ଥାନାର ପୂର୍ବଭାଗସ୍ଥିତ ଦାଦର ବକ୍ସଙ୍କ କୋଠାର ଦ୍ୱିତଳରେ ମଧୁସୂଦନ ଏଗାରଜଣ ଶିକ୍ଷକ ଏବଂ ତଦୀୟ ସମ୍ବନ୍ଧୀ ଶ୍ରୀଯୁକ୍ତ ରାଜମୋହନ ବସୁଙ୍କୁ (ସମ୍ପାଦକ) ଘେନି ଉପସ୍ଥିତ ହେଲେ ଏବଂ ଦଣ୍ଡାୟମାନ ହୋଇ ଉଦ୍‌ଗତ ଚିତ୍ତରେ ବ୍ରହ୍ମୋପାସନାଦ୍ୱାରା ଶକ୍ତି ଆଉ "ଅୟମାରମ୍ଭଃ ଶୁଭାୟ ଭବତୁ" ଏହି ଆଶୀର୍ବାଦ ଭିକ୍ଷା କଲେ । ସେଦିନର ଦିବ୍ୟଜ୍ୟୋତିଉଦ୍ଭାସିତ ଉଦାର ମୂର୍ତ୍ତି ଅଦ୍ୟାପି ଅନେକ ଶିକ୍ଷକଙ୍କ ସ୍ମୃତିପଟରେ ଜାଗରୁକ ଅଛି ।

**ଶିକ୍ଷକଗଣ ।**

ଶ୍ରୀଯୁକ୍ତ ଧୀରେନ୍ଦ୍ରନାଥ ଚୌଧୁରୀ, ଏମ.ଏ, (ହେଡ୍‌ମାଷ୍ଟର)
'' ନନ୍ଦକିଶୋର ବଳ, ବି.ଏ.*
'' ଅମୃତାନନ୍ଦ ରାୟ (ସହ-ସମ୍ପାଦକ)+
'' ଚନ୍ଦ୍ରଶେଖର ନନ୍ଦ
'' ମାଧବାନନ୍ଦ କାବ୍ୟତୀର୍ଥ
'' ମିଛୁ ନନ୍ଦ
'' ମୃତ୍ୟୁଞ୍ଜୟ ରଥ
୰ ଦାମୋଦରପ୍ରସାଦ ତେଜ
'' ଚୈତନ୍ୟ ପ୍ରସାଦ ଜେନା
'' ମୌଲବୀ ବସୀରୁଦ୍ଦିନ ।

ପ୍ରଥମ ମାସରେ ସମସ୍ତ ଶ୍ରେଣୀ ପୂର୍ଣ୍ଣ ହୋଇଗଲା । ହେଡ଼ମାଷ୍ଟର ଧୀରେନ୍ଦ୍ର ବାବୁ ଯେପରି ଜଣେ ସୁବକ୍ତା, ସେହିପରି ବଙ୍ଗଳାର ଜଣେ ସୁଲେଖକ । ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ଶିକ୍ଷାଦାନ ଏବଂ ଯୋଗ୍ୟ ସହଯୋଗୀ ଶିକ୍ଷକମାନଙ୍କର ଅଧ୍ୟାପନା ରୀତିରେ ଆକୃଷ୍ଟ ହୋଇ ଅନେକ ଛାତ୍ର ଅଳ୍ପକାଳ ମଧ୍ୟରେ ସେଥିରେ ପ୍ରବେଶଲାଭ କଲେ, କିନ୍ତୁ ଛାତ୍ରସଂଖ୍ୟାର ବୃଦ୍ଧିସଙ୍ଗେ ବିଦ୍ୟାଳୟର ଆୟ ସମୃଦ୍ଧି ହେଉ ନ ଥିଲା । କାରଣ ଅନେକ ଛାତ୍ର ବିନା ବେତନରେ ପଢ଼ିବାକୁ ଅନୁମତି ପାଉଥିଲେ । ନାନା ସ୍ଥାନରୁ ଏତେ ଦରିଦ୍ର ଛାତ୍ର ଆସି ଦରିଦ୍ର-ବନ୍ଧୁ ମଧୁସୂଦନଙ୍କ ନିକଟରେ ରୁଣ୍ଡ ହେଲେହେଁ ସେ ବିଦ୍ୟାଳୟର ଆୟହାନି ଭୟରେ କାତର ନ ହୋଇ କାହାକୁ ଅର୍ଦ୍ଧ ବେତନରେ, କାହାକୁ ବା ବିନା ବେତନରେ ପଢ଼ିବାକୁ ଆଦେଶ ଦେଉଥିଲେ । ତେତେବେଳେ ପ୍ରତି ଶନିବାର କିଛି ସମୟ ଛାତ୍ରମାନଙ୍କୁ ନୀତିଶିକ୍ଷା ଦେବାର ବିଧି ଥିଲା ଏବଂ ଶେଷରେ ବିଦ୍ୟାଳୟର କାର୍ଯ୍ୟ ପର୍ଯ୍ୟାଲୋଚନା କରିବାପାଇଁ ଶିକ୍ଷକମାନଙ୍କର ଗୋଟିଏ କମିଟି ବସୁଥିଲା । ସେଥିରେ

* ଟାଉନ ସ୍କୁଲରେ ଶିକ୍ଷକତା କାର୍ଯ୍ୟ କରୁଥିଲେ । ଉକ୍ତ ସ୍କୁଲର ହେଡ଼ମାଷ୍ଟର ବିଶ୍ୱନାଥ ବାବୁ ଏହିଠାରୁ ଶିକ୍ଷକତା କାର୍ଯ୍ୟ ତ୍ୟାଗ କରି ସ୍ୱାଧୀନଭାବରେ 'ଉତ୍କଳ ସାହିତ୍ୟ' ସମ୍ପାଦନରେ ଆତ୍ମାକୁ ନିୟୋଜିତ କରିଅଛନ୍ତି ।

\+ ଶ୍ରୀଯୁକ୍ତ ଜଗନ୍ନାଥ ରାଓଙ୍କ କନିଷ୍ଠ ଜାମାତା ଏବଂ ବ୍ରାହ୍ମ ପ୍ରଚାରକ ଶ୍ରୀ ଗୌରଗୋବିନ୍ଦ ରାୟଙ୍କର ପୁତ୍ର । ସେ ଅବୈତନିକ ଶିକ୍ଷକ ଏବଂ ସହକାରୀ ସମ୍ପାଦକ ହୋଇ କାର୍ଯ୍ୟ କରୁଥିଲେ । ପ୍ରଥମାବସ୍ଥାର ଏହାଙ୍କ ସାହାଯ୍ୟ ପ୍ରଶଂସନୀୟ ।

ମଧୁବାବୁ ସ୍କୁଲର ସଭାପତି ରୂପେ ଉପସ୍ଥିତ ହୋଇ ପ୍ରତି ସପ୍ତାହର କାର୍ଯ୍ୟର ତତ୍ତ୍ୱ ନେଉଥିଲେ । କମିଟି ଅବୈତନିକଛାତ୍ରବୃତ୍ତି ରହିତ କରିବାପାଇଁ ତାହାଙ୍କୁ କେତେକ ଥର ଅନୁରୋଧ କରିଥିଲେହେଁ ସେ ତାହା ପାଳନ କରି ପାରୁ ନ ଥିଲେ । ବରଂ ସେଥିପାଇଁ ହାତରୁ ଟଙ୍କା ଗଣୁଥିଲେ । ଏହି ଅନନ୍ୟ ସାଧାରଣ ଉଦାରତା ଉଦାରଚରିତ ପୁରୁଷଙ୍କ ବ୍ୟତୀତ ଅନ୍ୟତ୍ର ସମ୍ଭବ କି ? ତେତେବେଳେ ଶିକ୍ଷକମାନେ ଅଳ୍ପ ବେତନରେ କାର୍ଯ୍ୟ କରୁଥିବାରୁ ମାସରେ ପ୍ରାୟ ୨୪୦ ଟଙ୍କା ବ୍ୟୟ ପଡୁଥିଲା । ମାତ୍ର ଛାତ୍ରଦତ୍ତ ବେତନର ଆୟ ଦୁଇ ଶତ ଟଙ୍କାରୁ ଢେର ଊଣା ଥିଲା । ସୁଖର କଥା ଯେ ବାମଣ୍ଡାର ମହାରାଜ ସଚ୍ଚିଦାନନ୍ଦ ତ୍ରିଭୁବନ ଦେବ ମାସିକ ୪୦ ଟଙ୍କା ସାହାଯ୍ୟ ଦେବାକୁ ଅଙ୍ଗୀକାର କରିଥିଲେ । ତଥାପି ତାହାଙ୍କୁ ମାସିକ ପ୍ରାୟ ୫୦ ଟଙ୍କା ସାହାଯ୍ୟ କରିବାକୁ ପଡୁଥିଲା । କୌଣସି କୌଣସି ମାସରେ ୬୦ ଟଙ୍କା ବା ତଦୂର୍ଦ୍ଧ୍ୱ ମଧ ପଡ଼ିଅଛି । ଦୁଇ ଶତ ଟଙ୍କା ବେତନଭୋଗୀ ଜଣେ କର୍ମଚାରୀ ପକ୍ଷରେ ସାଧାରଣ ହିତରେ ଏପରି ଅଜସ୍ର ଅର୍ଥବ୍ୟୟ ସାଧାରଣ ଜୀବନରେ କଦାପି ସମ୍ଭବ ନୁହେ । ଛାତ୍ରମାନଙ୍କର ବେତନ ଟିକିଏ ବଢ଼ାଇ ଦେଇଥିଲେ ମଧ ଆୟର ମାତ୍ରା ଯଥେଷ୍ଟ ବଢ଼ିଥାନ୍ତା । ପ୍ରଥମ ଶ୍ରେଣୀରେ ତେତେବେଳେ ଏକ ଟଙ୍କା ଚାରିଅଣା ମାତ୍ର ବେତନ ଥିଲା । ବର୍ତ୍ତମାନ ତୁଳନାରେ ତାହା ଅର୍ଦ୍ଧ ବେତନ ଥିଲା ବୋଲି କହିଲେ ଚଳେ । ଏ ସବୁ ଅଭାବ ଦେଖି ଅନେକ ବନ୍ଧୁ ତାହାଙ୍କୁ ସରକାରୀ ସାହାଯ୍ୟ ଗ୍ରହଣ କରିବାକୁ ପୁନଃ ପୁନଃ ଅନୁରୋଧ କଲେ; କିନ୍ତୁ ସେ ଉକ୍ତ ପ୍ରସ୍ତାବରେ ଏକାନ୍ତ ଅସମ୍ମତ ହେଲେ । ତାଙ୍କର ମତରେ ଏହି ଥିଲା, ''ସାମାନ୍ୟ ଅର୍ଥଲୋଭରେ ସମସ୍ତ ସ୍ୱାଧିକାର ଓ ସ୍ୱାଧୀନତା ହରାଇ ବସିବା ବୁଦ୍ଧିମାନର କାର୍ଯ୍ୟ ନୁହେଁ ।'' ଏ କଥା କିପରି ଅକ୍ଷରେ ଅକ୍ଷରେ ସତ୍ୟ, ବର୍ତ୍ତମାନ ଉଚ୍ଚ ବିଦ୍ୟାଳୟମାନଙ୍କର ଏହି ବେତନ– ଆନ୍ଦୋଳନ ସମୟରେ ବିଶେଷଜ୍ଞ ପାଠକମାନେ ବୁଝି ପାରୁଥିବେ । ସରକାରୀ ସାହାଯ୍ୟ ଗ୍ରହଣରେ ଆପତ୍ତି ଦେଖି ଅନେକେ ଭାବିଥିଲେ, ଏ ସ୍କୁଲ ଆଉ ସହଜରେ ବିଶ୍ୱବିଦ୍ୟାଳୟର ଅଙ୍ଗୀକରଣ (Affiliation) ଲାଭ କରିବ ନାହିଁ, କିନ୍ତୁ ସେଥିରେ କୌଣସି ବାଧା ପଡ଼ି ନାହିଁ । ପ୍ରଥମ ବର୍ଷ ଶେଷରେ ଅଥବା ୧୯୦୨ ଖ୍ରୀଷ୍ଟାବ୍ଦରେ ଏହାର ଛାତ୍ରମାନେ ପ୍ରବେଶିକା ପରୀକ୍ଷାର୍ଥ ଉପସ୍ଥିତ ହୋଇଥିଲେ । ତନ୍ମଧ୍ୟରୁ ନିମ୍ନଲିଖିତ ଛଜଣ ଛାତ୍ର କୃତକାର୍ଯ୍ୟ ହୋଇଥିଲେ । ଶ୍ରୀ ଉମାକାନ୍ତ ମହାପାତ୍ର, ପ୍ରଶାନ୍ତ ରାଓ (ମଧ୍ୟମ ପୁତ୍ର), ନଗେନ୍ଦ୍ରନାଥ ଶୀଳ, ଆର୍ତ୍ତବନ୍ଧୁ ମହାନ୍ତି, ଜଗନ୍ନାଥ ମହାନ୍ତି ଓ ବୈଦ୍ୟନାଥ ପଟ୍ଟନାୟକ । ପ୍ରଥମ ବର୍ଷରେ ଏପରି ସଫଳତା ଯଥେଷ୍ଟ ପ୍ରଶଂସାର ବିଷୟ ନୁହେ କି ? ସେ ସମୟରେ ବିଦ୍ୟାଳୟର ଉନ୍ନତି ବିଷୟରେ ଅନ୍ୟ କୌଣସି ବାଧା ତେତେ ନ ଥିଲେହେଁ ଉପଯୁକ୍ତ

ଗୃହର ଅଭାବ ପ୍ରଧାନ ଅନ୍ତରାୟ ଥିଲା । ପୂର୍ବୋକ୍ତ କୋଠାରେ ସ୍ଥାନ ଯଥେଷ୍ଟ ନ ହେବାରୁ ପ୍ରାୟ ଦେଢ଼ବର୍ଷ ପରେ ଉପଯୁକ୍ତ ଗୃହ ଅଭାବରୁ ଅନନ୍ୟୋପାୟ ହୋଇ କାଳିଗଳିସ୍ଥ ନିଜ ଗୃହରେ କେତେକ ମାସ କରାଇଲେ । ତତ୍ପରେ ସେଠାରୁ ସ୍ୱୀୟ କନିଷ୍ଠ ସହୋଦର ଜଗନ୍ନାଥ ବାବୁଙ୍କ ଅଧିକୃତ ବାଙ୍କାବଜାରସ୍ଥ 'ଶ୍ରୀହାଟ' ନାମରେ ପରିଚିତ ସ୍ଥାନକୁ ସ୍କୁଲ ଉଠି ଆସିଲା । ନବନିର୍ମିତ ସ୍ଥାୟୀ ଗୃହକୁ ଯିବା ପର୍ଯ୍ୟନ୍ତ ଏହିଠାରେ ସ୍କୁଲ ହେଉଥିଲା । ନୂତନ ଗୃହର କଥା ପଶ୍ଚାତ୍ ଯଥାସ୍ଥାନରେ କହିବୁଁ ।

ଟ୍ରେନିଙ୍ଗ ସ୍କୁଲର ହେଡ଼ମାଷ୍ଟର ପଦରେ ଥାଇ ମଧୁବାବୁ ତିନି ମାସ (୧୮୯୮ର ଜାନୁଆରୀ ଅଧରୁ ଅପ୍ରେଲ ଅଧ ପର୍ଯ୍ୟନ୍ତ) ଇନ୍‌ସ୍ପେକ୍ଟରୀ କର୍ମ ଚଳାଇଥିଲେ । ଏକ ହାତରେ ଏହିପରି ଦୁଇ ହାତର କାମ କରିବା ତାଙ୍କ ଜୀବନରେ କେତେ ଦେଖାଯାଇଅଛି । ୧୯୦୧ ସାଲର ନବେମ୍ବର ମାସରେ ସେ ବଙ୍ଗୀୟ ପ୍ରାଦେଶିକ ଶିକ୍ଷା ବିଭାଗର ସପ୍ତମ ଶ୍ରେଣୀକୁ (୨୫୦ ଟଙ୍କା) ଉନ୍ନୀତ ହେଲେ । ବଙ୍ଗଦେଶ ହୋଇଥିଲେ ତାଙ୍କ ପରି ଯୋଗ୍ୟ ଲୋକ ତେତେବେଳେ ଚାରି ଶତ ଟଙ୍କାରୁ କମ୍ ପାଉ ନ ଥାନ୍ତେ । ଚିହ୍ନରା ଗ୍ରାହକ ଅଭାବରୁ ଅନେକଙ୍କର ସୌରଭ ସତ୍ତ୍ୱେ ଏହିପରି ବନମାଳତୀର ଦଶା ଦେଖାଯାଏ । ୧୯୦୫ ଖ୍ରୀଷ୍ଟାବ୍ଦରେ ବିଭାଗୀୟ ନୂତନ ବ୍ୟବସ୍ଥାରେ ସେ ଉକ୍ତ ପଦରେ ଥାଇ ଷଷ୍ଠ ଶ୍ରେଣୀକୁ ଆସି ମାସିକ ୩୫୦ ଟଙ୍କା ବେତନ ପ୍ରାପ୍ତ ହେଲେ । ସେହି ବର୍ଷ ଦୁଇମାସ (ସେପ୍ଟେମ୍ବର ଠାରୁ ନବେମ୍ବର) ଏବଂ ତତ୍ପରବର୍ଷ ତିନି ମାସ (୧୯୦୬ର ଅପ୍ରେଲଠାରୁ ଜୁଲାଇ) ଓଡ଼ିଶା ସ୍କୁଲ ସମୂହର ଇନ୍‌ସ୍ପେକ୍ଟର କାର୍ଯ୍ୟ ପରିଚାଳନ କରିଥିଲେ । ୧୯୦୭ ସାଲର ଅକ୍ଟୋବର ୭ ତାରିଖରେ ମଧୁବାବୁ ବିଭାଗୀୟ ପଞ୍ଚମ ଶ୍ରେଣୀକୁ ଉନ୍ନୀତ ହୋଇ ମାସିକ ଚାରିଶତ ଟଙ୍କା ବେତନପ୍ରାପ୍ତ ହେଲେ ଏବଂ ଉକ୍ତ ମାସ ଦଶ ତାରିଖଠାରୁ ୧୯୦୮ର ମାର୍ଚ୍ଚ ମାସ ପର୍ଯ୍ୟନ୍ତ ପ୍ରାୟ ପାଞ୍ଚ ମାସ କାଳ ଇନ୍ସପେକ୍ଟର ପଦରେ ଅସ୍ଥାୟୀଭାବରେ କାର୍ଯ୍ୟ କଲେ । ଏହି କେତେକ ମାସ ସେ ଭାରତୀୟ ଶିକ୍ଷା ବିଭାଗରେ (Indian Service)* ସ୍ଥାନ ପାଇଥିବାରୁ ମାସିକ ଆଉ ଏକଶତ ଟଙ୍କା ଅଧିକା ବେତନ ପାଉଥିଲେ । ଏହି ଅସ୍ଥାୟୀ କର୍ମ ଶେଷରେ ଆଉ ସେ ହେଡ଼ମାଷ୍ଟର ପଦକୁ ଫେରି ନାହାନ୍ତି । ସେହି ବର୍ଷର ମାର୍ଚ୍ଚ ୧୪ ତାରିଖଠାରୁ ସେ ଓଡ଼ିଶାର ଅତିରିକ୍ତ ଇନ୍ସପେକ୍ଟର ପଦରେ ନିଯୁକ୍ତ ହେଲେ । ଇନ୍‌ସ୍ପେକ୍ଟର ପଦରେ କେହି ନିଯୁକ୍ତ ହୋଇ ଆସି ନ ଥିବାରୁ ସେ ଉକ୍ତ ପଦରେ ଥାଇ ଉଭୟ କାର୍ଯ୍ୟ ଏକାକୀ ସୁଦକ୍ଷତା ସହକାରେ ପରିଚାଳନ କରିଥିଲେ । ଏଠାରେ ଅନେକଙ୍କ ମନରେ ପ୍ରଶ୍ନ ଉଦିତ ହୋଇପାରେ ଯେ ଜଣେ ବ୍ୟକ୍ତି ଦୁଇ ଜଣଙ୍କର ଦାୟିତ୍ୱପୂର୍ଣ୍ଣ

* Indian Educational Service – ସଂ.

ଏତେ କାର୍ଯ୍ୟ ସେ ରୋଗକ୍ଷୀଣ ଜରାଜୀର୍ଣ୍ଣ ଦେହରେ କିପରି ଚଳାଉଥିଲେ ? ନ ଦେଖିଥିବା ଲୋକଙ୍କୁ ଏଠାରେ ତହିଁର ଟିକିଏ ଆଭାସ ଦେବା ସଙ୍ଗତ ମନେ କରୁଅଛୁଁ । ଆଜିକାଲି ଅନେକ ହାକିମ ଯେପରି କିରାଣୀଙ୍କ ଉପରେ ସମସ୍ତ ନିର୍ଭର କରି ନିଶ୍ଚିତ ବସିଥାନ୍ତି, ମଧୁବାବୁ ସେପରି କରୁ ନ ଥିଲେ । ସେ ସମସ୍ତ କାଗଜପତ୍ର ତନ୍ନ ତନ୍ନ କରି ଦେଖୁଥିଲେ । ପ୍ରାୟ ସମସ୍ତ ସରକାରୀ ଚିଠିପତ୍ର ନିଜ ହାତରେ ସେ ଚିଠା କରୁଥିଲେ । ଏ ସମ୍ବନ୍ଧରେ କାହାରିଠାରୁ କିଛି ପ୍ରସ୍ତାବ ଶୁଣିଲେ ସେ ଉତ୍ତର ଦେଉଥିଲେ, ''କଣ କରିବି, ଏ ଅଫିସରେ ସେପରି 'Intelligent hand' ନାହିଁ, ଯେ ଏ ସବୁ କରି ପାରିବ ।'' ପାଠକେ, ବର୍ତ୍ତମାନ କର୍ମୀ ମଧୁସୂଦନଙ୍କ କର୍ମ-କକ୍ଷ ଦେଖନ୍ତୁ । ଗୋଟିଏ କ୍ଷୁଦ୍ର ନିର୍ଜନ ନିରାଡ଼ମ୍ବର ପ୍ରକୋଷ୍ଠ । ଗୋଟିଏ ଚୌକୀ ଉପରେ ପଦଦ୍ୱୟ ଜାକି ମଧୁସୂଦନ ନିରୀହ ଶାନ୍ତଭାବରେ ଆସୀନ, ସମ୍ମୁଖରେ ଗୋଟିଏ ମେଜ ଉପରେ ସ୍ତୂପୀକୃତ 'ଫାଇଲ' ବା ଚିଠିପତ୍ର ସିହା । ସେଥି ମଧ୍ୟରୁ ଖଣ୍ଡିଏ ଖଣ୍ଡିଏ ଉଠାଇ ଚକ୍ଷୁ ପାଖକୁ ଆଣି ଜାନୁବୈଠି ଉପରେ ରଖି ଅଧୋମୁଖରେ ଲେଖୁଥାନ୍ତି । କ୍ଷଣକ ପରେ ଲଘୁଶବ୍ଦସହକାରେ ସେଉଟି ଭୂତଳରେ ପଡ଼େ । ଏହିପରି ଉପର୍ଯ୍ୟୁପରି ଖଣ୍ଡିଏ ଖଣ୍ଡିଏ ପଡ଼ି ତଳେ ପୁଣି ସେଗୁଡ଼ିକ ସ୍ତୂପୀକୃତ ହେଉଥାଏ । ପାର୍ଶ୍ୱଦେଶରେ ସଶଙ୍କ ଚପରାସୀ କେହି କୁବ୍ଜ ପୃଷ୍ଠରେ କରଯୋଡ଼ି ଠିଆ ହୋଇ ନାହିଁ, କିବା ଦ୍ୱାରଦେଶରେ 'ହଜୁର ହଜୁର' କରିବାକୁ ଦ୍ୱାରବାନ୍ କେହିନାହିଁ, ଅଥବା ହୁକା ଉପରେ ମଧ୍ୟେ ମଧ୍ୟେ ସାଗ୍ନିକ ଚିଲମ ଥୋଇ ପଙ୍ଖା କରିବାକୁ କେହି ଭୃତ୍ୟ ନଥାଏ । ଏଣେ ଅସହ୍ୟ ଶୂଳ-ଯନ୍ତ୍ରଣା– ପେଟରେ ଗୋଟିଏ ଫ୍ଲାନେଲ ପଟୀ ଦୁଇ ତିନି ଘେର ଖାଇ ଜଡ଼ିତ ରହିଅଛି । ବେଦନାରେ ଛଟପଟ ହୋଇ ମଧୁସୂଦନ ମଧ୍ୟେ ମଧ୍ୟେ ଦୀର୍ଘଶ୍ୱାସ ପ୍ରାୟ ଜୀର୍ଣ୍ଣଶୂଳଜନିତ ଗୋଟିଏ ଗୋଟିଏ ବାୟୁ ଉଦ୍‌ବମନ କରୁଅଛନ୍ତି ଏବଂ ସେଥି ସଙ୍ଗେ ସଙ୍ଗେ ଯେନ୍ତେ ବେଦନାର ହ୍ରାସ ଅନୁଭବ କରୁଅଛନ୍ତି । କେବେ କେବେ ବା ନିମୀଳିତଚକ୍ଷୁରେ ଉର୍ଦ୍ଧ୍ୱମୁଖ ହୋଇ ଚକ୍ଷୁଦ୍ୱୟର ଅର୍ଦ୍ଧବିକାଶରେ କ୍ଷଣିକ ଚିନ୍ତାର ଅଭିନୟ ପୂର୍ବକ ପୁଣି ପୂର୍ବବତ୍ ପାଠପୂର୍ବକ ଲେଖୁଅଛନ୍ତି । ଶରୀର ପ୍ରତି ଆଦୌ ଭ୍ରୂକ୍ଷେପ ନାହିଁ । ଦେଖିଲେ ବୁଝାଯାଏ, କର୍ମହିଁ ଯେପରି ତାଙ୍କର ପ୍ରାଣ । ଏକାଗ୍ରମାନସରେ କର୍ମ କରୁଥିଲେ ତାହାଙ୍କ ପ୍ରାଣରେ ଶାନ୍ତି ଏବଂ ଶାରୀରିକ ବେଦନାର ଉପଶମ ହୁଏ ବୋଲି ତାହାଙ୍କ ମୁଖରୁ ଅନେକ ସମୟରେ ପ୍ରକାଶ ପାଏ ।

ଦିନେ ଜଣେ ବନ୍ଧୁ ଘୋର ଯାତନାରେ ଲେଖାପଢ଼ା ନିଷେଧ କରିବାରୁ ପରା ସେ ଉତ୍ତର କରିଥିଲେ ଯେ ''ଲେଖାରେ କି ପଢ଼ାରେ ମନଟା ଲାଗିଗଲେ ଯାତନାଟା ଟିକିଏ ଊଣା ହେଲାପରି ଜଣାପଡ଼େ । ପେଟ କୁଟୁ କୁଟୁ ହୋଇ କାଟୁଛି, ମୁଁ ବି କୁଟୁ କୁଟୁ

ହୋଇ ଲାଗିଛି । ଦେଖାଯାଉ, କାହାର କେତେ ବଳ ?'' ଅଧିକାଂଶ ସମୟ ସେ ଏହିପରି ରୋଗ ସଙ୍ଗରେ ଯୁଦ୍ଧ କରି କାର୍ଯ୍ୟ ସାଧନ କରିଅଛନ୍ତି । ଫଳରେ ରୋଗର ପରାଜୟ ଏବଂ ମଧୁସୂଦନଙ୍କର ଜୟ ଓ ସିଦ୍ଧିଲାଭ । ବାଳକମାନଙ୍କ ପ୍ରତି ତାଙ୍କର ଏହି ଉପଦେଶକୁ ସେ ସ୍ୱଜୀବନରେ ଫଳାଇ ଦେଇଅଛନ୍ତି –

''ସିଦ୍ଧି ଲଭିବ ଯେବେ ନରେ,
ତେବେ ଏକାଗ୍ରମାନସରେ
ସ୍ଥିର ସଂକଳ୍ପ ଅନୁସରି
କୌଶଳେ କର୍ମ ଯାଅ କରି ।''

ମଧୁସୂଦନ ସେହି ଜୀବନବ୍ୟାପୀ ରୋଗଯନ୍ତ୍ରଣା ମଧ୍ୟରେ କିପରି କୌଶଳରେ କର୍ମ କରିଗଲେ, ତାହା ପ୍ରତ୍ୟେକ ଉନ୍ନତି-ଅଭିଳାଷୀ ପୁରୁଷଙ୍କର ଅନୁକରଣୀୟ । କର୍ମବୀର ଚକ୍ଷୁରେ ରୋଗ ସେତେ଼ ପ୍ରତିବନ୍ଧକ ନୁହେ । ଜଳସ୍ରୋତ ସମ୍ମୁଖରେ ସେ ବାଲିବନ୍ଧ ପ୍ରାୟ । ସଂସାରରେ କେତେ ଲୋକ ସୁସ୍ଥ ଦେହରେ ଥାଇ* 'ଆଳସ୍ୟରେ ବଳ ବୁଦ୍ଧି କ୍ଷୟ' କରି ଦୁର୍ଲଭ ମନୁଷ୍ୟଜନ୍ମ ଅକାରଣ କରୁଅଛନ୍ତି ! ମଧୁସୂଦନ ସୁସ୍ଥ ଦେହରେ ଥିଲେ ବହୁ ଗୁଣରେ କାର୍ଯ୍ୟ କରି ପାରିଥାନ୍ତେ ସତ୍ୟ, କିନ୍ତୁ ଏହା ମଧ୍ୟ ବକ୍ତବ୍ୟ ଯେ, ରୋଗ ସହିତ ସର୍ବଦା ଯୁଦ୍ଧରେ ଜୟଯୁକ୍ତ ହୋଇ ସେ ଆପଣାର ଶକ୍ତିକୁ ବହୁ ଗୁଣରେ ବଢ଼ାଇ ଅଛନ୍ତି ।

## ୭

ଇନ୍ସପେକ୍ଟର ଥିବା ସମୟରେ ମଧୁ ବାବୁଙ୍କର ବିଦ୍ୟାଳୟ ପରିଦର୍ଶନ ରୀତି ସ୍ୱତନ୍ତ୍ର ଥିଲା । ସେ ଯେ ଶିକ୍ଷକମାନଙ୍କ କାର୍ଯ୍ୟ ଓ ଶିକ୍ଷାଦାନ ପ୍ରଣାଳୀ ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିଥିଲେ, ତାହା ନୁହେଁ–ସେଥି ସଙ୍ଗେ ସଙ୍ଗେ ଛାତ୍ରମାନଙ୍କର ଆଚରଣ ଆବରଣ ପ୍ରତି ବିଶେଷରେ ଦୃଷ୍ଟି ଦେଉଥିଲେ । ବିଦ୍ୟାଳୟର କୌଣସି ଗୋଟିଏ ଶ୍ରେଣୀରେ ଉପସ୍ଥିତ ହେଲେ ସେ ଆଗେ ଶିକ୍ଷକଙ୍କୁ ପାଠ୍ୟ ବିଷୟରୁ ପ୍ରଶ୍ନ କରିବାକୁ ଅଥବା ଛାତ୍ରମାନଙ୍କୁ ପାଠ୍ୟାଂଶ ପାଠ କରିବାକୁ ଆଦେଶ ଦିଅନ୍ତି । ପଢ଼ିବାବେଳେ ଛାତ୍ରମାନଙ୍କ ଉପରେ ସମ୍ପୂର୍ଣ୍ଣ ଦୃଷ୍ଟି ପଡ଼ିଯାଏ । କିଏ ପୁସ୍ତକ ଦ୍ୱାରା ମୁଖ ଆବରଣ କରୁଅଛି, କିଏ ବା ଅନ୍ୟମନସ୍କ ଭାବରେ ହସ୍ତପଦର ଅସ୍ଥିରତା ପ୍ରଦର୍ଶନ କରୁଅଛି, କାହାର ତାମ୍ବୁଳରକ୍ତ ଓଷ୍ଠାଧର ମଧ୍ୟରେ ପେଷଣୀର କ୍ରିୟା ଚାଲୁଅଛି, କାହାର ବୋତାମ ଫିଟି ବକ୍ଷସ୍ଥଳଟା ଉନ୍ମୁକ୍ତ ଦିଶୁଅଛି, ଇତ୍ୟାଦି ସମସ୍ତ

* ଆଳସ୍ୟେ ବଳବୁଦ୍ଧି କ୍ଷୟ, ଉଦ୍ୟମେ ସର୍ବ କାର୍ଯ୍ୟେ ଜୟ । ମଧୁସୂଦନ ।

କୁକ୍ରିୟାକୁ ମଧୁସୂଦନଙ୍କ ସ୍ଥିର ଗମ୍ଭୀର ଦୃଷ୍ଟି କ୍ଷଣକେ ସ୍ଥଗିତ କରିଦିଏ । ପ୍ରତ୍ୟେକ ଛାତ୍ର ସେ ଦୃଷ୍ଟି-କଷ୍ଟି-ପଥରରେ କଷାହୋଇ କ୍ଷଣକେ ଜଣା ପଡ଼ିଯାନ୍ତି । ଶିକ୍ଷକ ମଧ୍ୟରୁ କେହି କେହି ପ୍ରଶ୍ନ କରିବାକୁ ପଡ଼ିଲାକ୍ଷଣି ପାଠ୍ୟପୁସ୍ତକ ଧରିବାକୁ ଇତସ୍ତତଃ ହୋଇ ପଡ଼ନ୍ତି । କେହି ଆପଣାକୁ ଉତ୍ତରକ୍ଷମ ନ ଜାଣି ଗୋଟିଏ ଗୋଟିଏ ଦୁରୂହ ପ୍ରଶ୍ନ କରିଦେଇ ନୀରବ ହୁଅନ୍ତି । କେହି ବା ଅପ୍ରସାଙ୍ଗିକ ପ୍ରଶ୍ନମାନ କରି ବୃଥା ଶିକ୍ଷାଗୃହକୁ ତାରସ୍ୱରମୁଖର କରନ୍ତି । କେହି ପୁଣି ଗୋଟିଏ ପିଲାକୁ ପଚାରି ଦେଇ ଥରେ ତାକୁ ଥରେ ବାବୁଙ୍କ ମୁଖକୁ ଅନାଇ ଅନ୍ୟ ପିଲାଙ୍କୁ ବିସ୍ମରି ମନେମନେ ଯେହ୍ନେ ଇଷ୍ଟଦେବ ସ୍ମରଣ କରନ୍ତି । କେହି ସ୍ୱପ୍ରଶ୍ନର ଉତ୍ତର ନ ପାଇଲେ ନାନା କୂଟପ୍ରଶ୍ନଦ୍ୱାରା ଛାତ୍ରମାନଙ୍କ ଠାରୁ ଉତ୍ତର ଆଦାୟ ନକରି ତେତିକିରେ କର୍ତ୍ତବ୍ୟ ସାଙ୍ଗକରି ବକବତ୍ ଧ୍ୟାନନିଷ୍ଠ ହୋଇ ପଡ଼ନ୍ତି । କେହି କେହି ପଣ୍ଡିତମ୍ମନ୍ୟ ପୁଣି ପ୍ରଶ୍ନ କରୁ କରୁ ସ୍ୱୟଂ ଉତ୍ତର କରି ପାଣ୍ଡିତ୍ୟଟା ପଦାରେ ପକାନ୍ତି, ଇତ୍ୟାଦି ପ୍ରକାର ବିବିଧ ଲୀଳାର ଅଭିନୟ ମଧ୍ୟରେ ଲୀଳାପ୍ରିୟ ମଧୁସୂଦନ କେତେବେଳେ ଦଷ୍ଟାଧରସ୍ଫୁରଦ୍‌ଗଣ୍ଡରେ ହାସ୍ୟ, କେତେବେଳେ ତା ପରହୃଦୟଧର୍ଷୀ ଦୃଷ୍ଟି ବର୍ଷଣ ଅଥବା ସକ୍ଷୋଭ ବିରକ୍ତି ପ୍ରକାଶ କରୁ କରୁ ଶିକ୍ଷକଙ୍କ ଯୋଗ୍ୟତା, ଶିକ୍ଷାଦାନ କ୍ଷମତା, ବୁଦ୍ଧି-ବିଚକ୍ଷଣତା ଏବଂ ଶାସନପଟୁତା ଆଦି ସମସ୍ତ ଗୁଣ ଉତ୍ତମରୂପେ ବୁଝି ନିଅନ୍ତି । କେବେ କେବେ ସେ ଏପରି ନ କରି ନାନା ସ୍ୱବୁଦ୍ଧି ପରିଚାୟକ ପ୍ରଶ୍ନଦ୍ୱାରା ଛାତ୍ରମାନଙ୍କର ଜ୍ଞାନ ପରୀକ୍ଷା କରନ୍ତି ଏବଂ ଅଶ୍ରୁତପୂର୍ବ ନୂତନ ରୀତିର ପ୍ରଶ୍ନଦ୍ୱାରା ଶିକ୍ଷକମାନଙ୍କର ସ୍ୱପ୍ରଶ୍ନକରଣ କ୍ଷମତାର ଅଙ୍କୁରୋଦ୍‌ଗମ କରିଦିଅନ୍ତି । ମଧ୍ୟେ ମଧ୍ୟେ ଆଦର୍ଶ ରୀତିର ପଠନ ଓ ବ୍ୟାଖ୍ୟାନ ଦେଖାଇ ଦେଇ ଶିକ୍ଷକମାନଙ୍କୁ ତନ୍ମୁଖରେ ଅଗ୍ରସର ହେବାକୁ ସୁବିଧା କରି ଦିଅନ୍ତି । ତାଙ୍କର ପରୀକ୍ଷା ଯଥାର୍ଥ ପରୀକ୍ଷା (ପରି–ସର୍ବଦିଗରେ+ଦର୍ଶନ) ଥିଲା ବୋଲି ପ୍ରତି ପରିଦର୍ଶନ ପୂର୍ବରୁ ବିଦ୍ୟାଳୟର ଶିକ୍ଷକ ଏବଂ ଛାତ୍ର ଉଭୟେ ଭୟାକୁଳ ହୋଇପଡୁଥିଲେ । ଉଚ୍ଚ ବିଦ୍ୟାଳୟମାନ ପରିଦର୍ଶନ କରିବା ପୂର୍ବେ ସେ ଶିକ୍ଷାବିଧାନ ନିୟମାନୁସାରେ ଉତ୍ତମରୂପେ ପ୍ରଷ୍ଟବ୍ୟ ବିଷୟରେ ପ୍ରସ୍ତୁତ ହୋଇ ଯାଉଥିଲେ । ତାହାଙ୍କର ମନ୍ତବ୍ୟମାନ କେବଳ ଉପଦେଶପୂର୍ଣ୍ଣ ଥିଲା ଏବଂ ତାହା ଅନେକ ଶିକ୍ଷକଙ୍କୁ ସ୍ୱଦୋଷବର୍ଜ୍ଜିତ ମାର୍ଗରେ ଅଗ୍ରସର କରୁଥିଲା । ଶିକ୍ଷାଦାନ ବିଷୟରେ ତାଙ୍କର ଚିନ୍ତା ଏତେଦୂର ପ୍ରସାରିଣୀ ଥିଲା ଯେ, ବହୁକାଳ ପୂର୍ବେ ସେ ଯାହା ପ୍ରକାଶ କରିଥିଲେ, ତାହା ଆଜି କାର୍ଯ୍ୟରେ ଦେଖା ଯାଉଅଛି । ଫ୍ରୋବେଲପ୍ରବର୍ତ୍ତିତ ନୂତନ ଶିକ୍ଷାପଦ୍ଧତି (କିଣ୍ଡାରଗାର୍ଟନ) ଅତି ଅଳ୍ପ କାଳ ହେଲା ଏ ଦେଶରେ ପ୍ରବର୍ତ୍ତିତ ହୋଇଅଛି । କିନ୍ତୁ ଏହାର ବହୁ ବର୍ଷ ପୂର୍ବେ ମଧୁବାବୁ ପଦାର୍ଥପାଠ ଓ ପ୍ରକୃତିର ପର୍ଯ୍ୟବେକ୍ଷଣ ସମ୍ବନ୍ଧରେ ଉପଦେଶ ଦେଇ ଆସିଛନ୍ତି । ଡେପୁଟି ଇନ୍‌ସ୍ପେକ୍ଟର ଥିବାବେଳେ କୌଣସି ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଦର୍ଶନାଭିପ୍ରାୟ ପୁସ୍ତକରେ

ସେ ଏହି ଭାବରେ ଲେଖିଥିଲେ ଯେ 'ଶିକ୍ଷକ ଚତୁର୍ଦ୍ଦିଗର ପଶୁପକ୍ଷୀ ଏବଂ ଉଦ୍ଭିଦମାନଙ୍କ ସମ୍ବନ୍ଧରେ ଛାତ୍ରମାନଙ୍କୁ ମୌଖିକ ଶିକ୍ଷା ଦେବେ ।' ସେହି ସମୟରୁ ମଧ୍ୟ ତାହାଙ୍କର ଅଭ୍ୟାସ ଥିଲା ଯେ, ଗୋଟିଏ ବଡ଼ ଗ୍ରାମ କୌଣସିଠାରେ ଦେଖିଲେ ଗ୍ରାମବାସୀମାନଙ୍କୁ ଡାକି ନୂତନ ବିଦ୍ୟାଳୟ ବସାଇବା ଲାଗି ପ୍ରବର୍ତ୍ତାଉଥିଲେ । ବାଳିକାଶିକ୍ଷାର ପ୍ରଚାର ଲାଗି ଉପଦେଶରେ ଅନେକ ସମୟ ବ୍ୟୟିତ ହେଉଥିଲା । କୌଣସି ସ୍ଥାନରେ ଗୋଟିଏ ନୂତନ ବିଦ୍ୟାଳୟ ବସିବାର ଶୁଣିଲେ ସେ ପରିଚାଳକମାନଙ୍କୁ ସମୁତ୍ସାହିତ କରୁଥିଲେ । ଏ ବିଷୟରେ ଅନ୍ୟ ଉଦାହରଣର ପ୍ରୟୋଜନ ନାହିଁ—ଏତିକି କହିଲେ ବୋଧହୁଏ ଯଥେଷ୍ଟ ହେବ ଯେ, ଉତ୍କଳର ଉଦୀୟମାନ ସତ୍ୟବାଦୀ ବିଦ୍ୟାଳୟର ମୂଳରେ ତାଙ୍କର ଉତ୍ସାହ ଓ ଉପଦେଶ ପୁଷ୍ଟିକର ଉପାଦାନସ୍ୱରୂପ ହୋଇଅଛି । ୧୯୧୨ ଖ୍ରୀଷ୍ଟାବ୍ଦରେ ଏହିଠାରେ ପୁରୀ ଜିଲ୍ଲାର ଶିକ୍ଷାସମ୍ମିଳନୀର ଯେଉଁ ପବିତ୍ର ଆନୁଷ୍ଠାନିକ ଅଧିବେଶନ ହୋଇଥିଲା, ମଧୁସୂଦନ ତାହାର ସଭାପତି ପଦ ଅଳଙ୍କୃତ କରି ଗୋଟିଏ ସାରବାନ୍ ଅଭିଭାଷଣରେ ଯେଉଁ ମୂଲ୍ୟବାନ୍ ଉପଦେଶମାନ ପ୍ରଦାନ କରିଥିଲେ, ସେମାନ ଅଦ୍ୟାପି ସତ୍ୟବାଦୀର ଶିକ୍ଷାକାଶକୁ ଉଜ୍ଜ୍ୱଳ ଏବଂ ଆଶାମୟ ରଖିଅଛି । ଏହିପରି କେତେ ଆଶାମୟୀ ସଭାର ଅଧିନାୟକ ପଦ ତାହାଙ୍କ ଯୋଗରେ ପବିତ୍ର ହୋଇଅଛି । ମୃତ୍ୟୁର ପ୍ରାୟ ଚାରିବର୍ଷ ପୂର୍ବେ ସେ ଏହି କଟକ ନଗରର 'ରାମକୃଷ୍ଣ– ସେବକ ସମ୍ପ୍ରଦାୟ'ର ସ୍ଥାୟୀ ସଭାପତିତ୍ୱ ସାନନ୍ଦରେ ଗ୍ରହଣ କରିଥିଲେ । ତାହାରି ଫଳରେ ସଂଶିତ ସମ୍ପ୍ରଦାୟ ପ୍ରତି ଯେଉଁମାନଙ୍କର ଜୁଗୁପ୍‌ସାତ୍ମକ ଘୃଣା ଥିଲା, ସେମାନଙ୍କର ପୁଣି କରୁଣାତ୍ମକ ଘୃଣା ହେଲା । ସଭା ସାହିତ୍ୟିକ ହେଉ ବା ସାମ୍ପ୍ରଦାୟିକ ହେଉ, ପୁରସ୍କାର ବିତରଣୀ ହେଉ ବା ମାଦକ ନିବାରିଣୀ ହେଉ, ଅଥବା ଶୋକସ୍ମୃତି-ସଭା ହେଉ କିମ୍ବା ବିଦାୟ-ସଭା ହେଉ, ସର୍ବବିଧ ସଭାରେ ତାହାଙ୍କର ଓଜଗାମ୍ଭୀର୍ଯ୍ୟବ୍ୟଞ୍ଜକ ସଭାପତିତ୍ୱ ସଭ୍ୟମାନଙ୍କୁ ସ୍ଥାୟୀ ସୁଫଳ ପ୍ରଦାନ କରୁଥିଲା । ମଧୁସୂଦନ ସୁବକ୍ତା ନଥିଲେ, ସୁତରାଂ ସଭାସ୍ଥଳରେ ତାହାଙ୍କ ମୁଖରୁ ମହା ଆସ୍ଫାଳନପୂର୍ଣ୍ଣ ଜଳଦ-ମନ୍ଦ୍ରମୟ ଦୀର୍ଘ ବକ୍ତୃତା ଶୁଣିବାର ସମ୍ଭାବନା ନ ଥିଲା । 'ମିତଂ ଚ ସାରଞ୍ଚ ବଚୋ ହି ବାଗ୍ମିତା' ତାହାଙ୍କ ଠାରେ ଦେଖାଯାଏ । ତାଙ୍କ ବକ୍ତୃତାରେ ସଭା ଗୃହ କମ୍ପୁ ନଥିଲା ସତ୍ୟ, କିନ୍ତୁ ପ୍ରତ୍ୟେକ ଶ୍ରୋତାର ହୃଦୟତନ୍ତ୍ରୀ ଝଙ୍କାରିତ ହେଉଥିଲା । ସେ ଯେଉଁପରି ସଭା ପ୍ରତି ଅନୁରାଗୀ ଥିଲେ, ସଭା ସମିତି ମଧ୍ୟ ତାଙ୍କୁ ସେହିପରି ଘେନିଥିଲା । ୧୯୦୩ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଉତ୍କଳର ଏକତାବିଧାୟିନୀ ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା ହେଲା, ତେତେବେଳେ ମଧୁସୂଦନ ଆଶାପୂର୍ଣ୍ଣନେତ୍ରରେ ଉଜ୍ଜ୍ୱଳ ଭବିଷ୍ୟତକୁ ଅନାଇ ଆନନ୍ଦରେ ଉତ୍‌ଫୁଲ୍ଲ ହୋଇ ଉଠିଲେ ଏବଂ ତାହାର ସାହିତ୍ୟିକ ଶାଖାର ଅଧିନାୟକ ରୂପେ କାର୍ଯ୍ୟ ପରିଚାଳନରେ ଜଣେ ପ୍ରଧାନ ଉଦ୍‌ଯୋଗୀ ଥିଲେ । ସେ ବର୍ଷ

ଅନେକ ସରକାରୀ କର୍ମରେ ଥାଇ ଏ ପ୍ରକାର ସାଧାରଣ ସଭାରେ ଯୋଗ ଦେବାକୁ ସଙ୍କୁଚିତ ହୋଇ ପଡ଼ିଥିଲେ; କିନ୍ତୁ ମଧୁ ବାବୁ ଏଥିରେ ଯୋଗ ଦେବାରେ କିଛିମାତ୍ର ଶଙ୍କା ବା ସଙ୍କୋଚ ଅନୁଭବ କରି ନ ଥିଲେ । କାରଣ ସେ ଉତ୍ତମରୂପେ ଜାଣିଥିଲେ ଯେ, ଭିତରେ ଠିକ୍ ଥିଲେ ବାହାରର ଅପବାଦ ଆଦୌ ସ୍ପର୍ଶ କରିପାରିବ ନାହିଁ । ତେଣୁ ସେ ରାଜନୀତିର ମର୍ମ ଉତ୍ତମରୂପେ ଜାଣିଥିଲେ ମଧ କେବେ ରାଜନୀତିର ଆଲୋଚନାରେ ଯୋଗ ଦେଇ ନାହାନ୍ତି । ରାଜସେବାରେ ତାଙ୍କର ଏହି ବିଶ୍ୱସ୍ତଭାବ ରାଜପ୍ରୀତିର ହେତୁ ହୋଇଥିଲା । ଉତ୍କଳର ସର୍ବଜନପ୍ରିୟ କମିଶନର ସର୍ କେ. ଜି. ଗୁପ୍ତ ମହୋଦୟଙ୍କଦ୍ୱାରା ତାହାଙ୍କର ରାଜସେବକତା ପ୍ରଶଂସିତ ଭାବରେ ସରକାରଙ୍କ ଠାରେ ଗୃହୀତ ହୋଇଥିଲା । ତାହାରି ଫଳରେ ଗୁଣଗ୍ରାହୀ ସରକାର ବାହାଦୂର ୧୯୦୭ ଖ୍ରୀଷ୍ଟାବ୍ଦରେ ମଧୁସୂଦନଙ୍କୁ ବିଶ୍ୱସ୍ତ ଭାବରେ ରାଜକର୍ମ ପରିଚାଳନ ଏବଂ ସାଧାରଣ ସାହିତ୍ୟପ୍ରଚାର ଲାଗି ସମ୍ମାନସୂଚକ 'ରାୟବାହାଦୂର' ଉପାଧି ପ୍ରଦାନ କରିଥିଲେ ।* ୧୯୦୯ ଖ୍ରୀଷ୍ଟାବ୍ଦର ଜୁଲାଇ ମାସ ୨୮ ତାରିଖରେ ମଧୁବାବୁ ରାଜକାର୍ଯ୍ୟରୁ ଅବସର ଗ୍ରହଣ କଲେ ଏବଂ ବିଶ୍ରାମ ପାଇ ସାଧାରଣ କାର୍ଯ୍ୟରେ ମନ ପ୍ରାଣ ଅର୍ପଣ କରିଦେଲେ । ଭିକ୍ଟୋରିଆ ସ୍କୁଲର ନୂତନ ଗୃହ ନିର୍ମାଣ ଏହି କାର୍ଯ୍ୟ ମଧ୍ୟରେ ପ୍ରଧାନ ଏବଂ ସ୍ଥାୟୀ ଥିଲା । ଗୃହ ନିର୍ମାଣର ବ୍ୟୟ ଉଠାଇବାପାଇଁ ଯତ୍ର ତତ୍ର ସେ ଯାହା ତାହା ପାଖକୁ ଚାନ୍ଦାଖାତା ଘେନି ଯାଉଥିଲେ । ସାମାନ୍ୟ ଲୋକର ଯତ୍‌କିଞ୍ଚିତ୍ ଦାନକୁ ସେ ବଡ଼ଲୋକର ବହୁଗୁଣିତ ଦାନ ଅପେକ୍ଷା ଅଧିକ ପ୍ରଶଂସା କରୁଥିଲେ ଏବଂ କେହି ଆଗ୍ରହକରି ଦେବାର ଦେଖିଲେ ତାଙ୍କ ନିକଟରେ କୃତ୍ୟ କୃତ୍ୟ ହୋଇ ଏପରି ଆନନ୍ଦମିଶ୍ରିତ କୃତଜ୍ଞତା ପ୍ରକାଶ କରୁଥିଲେ, ଯହିଁରୁ ଜଣାଯିବ, ସେ ତାଙ୍କଠାରେ ଚିରୋପକୃତ । ସହର ମଫସଲ ସର୍ବତ୍ର ଅର୍ଥ ସଂଗ୍ରହ ଲାଗି ବାହାରି ଶେଷରେ ସେହି ଅର୍ଦ୍ଧସୁସ୍ଥ ଦେହରେ ଅର୍ଥ ଭିକ୍ଷାଲାଗି ସମ୍ବଲପୁରଠାରୁ ଗଞ୍ଜାମ ପର୍ଯ୍ୟନ୍ତ ପ୍ରାୟ ସମସ୍ତ ପରିଚିତ ରାଜା ମହାରାଜା-ମାନଙ୍କର ଦ୍ୱାରସ୍ଥ ହୋଇଥିଲେ । ବଦାନ୍ୟ ରାଜନ୍ୟଗଣଙ୍କ ଦାନ ଏବଂ ସାଧାରଣ ଚାନ୍ଦାରୁ ପ୍ରାୟ ଚୌଦ ହଜାର ଟଙ୍କା ଉଠିଥିଲା । ଗୋଟିଏ ବଡ଼ ପରିବାରର ମହାଦାୟିତ୍ୱ ଭାର ମସ୍ତକରେ ବହନ କରି ସୁଦ୍ଧା ବ୍ରହ୍ମନିର୍ଭର ମଧୁସୂଦନ ଆପଣାକୁ କିଛିମାତ୍ର ଭାରାକ୍ରାନ୍ତ ନ ମଣି ଏହି ଗୃହନିର୍ମାଣ ମହାଭାର ସ୍ୱୟଂ ଗ୍ରହଣକରି ଆମୂଳାନ୍ତ ସମସ୍ତ କାର୍ଯ୍ୟରେ ଲାଗି ପଡ଼ିଥିଲେ ଏବଂ ଅଜସ୍ର ଶ୍ରମ ଓ ସହସ୍ର ସହସ୍ର ମୁଦ୍ରା ବ୍ୟୟରେ ଅଚିରେ ପୂର୍ଣ୍ଣକାମ ହେଲେ ।

* କଳାହାଣ୍ଡିର ସୁପ୍ରତଣ୍ଡବାବୁ ରାମକୃଷ୍ଣ ବିଦ୍ୟାଧର ମିଶ୍ର ଏବଂ କଟକ ଟ୍ରେନିଂ ସ୍କୁଲର ହେଡମାଷ୍ଟର ବାବୁ ମଧୁସୂଦନ ରାଓ ରାୟବାହାଦୁର ପଦପାଇ ଅଛନ୍ତି ।

(ଦୀପିକା – ୬।୭।୧୯୦୭, ପୃ. ୩୪୫ ଉପାଧି ବିତରଣ ।)

ବିଦ୍ୟାଳୟର ଏହି ସ୍ଥାୟୀ ବାସ ନିର୍ମାଣରେ ପ୍ରାୟ ପଞ୍ଚଦଶ ସହସ୍ର ମୁଦ୍ରା ବ୍ୟୟିତ ହୋଇଥିଲା । ୧୯୧୧ ଖ୍ରୀଷ୍ଟାବ୍ଦର ଫେବୃଆରି ମାସ ୨ ତାରିଖରେ ଓଡ଼ିଶାର ଭୂତପୂର୍ବ କମିଶନର ଶ୍ରୀଯୁକ୍ତ ଲେଭିଞ୍ଜ ସାହେବଙ୍କ ଦ୍ୱାରା ଏହି ନୂତନ ବିଦ୍ୟାମନ୍ଦିରର ଦ୍ୱାରୋଦ୍‌ଘାଟନ କର୍ମ ସମାହିତ ହୋଇଥିଲା । ସେଦିନ ସଭା ପ୍ରାରମ୍ଭରେ ମଧୁସୂଦନ ଦଣ୍ଡାୟମାନ ହୋଇ ଧ୍ୟାନସ୍ତିମିତ ନେତ୍ରରେ ଯେପରି ପ୍ରାର୍ଥନା ଓ ଆଶୀର୍ବାଦ ଭିକ୍ଷା କରିଥିଲେ, ତାହା ଏହି ବିଦ୍ୟାଳୟର ଭବିଷ୍ୟତକୁ ଉଜ୍ଜ୍ୱଳ କରିବ ଏବଂ ସେ ଚିତ୍ର ଯେଉଁମାନଙ୍କ ହୃଦୟରେ ଅଙ୍କିତ ହୋଇଅଛି, ସେମାନଙ୍କର ଏହା ପ୍ରତି ସ୍ଥାୟୀ ସହାନୁଭୂତି ରହିବ । ଏତେଦିନେ ତାହାଙ୍କର ଚିରପୋଷିତ ବାଞ୍ଛା ପୂର୍ଣ୍ଣ ହେଲା ଏବଂ କର୍ମଭୂମିରୁ ତାହାଙ୍କର କର୍ମସେବା ଶେଷ ହେବାକୁ ବସିଲା । ତେଣୁ ଅଳ୍ପ କାଳ ପରେ ଏ କର୍ମଭୂମି ଧରଣୀରେ ସେବକଶ୍ରେଣୀରୁ ତାଙ୍କ ନାମ କଟିଗଲା ।

ବିଦ୍ୟାଳୟର ଗୃହ ନିର୍ମାଣ କର୍ମ ସମ୍ପନ୍ନ କରିଦେଇ ମଧୁସୂଦନ ତତ୍ସମ୍ବନ୍ଧରେ ନିଶ୍ଚିନ୍ତ ହୋଇନଥିଲେ । ସେ ବିଭାଗୀୟ ସାହାଯ୍ୟ ଆଦୌ ଗ୍ରହଣ କରି ନଥିବାରୁ ବିଦ୍ୟାଳୟର ଆର୍ଥିକ ଉନ୍ନତିକଳ୍ପେ ଛାତ୍ରସଂଖ୍ୟାର ଉନ୍ନତି, ବିଦ୍ୟାଳ୍ୟର ଶିକ୍ଷୋନ୍ନତି ଏବଂ ଉପଯୁକ୍ତ ଶିକ୍ଷକ ନିଯୁକ୍ତି ପ୍ରତି ଅଧିକ ଦୃଷ୍ଟି ରଖି କାର୍ଯ୍ୟ କଲେ । ମଧ୍ୟେ ମଧ୍ୟେ ସ୍କୁଲକୁ ଯାଇ ପରୀକ୍ଷାକରି ଛାତ୍ର ଶିକ୍ଷକ ଉଭୟଙ୍କୁ କେତେକ ଉପଦେଶ ଦେବାକୁ ସେ ଯଥେଷ୍ଟ ମଣିଲେ ନାହିଁ, ଶେଷରେ କିଛିକାଳ ସେ ପ୍ରତ୍ୟହ ସ୍କୁଲର ସର୍ବୋଚ୍ଚ ଶ୍ରେଣୀରେ ଇଂରାଜୀ ସାହିତ୍ୟ ପଢ଼ାଇବାକୁ ଲାଗିଲେ । ତାହାଙ୍କଠାରୁ ଶିକ୍ଷା ଲାଭ କରିବାର ସୁଯୋଗ ପାଇ ଅନେକ ଛାତ୍ର ଆଶାନ୍ୱିତ ହୋଇ ସେଥିରେ ପ୍ରବିଷ୍ଟ ହେଲେ ଏବଂ ଅନେକ ଅଭିଭାବକ ସ୍କୁଲ ପ୍ରତି ତାଙ୍କର ବିଶେଷ ଯତ୍ନ ଦେଖି ନିଜ ନିଜ ସନ୍ତାନମାନଙ୍କୁ ସେଠାକୁ ଅକୁଣ୍ଠିତ ଚିତ୍ତରେ ପ୍ରେରଣ କଲେ । ଏଥି ସଙ୍ଗେ ସଙ୍ଗେ ଯୋଗ୍ୟ ବ୍ୟକ୍ତିମାନେ ଶିକ୍ଷକ ପଦରେ ନିଯୁକ୍ତ ହୋଇ ଆସିବାରୁ ଏ ସ୍କୁଲର ଛାତ୍ରସଂଖ୍ୟା ବହୁମାତ୍ରାରେ ବୃଦ୍ଧି ଲାଭକଲା । ମଧୁସୂଦନଙ୍କ ତିରୋଧାନ ପୂର୍ବରୁ ଏଥିରେ ପ୍ରାୟ ୫୦୦ ଜଣ ଛାତ୍ର ହୋଇ ଯାଇଥିଲେ । ପ୍ରଥମ ଅବସ୍ଥାରେ ସଂଖ୍ୟା ସହିତ ତୁଳନା କଲେ ପ୍ରାୟ ତିନିଗୁଣ ହୋଇଅଛି । ଆୟ ମଧ୍ୟ ତତ୍ତୁଳନାରେ ତତୋଽଧିକ ହୋଇଅଛି, ଅନୁମାନ ହୁଏ । ତେତେବେଳେ ବାର୍ଷିକ ଆୟ ଦୁଇ ହଜାର ହେଉଥିଲା କି ନାହିଁ, ଏତେବେଳେ ଆଠ ହଜାରକୁ ଉଠିଅଛି । ଶିକ୍ଷକ ସଂଖ୍ୟା ମଧ୍ୟ ୧୧ ଜଣରୁ ୨୨ ଜଣକୁ ଆସିଅଛି । ଅଳ୍ପ କାଳ ମଧ୍ୟରେ ବିଦ୍ୟାଳୟର ଏପରି ଉନ୍ନତି ଅବଶ୍ୟ ଆଶାଜନକ । ଏ ସମସ୍ତ ଉନ୍ନତିର ଅଭ୍ୟନ୍ତରରେ ମଧୁସୂଦନଙ୍କର ସେହି ଚରିତ୍ରର ମହାପ୍ରଭାବ କାର୍ଯ୍ୟ କରୁଅଛି ।



## ନୈତିକ ଜୀବନ

ଉତ୍କଳ କ୍ଷେତ୍ରରେ ନୀତିବୀଜ ବପନ କରିବାପାଇଁ ଭଗବାନ ମଧୁସୂଦନଙ୍କୁ ପ୍ରେରଣ କରିଥିଲେ । ମଧୁସୂଦନଙ୍କ ଆବିର୍ଭାବରେ ଏ ଦେଶରେ ବର୍ତ୍ତମାନ ଯୁଗରେ ସୁନୀତିର ସଦ୍ଭାବ ଦେଖାଯାଇଅଛି । କଥାରେ ଅଛି, ଲକ୍ଷ୍ମୀ ଯେଉଁବାଟେ ଯାନ୍ତି—ସେ ବାଟ ଯାକ ପଦ୍ମ ଫୁଟିଯାଏ । ଆମ୍ଭେମାନେ ଦେଖୁଁ, ମଧୁସୂଦନଙ୍କ ସଙ୍ଗେ ସମସ୍ତ ନୀତି ସେହିପରି ଛଡ଼ି ରହିଥାଏ । ଯେଉଁଠାରେ ମଧୁସୂଦନ, ସେଠାର ବାୟୁମଣ୍ଡଳ ନୀତିପରିପୂର୍ଣ୍ଣ । ମଧୁସୂଦନଙ୍କ ତିରୋଧାନ ସଙ୍ଗେ ସେ ନୈତିକ ଆଚରଣର ତିରୋଧାନ ହୋଇଅଛି ବୋଲି ପ୍ରତୀତି ହୁଏ । ତାଙ୍କର ପ୍ରତି କଥା ବା ବାକ୍ୟାଳାପରେ, ପ୍ରତି ଉପଦେଶ ପରାମର୍ଶରେ, ପ୍ରତ୍ୟେକ କାର୍ଯ୍ୟକଳାପ ଏବଂ ପ୍ରତ୍ୟେକ ଲେଖାରେ କେବଳ ଧର୍ମ-ନୀତିର ପ୍ରଚାର ଦେଖାଯାଏ । ସମାଜ ମଧ୍ୟରେ କୌଣସି ପ୍ରକାର ଦୁର୍ନୀତିର ବା କୁବୃତ୍ତିର ବିସ୍ତାର ଦେଖିଲେ ସେ ବ୍ୟାକୁଳ ପ୍ରାଣରେ ତାହାର ସଂଶୋଧନ ଲାଗି ବାହାରୁଥିଲେ । ତାହାଙ୍କ ଲେଖାର ଅନେକାଂଶ ଛାତ୍ରମାନଙ୍କ ନୀତିଶିକ୍ଷା ଲାଗି ଲିଖିତ । ବିଦ୍ୟାଳୟରେ ନୀତିଶିକ୍ଷା ଦେବା ସର୍ବଥା ବାଞ୍ଛନୀୟ ବୋଲି ସେ ଦୃଢ଼ ବିଶ୍ୱାସ କରିଥିଲେ ଏବଂ ନିଜ ପ୍ରତିଷ୍ଠିତ ବିଦ୍ୟାଳୟରେ ମଧ୍ୟ ସେହି ଚିରପୋଷିତ ଅଭିପ୍ରାୟକୁ କିଞ୍ଚିତ୍ କାର୍ଯ୍ୟତଃ ପରିଣତ କରିଥିଲେ । ବାଲ୍ୟକାଳରୁ ତାଙ୍କର ଅନୀତି ବା ଅଶ୍ଳୀଳତା ପ୍ରତି ଅତ୍ୟନ୍ତ ଘୃଣା ଥିଲା, ତାଙ୍କ ପ୍ରଥମ ଲେଖାରେ ସୁଦ୍ଧା ଅଶ୍ଳୀଳତାର ଲେଶମାତ୍ର ଦେଖାଯାଏ ନାହିଁ । ପଠଦ୍ଦଶାରେ ସେ ସ୍ୱୟଂ ଅଶ୍ଳୀଳ ବାକ୍ୟ ଉଚ୍ଚାରଣ କରିବା ଦୂରେଥାଉ, କୌଣସି ସହପାଠୀ ମୁଖରୁ ଅଶ୍ଳୀଳ କଥା ଶୁଣିଲେ ବିରକ୍ତି ପ୍ରକାଶ କରି ତାହାଠାରୁ ଅନ୍ତରରେ ରହୁଥିଲେ । ବର୍ତ୍ତମାନ ଜୀବିତ ତାଙ୍କର ଜଣେ ସହପାଠୀ ଦୃଢ଼ ସ୍ମରଣ କରି କହନ୍ତି ଯେ, 'ଆମ୍ଭେମାନେ ତେତେବେଳେ ତାଙ୍କ ମୁଖରେ ଅଶ୍ଳୀଳ କଥା କେବେ ଶୁଣିନାହୁଁ ।' ଅଶ୍ଳୀଳ ପ୍ରସଙ୍ଗ ମଧୁସୂଦନଙ୍କ ନିକଟରେ ନିତାନ୍ତ ଅପରିଜ୍ଞାତ ଏବଂ ଅଶ୍ଳୀଳ ବର୍ଜନ ତାଙ୍କର ସ୍ୱଭାବସିଦ୍ଧ ଧର୍ମ । ସମାଜ ଓ ସାହିତ୍ୟ ମଧ୍ୟରୁ ଅଶ୍ଳୀଳତା ଦୂର କରିବାପାଇଁ ସେ ଜୀବନବ୍ୟାପୀ ଯତ୍ନ କରିଅଛନ୍ତି । ଆଧୁନିକ ଉତ୍କଳ- ସାହିତ୍ୟ ଓ ଯୁବକ ସମାଜର ପ୍ରାଣରେ ଯଦି କିଛି ନୀତିର ପୂଣ୍ୟଶ୍ରୀ ଦେଖାଯାଏ, ତାହାହେଲେ ନିଶ୍ଚୟ ମଧୁସୂଦନ ତାହା ମୂଳରେ ଅଛନ୍ତି । ଇନ୍ଦ୍ରଧନୁ ଓ ବିଜୁଳୀର ଅଶ୍ଳୀଳ ଆନ୍ଦୋଳନରେ ମଧୁସୂଦନ କିପରି ମର୍ମାହତ ହୋଇ ସେ ରୋଗର ପ୍ରଶମନ ଲାଗି ଅମୋଘ ଔଷଧ ବା ପେଟେଣ୍ଟ୍ ମେଡ଼ିସିନ୍ ଆବିଷ୍କାର କରିଥିଲେ,

ତାହା ଏଥିପୂର୍ବେ ପାଠକମାନଙ୍କୁ ଜଣାଇଅଛୁ । ସେହି ସମୟରେ ସମାଜର ଗର୍ହିତ ରୀତି ନୀତି ଦର୍ଶନରେ ଅସନ୍ତୁଷ୍ଟ ହୋଇ ମଧୁସୂଦନ ତାହାର ନିରାକରଣ ଉଦ୍ଦେଶ୍ୟରେ ବ୍ୟାକୁଳ ପ୍ରାଣରେ କିପରି ସମାଜର ମଙ୍ଗଳ ଆବାହନ କରିଥିଲେ, ତାହା ନିମ୍ନୋଦ୍ଧୃତ ''ଗୋଟିଏ କଥା''ରୁ ପାଠକମାନେ ଅନୁମାନ କରିପାରିବେ । ''ଆଜିକାଲି ଏ ସମାଜର ରୀତି ନୀତି ଦେଖିଲେ ଆଶ୍ଚର୍ଯ୍ୟ ବୋଧ ହୁଏ । ପୂର୍ବ କାଳର ଲୋକେ ପରର ଉପକାର କରିଲେ ଆପଣାକୁ କୃତାର୍ଥ ମଣୁଥିଲେ–ଏତେବେଳେ ଆଉ ସେପରି ନାହିଁ । ପରର ଉପକାର କରିବା ତେଣିକି ଥାଉ, ତାହାର ଅନିଷ୍ଟ କରିପାରିଲେ କିମ୍ବା ଆପେ ନ ପାରି ଅନ୍ୟ କାହାରି ଦ୍ୱାରା ଅନିଷ୍ଟ ହେବାର ଦେଖିଲେ ଆପଣାକୁ ସୁଖୀ ମନେ କରୁଅଛନ୍ତି । ସମ୍ପ୍ରତି ଲୋକମାନଙ୍କୁ ଗୋଟିଏ ହିଂସାବୃତ୍ତି ଆଶ୍ରୟ କରିଅଛି । ପୂର୍ବକାଳରେ ଜଣେ ଜଣକର ଉପକାର କଲେ ଅନ୍ୟାନ୍ୟ ଲୋକ ଉପକାରିକୁ ଉତ୍ସାହ ଦେଉଥିଲେ । ଏଣିକି ଜଣେ ଅନ୍ୟ ଜଣର ଅନିଷ୍ଟ କରୁଅଛି ଦେଖି ଅନିଷ୍ଟକାରୀ ସହିତ ଯୋଗ ଦେଇ ତାହାକୁ ଉତ୍ସାହିତ କରୁଅଛନ୍ତି, ଅନିଷ୍ଟକାରୀଦ୍ୱାରା କିପରି ଅନିଷ୍ଟ ହେଉଅଛି, ତାହାପ୍ରତି ସାଗ୍ରହ ନେତ୍ରରେ ଦୃଷ୍ଟି ଦେଉଅଛନ୍ତି, ତାହାର କଷ୍ଟକୁ କୌତୁକ ମଣି ଆନନ୍ଦ ପ୍ରକାଶ କରୁଅଛନ୍ତି । ସହାନୁଭୂତି ବୋଲି ଯେ ଗୋଟାଏ କଥା ଅଛି, ତାହା ଆଜିକାଲି ଲୋକଙ୍କୁ ପରିତ୍ୟାଗ କରିଅଛି । ଯେବେ କେଉଁ ସ୍ଥାନରେ ସହାନୁଭୂତି ଦେଖିବ, ସେଥି ଭିତରେ ଅବଶ୍ୟ ସ୍ୱାର୍ଥ ନିହିତ ଥିବ । ତେବେ ଯେ ଏକାବେଳକେ ନିଃସ୍ୱାର୍ଥ ସହାନୁଭୂତି ନାହିଁ, ଏହା ଆମ୍ଭେ କହୁନାହୁଁ । ସେପରି ଲୋକ ଆଜିକାଲି ସମୟରେ ଗୋଟିଏ ଜିଲ୍ଲାରେ ୫।୬ ଜଣ ମାତ୍ର ପାଇବ । ନିମ୍ନ ଶ୍ରେଣୀରୁ ଉଚ୍ଚ ଶ୍ରେଣୀ ପର୍ଯ୍ୟନ୍ତ ସମସ୍ତଙ୍କୁ ହିଂସାବୃତ୍ତି ଆଶ୍ରୟ କରିଅଛି । ସେହି ବୃତ୍ତି ଚରିତାର୍ଥ କରିବା ସକାଶେ ଲୋକେ ନାନା ଉପାୟ ଅବଲମ୍ବନ କରୁଅଛନ୍ତି । କେହି ଯେବେ ପରୋପକାର ବା ସାଧାରଣ ଉପକାରର କୌଣସି କାର୍ଯ୍ୟ କଲା କିମ୍ବା କରିବାକୁ ଉଦ୍ୟତ ହେଲା, ତେବେ ଆଜିକାଲି ସେ ସମାଜର ଉପହାସର ପାତ୍ର । ଲୋକେ କେତେ ପ୍ରକାରେ ତାହାକୁ ଉପହାସ କରିବେ ଓ ତାହା ସକାଶେ କାହାରିକୁ ଛିଡ଼ା ହେବାର ଦେଖିବ ନାହିଁ । କିନ୍ତୁ ଅପକାରିର ସାହାଯ୍ୟ ସକାଶେ ଅନେକଙ୍କୁ କମର ବାନ୍ଧିବାକୁ ଦେଖିବ । ଆହୁରି ଗୋଟିଏ ଆଶ୍ଚର୍ଯ୍ୟ ରୀତି ଏହି ଯେ, ସମାଜ ମଧ୍ୟରୁ ଯେବେ କେହି ବିଷୟବନ୍ତ ହୋଇ ପଦମର୍ଯ୍ୟାଦା ଲାଭ କଲା, ତେବେ ସେ ଲୋକ ଅବଶ୍ୟ ସାଧାରଣ ଚକ୍ଷୁରେ ବାଲିକଣା ହେଲା । କିପରି ସେ ବ୍ୟକ୍ତି ଉକ୍ତ ବିଷୟ ଓ ପଦମର୍ଯ୍ୟାଦାରୁ ବଞ୍ଚିତ ହେବ, ଏହି ଚେଷ୍ଟା ଦିବାରାତ୍ର ଲାଗି ରହିଲା । ସେଥିପାଇଁ କେତେ ସ୍ଥାନରେ କେତେ ପରାମର୍ଶ, କେତେ ଉପାୟ ଓ କେତେ ମାମଲାର ସୂଚନା ହୋଇଯିବ, ତାହାର ସଂଖ୍ୟା ରହିବ

ନାହିଁ । ଜଣକୁ ପଦମର୍ଯ୍ୟାଦାରେ ଉନ୍ନତ କରାଇବାର କ୍ଷମତା ନାହିଁ, କିନ୍ତୁ ପଦମର୍ଯ୍ୟାଦାରୂଢ଼ ବ୍ୟକ୍ତିକୁ ସେଥିରୁ ବଞ୍ଚିତ କରିବାର ଉପାୟ ଓ ପରାମର୍ଶ ନାନାପ୍ରକାରେ ଲୋକଙ୍କ ମନରେ ବିଦ୍ୟମାନ ଅଛି । ପୂର୍ବେ ଦଶଜଣ ଏକତ୍ର ଉପବେଶନ କରୁଥିଲେ, ଆପଣା ଗ୍ରାମର ଗୋଟିଏ ହିତକର ପରାମର୍ଶ କରୁଥିଲେ ଓ ଆପଣା ମଧ୍ୟରେ ଉନ୍ନତିର ମାର୍ଗ ଅନୁସନ୍ଧାନ କରୁଥିଲେ; ବର୍ତ୍ତମାନ ସମୟରେ ସେପରି ନାହିଁ । ଏଣିକି ଦଶ ଜଣ ଏକତ୍ର ହୋଇ କାହାରି ଅନିଷ୍ଟକର ପରାମର୍ଶ ସ୍ଥିର କରି ପାରିଲେ କାମନା ସିଦ୍ଧ ହେଲା ବୋଲି ହର୍ଷପ୍ରାପ୍ତ ହେବେ । ଏ ସମସ୍ତ ଦେଖି ଶୁଣି କେଉଁ ବୁଦ୍ଧିମାନ୍ ବ୍ୟକ୍ତି ଆଜିକାଲି ସମାଜକୁ ମନ୍ଦ ନ ବୋଲି ଉତ୍ତମ ବୋଲିବ ? ଏଥି ସକାଶେ ଏଠା ସମାଜ ଦିନକୁ ଦିନ ନିରୟଗାମୀ ହେଉଅଛି । ପରସ୍ପର ସୁଖ ସ୍ୱଚ୍ଛନ୍ଦତା ନାହିଁ । ଦିନକୁ ଦିନ ଅମେଳ ବୃଦ୍ଧି ପାଉଅଛି । ଆମ୍ଭେ ଦିବ୍ୟଚକ୍ଷୁରେ ଦେଖୁଅଛୁଁ ଯେ, ଲୋକମାନେ ଏପରି ମନ୍ଦ ବୃତ୍ତିମାନଙ୍କୁ ମନ ମଧ୍ୟରେ ପ୍ରତିପୋଷଣ କରି କେବେହେଁ ଆପଣାର ମଙ୍ଗଳ କରିପାରିବେ ନାହିଁ ଏବଂ ଏପରି ଲୋକମାନଙ୍କର ପରିଣାମ ଭଲ ନୁହଇ । ଯେଉଁ ସ୍ଥାନର ଲୋକ ବା ସମାଜ ଏପରି କୁବୃତ୍ତିର ଅଧୀନ ହୋଇ କାର୍ଯ୍ୟ କରିଅଛନ୍ତି, ସେମାନେ ସଫଳକାମ ହୋଇ ନାହାନ୍ତି ବା ହୋଇପାରିବେ ନାହିଁ । ଆମ୍ଭମାନେ କହୁଁ ସମାଜ ବା ଲୋକମାନେ ହିଂସାବୃତ୍ତି ପରିତ୍ୟାଗ କରି ପରସ୍ପରର ମଙ୍ଗଳ କାମନା କରନ୍ତୁ, ଦେଖିବ, ଅତିଶୀଘ୍ର ଏହି ଅବନତି ପରିବର୍ତ୍ତିତ ହୋଇ ଉନ୍ନତି ମାର୍ଗକୁ ଧାବିତ ହେବ—ଏଥିରେ ଆଉ ସନ୍ଦେହ ନାହିଁ'' । (ଓଡ଼ିଆ ଓ ନବସମ୍ବାଦ, ୨୦।୧୨।୧୮୯୩ ।) ଉଲ୍ଲିଖିତ ସନ୍ଦର୍ଭରୁ ତଦନୀନ୍ତନ ସମାଜର ରୀତିନୀତି ସୁସ୍ପଷ୍ଟ ପ୍ରତୀୟମାନ ହେଉଅଛି । ବାଲେଶ୍ୱରରେ ଶିକ୍ଷକ ଥିବା ସମୟରେ ଯୁବକ ମଧୁସୂଦନ ଆଉ ଏକ ସମାଜର କୁବୃତ୍ତି ସଂଶୋଧନର କାରଣ ହୋଇଥିଲେ । ବାଲେଶ୍ୱରର କୌଣସି ବୃତ୍ତୀଶ୍ୱରଙ୍କର ତେତେବେଳେ ଗୋଟିଏ ସୌଖୀନ ଦଳ ଥିଲା । ମଧୁସୂଦନ ମଧ୍ୟ ସେମାନଙ୍କର ବୈଠକକୁ ଦିନେ ଆମନ୍ତ୍ରିତ ହୋଇଥିଲେ । ସେ ଦିନ ବୈଠକଖାନାରେ ବେଶ୍ୟାଦଳ ମଧ୍ୟ ପୂର୍ବପରି ନୃତ୍ୟ ଗୀତ ନିମିତ୍ତ ଉପସ୍ଥିତ ଥିଲେ । ମଧୁସୂଦନ ତେତେବେଳକୁ ବେଶ୍ୟା ବୋଲି ଗୋଟିଏ ଜାତି ଯେ ଅଛି, ଏହା ସୁଦ୍ଧା ଜାଣି ନ ଥିଲେ । ସୁତରାଂ ସେ ସେମାନଙ୍କୁ ଭଦ୍ରମହିଳା ମନେକରି ପାର୍ଶ୍ୱସ୍ଥିତ କୌଣସି ବନ୍ଧୁଙ୍କୁ ସମ୍ଭ୍ରମ ସହକାରେ ପରିଚୟ ଜିଜ୍ଞାସା କଲେ । ବିଳାସର କୋଳରେ ଲାଳିତ ବନ୍ଧୁମାନେ ତାହାଙ୍କ ହୃଦୟର ପ୍ରତିବିମ୍ବ ପାଇ ରହସ୍ୟ ଦେଖିବା ଆଶୟରେ ସେହି ନର୍ତ୍ତକୀମାନଙ୍କୁ ନୃତ୍ୟଗୀତ କାଳରେ ମଧୁସୂଦନଙ୍କ ଆଡ଼କୁ ହାବଭାବ ପ୍ରଦର୍ଶନସହ ଅଗ୍ରସର ହେବାକୁ ଆଦେଶ ଦେଲେ । ନର୍ତ୍ତକୀମାନଙ୍କର ତଥାକରଣରେ ସେ ଏପରି ସଙ୍କୋଚ ଓ କଷ୍ଟ

ଅନୁଭବ କଲେ ଯେ, ତତ୍‌କ୍ଷଣାତ୍ ବାଳକବତ୍ ରୋରୁଦ୍ୟମାନ ହୋଇ ଗୃହର ଏକ କୋଣରେ ଯାଇ ଦଣ୍ଡାୟମାନ ହେଲେ । ତାହାଙ୍କ ଚକ୍ଷୁରେ ଅଶ୍ରୁଜଳ ଦେଖି ଉତ୍ତେଜକ ଓ ଉତ୍ତେଜିତ ଉଭୟ ଦଳର ମନରେ ଅପୂର୍ବ ଭାବାବେଶ ହେଲା । ସେହିଦିନ ଠାରୁ ବନ୍ଧୁମାନେ ମଧ୍ୟ ଏକ ନୂତନ ଶିକ୍ଷା ପାଇଲେ । ଏ ପ୍ରକାର ପତିତା ରମଣୀମାନଙ୍କର ବିଷମ ଦୁର୍ଗତି ଦେଖି ମଧୁସୂଦନ କିପରି ମର୍ମାହତ ହୋଇଥିଲେ ଏବଂ ବ୍ୟାକୁଳ ପ୍ରାଣରେ ସେମାନଙ୍କର କଲ୍ୟାଣ ଭିକ୍ଷା କରିଥିଲେ, ତାହା ବସନ୍ତଗାଥାର ନିମ୍ନୋଦ୍ଧୃତ ଉକ୍ତିରୁ ପାଠକମାନେ ଜାଣିପାରିବେ ।

'ନାରୀକୁଳକଳଙ୍କିନୀ ପତିତା ରମଣୀ,
ଦୁଃଖିନୀ ତୋ ପରି ଆହା କେ ଅଛି ସଂସାରେ ?
କୁକ୍ଷଣେ ହରାଇ ଆହା ପୁଣ୍ୟ-ପ୍ରେମ-ମଣି
ବସିଛୁ ପଣ୍ୟସ୍ତ୍ରୀରୂପେ ପାପର ବଜାରେ !

× × ×

ତୋର ସେ କୁଟିଳ ହାସ୍ୟ, ସେ ମାୟା ବିଭ୍ରମ
ତୋ ମର୍ମର କି ମୁର୍ମୁର ଦାହ ପ୍ରକାଶଇ !

× × ×

ଦେବୀ ହୋଇ କେମନ୍ତେ ତୁ ହୋଇଲୁ ରାକ୍ଷସୀ,
ଘୋଟିଲା ତୋ ଶୁଭ୍ରପ୍ରାଣେ ଘୋର ପାପ-ମସୀ !

× × ×

''ପତିତା ହେଲେହେଁ ନାରୀ ମୋହରି ତନୟା,
ଉଦ୍ଧରିବି ତାକୁ କ୍ଷଣେ ଦେଇ ମୁକ୍ତିମଣି,
ମୋ କନ୍ୟା ମୋହରି ହେବ ଲଭି ମୋର ଦୟା ।
ସତୀତ୍ୱ ଦେବୀତ୍ୱ ତାର ଲଲାଟେ ଲିଖିତ,
କେ ତାକୁ ସେଥିରୁ ବିଶ୍ୱେ କରିବ ବଞ୍ଚିତ ?''

ପତିତ ପ୍ରତି ଏପରି ପ୍ରାଣମୟ ସହାନୁଭୂତି ଏବଂ ନିତ୍ୟ ବ୍ୟାକୁଳତା ମଧୁସୂଦନଙ୍କ ଭଳି କେତେ ଜଣଙ୍କର ଅଛି ? ତାଙ୍କର ଏହିପରି ବ୍ୟାକୁଳ ପ୍ରାର୍ଥନା ଓ ଅଶ୍ରୁଜଳ ବର୍ଷଣରେ କେତେ କେତେ ହୃଦୟରୁ କଳୁଷମଳ ବିଦୂରିତ ହୋଇଅଛି ଏବଂ କେତେ ହୃଦୟ-ମରୁରେ ନବୀନ ଆଶା-ଉତ୍ସର ଅଭ୍ୟୁଦୟ ହୋଇଅଛି ।

# ୯

## ମଧୁସୂଦନ ଓ ପ୍ୟାରୀମୋହନ

ବାଲ୍ୟକାଳରୁ ମଧୁସୂଦନ ସତ୍ୟ ପ୍ରତି ଆସ୍ଥାବାନ୍ ଥିଲେ, ଏହା ଏଥିପୂର୍ବେ ପ୍ରକାଶ କରାଯାଇଅଛି । ବୃଦ୍ଧ କବି ଫକୀରମୋହନ ତାହାଙ୍କ ସହିତ ଚାଳିଶ ବର୍ଷର ସମ୍ପର୍କରେ ଯେଉଁ ଅନୁଭୂତ ସତ୍ୟ ପ୍ରକାଶ କରିଅଛନ୍ତି, ତାହା ମଧ ପାଠକମାନେ ଶୁଣିଥିବେ,

''କେବେ ହେଲେ ମଧୁ କହିନାହିଁ ମିଥ୍ୟା କଥା,
କେତେବେଳେ କାହା ମନେ ଦେଇନାହିଁ ବ୍ୟଥା ।''

ଯେତେବେଳେ ସେ ଯାହା ସତ୍ୟ ବୁଝିଅଛନ୍ତି, ତେତେବେଳେ ସେ ତାହା ବଜ୍ର ଦୃଢ଼ଭାବରେ ସଂସାରର ସମସ୍ତ ପ୍ରତିବନ୍ଧକ ଏଡ଼ିଦେଇ ଗ୍ରହଣ କରିଅଛନ୍ତି । ଏହାର ଦୃଷ୍ଟାନ୍ତ ତାହାଙ୍କ ଧର୍ମଜୀବନ ଓ ତଥା କର୍ମଜୀବନରେ ଅନେକତ୍ର ଦେଖାଯାଇଅଛି । ଆଉ ଗୋଟିଏ ଦୃଷ୍ଟାନ୍ତର କଥା ମଧ ଏଠାରେ ଲିପିବଦ୍ଧ କରିବାକୁ ମନ ବଳୁଅଛି । ୧୮୭୧ ଖ୍ରୀଷ୍ଟାବ୍ଦରେ ନବଯୁଗର ସଂସ୍କାରକ ମହାତ୍ମା କେଶବଚନ୍ଦ୍ର ସେନଙ୍କ ଯତ୍ନ ଏବଂ ପ୍ରବର୍ତ୍ତନାରେ ଯେତେବେଳେ ବ୍ରାହ୍ମ ବିବାହ ଆଇନର ପାଣ୍ଡୁଲିପି (କନ୍ୟାର ବୟସ ଚୌଦ ଏବଂ ବରର ବୟସ ଅଠରରୁ ଊଣା ହେଲେ ଉଭୟର ବିବାହ ନିଷିଦ୍ଧ ।) ବିଧିବଦ୍ଧ ହେବାକୁ ବସିଲା, ତେତେବେଳେ ସାଧାରଣଙ୍କର ମତ ଜିଜ୍ଞାସିତ ହୁଅନ୍ତେ ଉତ୍କଳରୁ ଦୁଇଜଣ ଯୁବକ ଉକ୍ତ ଆଇନ ସପକ୍ଷରେ ସତ୍‌ସାହସ ପ୍ରଦର୍ଶନପୂର୍ବକ ମତ ଦେଇଥିଲେ । ପରେ ପୁଣି ଯେତେବେଳେ କୁଚବିହାର ମହାରାଜାଙ୍କ ସହିତ କେଶବଚନ୍ଦ୍ରଙ୍କ ଚତୁର୍ଦ୍ଦଶ ବର୍ଷରୁ ଊନବୟସ୍କା କନ୍ୟାର ବିବାହ ପ୍ରସ୍ତାବ ହେଲା, ତେତେବେଳେ ସେ ଉକ୍ତ ପ୍ରସ୍ତାବ ବିରୁଦ୍ଧରେ ମତ ଦେଇଥିଲେ । ନିଜ ସମ୍ପ୍ରଦାୟ ମଧରେ ବାଲ୍ୟବିବାହ ପ୍ରଥା ପୂର୍ଣ୍ଣମାତ୍ରାରେ ପ୍ରଚଳିତ ଥିବାର ଜାଣି ସତ୍ୟକୁ ହୃଦୟର ଉଚ୍ଚ ଆସନରେ ସ୍ଥାପନପୂର୍ବକ ସାମାଜିକ ସମସ୍ତ ଭୟ ଭ୍ରାନ୍ତି କି ଦୂରକୁ ଫିଙ୍ଗିଦେଇ ସମଗ୍ର ସମାଜର ପ୍ରତିକୂଳରେ ଦଣ୍ଡାୟମାନ ହେବା ସାମାନ୍ୟ ଯୁବକ ପକ୍ଷରେ ସମ୍ଭବ କି ? ସେହି ବିଶିଷ୍ଟ ଶକ୍ତିଶାଳୀ ଯୁବକ ମଧୁସୂଦନ ଓ ପ୍ୟାରୀମୋହନ । ଏହି ଦୁଇ ନାମର ଏକତ୍ର ସମାବେଶ ବଡ଼ ପବିତ୍ର ବୋଧହୁଏ । ଏହି ଦୁଇ ଜୀବନର ଉଜ୍ଜ୍ୱଳମିଳନରେ ଉତ୍କଳରେ ଏକ ପୁଣ୍ୟଜ୍ୟୋତିର ସଞ୍ଚାର ହୋଇଅଛି । ଯୌବନରେ ଏହି ସମାନଧର୍ମା ଯୁବକ ଦୁହେଁ ପରସ୍ପରର ପ୍ରାଣସଖା ଥିଲେ । କଟକ ପ୍ୟାରୀମୋହନ ଏକାଡ଼େମୀର ସଂସ୍ଥାପକ ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ଯେପରି

ତେଜସ୍ୱୀ ଓ ସ୍ୱାଧୀନଚେତା, ସେହିପରି ମଧ୍ୟ ଅତ୍ୟନ୍ତ ସତ୍ୟାନୁରକ୍ତ ଥିଲେ । ସେପରି ପ୍ରାଣସଖାଙ୍କୁ ଯୌବନରୁ ହରାଇଥିଲେ ମଧ୍ୟ ମଧୁସୂଦନ ତାଙ୍କୁ କିପରି ଆଜୀବନ ସ୍ମୃତିପଟରେ ଅଙ୍କିତ ରଖିଥିଲେ, ତାହା ଅନେକ ବନ୍ଧୁ ଜାଣିଥିବେ । ମୃତ୍ୟୁର ପୂର୍ବ ବର୍ଷ ପ୍ୟାରୀମୋହନଙ୍କ ଶ୍ରାଦ୍ଧସଭାରେ ସେ ଯେତେବେଳେ ଗଦ୍‌ଗଦ-କଣ୍ଠରେ ଅଶ୍ରୁବର୍ଷଣ ସହ କହିବାକୁ ଆରମ୍ଭ କଲେ "ପ୍ୟାରୀମୋହନ ଯେ ମୋହର କି କୋଟିନିଧି ଥିଲେ, ତାହା ମୁଁ ଭାଷାରେ ପ୍ରକାଶ କରିପାରିବି ନାହିଁ । ଚରମ ମୁହୂର୍ତ୍ତରେ ତାହାଙ୍କର ଚରଣସେବାରୂପ ପୁଣ୍ୟ ଅଧିକାର ପାଇ ଏ ଜୀବନ ଧନ୍ୟ ହୋଇଅଛି"—ଇତ୍ୟାଦି—ଏଥିରୁ ସେ ଦୁଇ ଜୀବନର କିପରି ପୁଣ୍ୟ ସମ୍ବନ୍ଧ ଥିଲା, ଶ୍ରୋତୃବର୍ଗ ଅନୁମାନ କରି ପାରିଥିବେ । 'ବସନ୍ତଗାଥା'ର ଏହି କତିପୟ ପୃଷ୍ଠରୁ ମଧ୍ୟ ତାହାଙ୍କ ହୃଦୟର ପରିଚୟ ଦିଆଯାଇପାରେ—

"ସଂସାର ସାଗର ପାରେ ପୁଣ୍ୟାନନ୍ଦମୟ
ପରଲୋକଧାମେ ସଖା ଅଛ ଦେବଦଳେ ।
ଭୀମ ଭବସିନ୍ଧୁ କୂଳେ ବ୍ୟାକୁଳ ଅଥୟ
ଏକାକୀ ଭାସୁଛି ମୁହିଁ ଶୋକ-ଅଶ୍ରୁଜଳେ ।
ବ୍ୟଥିତ ତୃଷିତ ମୁଁ ଏ ସଂସାରସଂଗ୍ରାମେ,
ଦେବ କି ହେ ଦୀନେ, ସଖା, ବିନ୍ଦୁ ସେ ପ୍ରେମର ?"

ପ୍ୟାରୀମୋହନ ଏବଂ ମଧୁସୂଦନଙ୍କ ଜୀବନ ମଧ୍ୟରେ ଅନେକ ସାଦୃଶ୍ୟ ଆମ୍ଭେମାନେ ଦେଖୁଁ । ଉତ୍କଳରେ ଏପରି କୌଣସି ପୁସ୍ତକ ବା ପ୍ରବନ୍ଧ ସୁଦ୍ଧା ନାହିଁ, ଯହିଁରୁ ପ୍ୟାରୀମୋହନଙ୍କ ଜୀବନର ଆନୁପୂର୍ବିକ ପରିଚୟ ମିଳିବ । ଅବଶ୍ୟ ତାହାଙ୍କର ଅନେକ ବନ୍ଧୁ ଓ ବାଲ୍ୟସଖା ବର୍ତ୍ତମାନ ଜୀବିତ ଅଛନ୍ତି – 'ଉତ୍କଳ ସାହିତ୍ୟ'ର ଅନେକ ପାଠକଙ୍କୁ ମଧ୍ୟ ତାଙ୍କ ଜୀବନର ଅନେକ କଥା ଜଣାଅଛି । କିନ୍ତୁ ତଥାପି ସାହିତ୍ୟର ଯୁବକ ବା କନିଷ୍ଠ ପାଠକମାନଙ୍କୁ ଏ ବିଷୟରେ ଉତ୍କର୍ଣ୍ଣ ରଖି ଆଉ ଅଗ୍ରସର ହେବା ଯୁକ୍ତିସଙ୍ଗତ ବୋଧ ହେଉନାହିଁ । ତେଣୁ ଏ ଅଧମ ଲେଖକ ଏଠାରେ ପ୍ୟାରୀମୋହନଙ୍କ ଜୀବନର ଟିକିଏ ସଂକ୍ଷିପ୍ତ ପରିଚୟ ଦେଉଅଛି । ଆଶାକରେଁ, ଏହା କାହାରିକୁ ଅପ୍ରାସଙ୍ଗିକ ବୋଧ ହେବନାହିଁ ।

କଟକ ଜିଲ୍ଲାର ସାଲେପୁର ଥାନା ଅନ୍ତର୍ଗତ କୁଆଁପାଳ ଗ୍ରାମ ନିକଟରେ ପଶ୍ଚଲୁଣ୍ଠା ନାମରେ ଗୋଟିଏ କ୍ଷୁଦ୍ର ଗ୍ରାମ ଅଛି । ଏହାର ପାଦଦେଶରେ କୃଶୋଦରୀ ଗଭୀରା

ଗୋବରୀ କୁଞ୍ଚିତ ଗତିରେ ବହମାନା । ଏହି ଗୋବରୀ ନୀରପାନରେ ପ୍ୟାରୀମୋହନଙ୍କ ବାଲ୍ୟଶରୀର ପୁଷ୍ଟ । ପିତା ଭୁବନମୋହନ ଆଚାର୍ଯ୍ୟ କଟକ ଅଦାଲତର ଜଣେ ଓକିଲ ଥିଲେ । ୧୮୫୧ ଖ୍ରୀଷ୍ଟାବ୍ଦର ଶ୍ରାବଣ ମାସରେ ପ୍ୟାରୀମୋହନ ତାହାଙ୍କ ଗୃହରେ ଭୂମିଷ୍ଠ ହୋଇ ସୂତିକା ଗୃହ ଉଜ୍ଜ୍ୱଳ କରିଥିଲେ । ତାହାଙ୍କ ପରେ ଭୁବନମୋହନ ଆଉ ଦିଓଟି ପୁତ୍ର ସନ୍ତାନ ଲାଭ କରିଥିଲେ । ମଧ୍ୟମ ଦ୍ୱାରିକାନାଥ ଆଚାର୍ଯ୍ୟ ମୋକ୍ତାର ଥିଲେ ଏବଂ କନିଷ୍ଠ ଚନ୍ଦ୍ରମୋହନ ଆଚାର୍ଯ୍ୟ ଡାକ୍ତର ଥିଲେ । ପ୍ୟାରୀମୋହନ ସର୍ବପ୍ରଥମେ ନିକଟବର୍ତ୍ତୀ କୁଆଁପାଳ ପାଠଶାଳାରେ ଶିକ୍ଷାରମ୍ଭ କଲେ । ସେ କାଳର ପାଠଶାଳା କହିଲେ ଆଜିକାଲିର ଉଚ୍ଚପ୍ରାଥମିକ ବା ନିମ୍ନପ୍ରାଥମିକ ପରି ପାଠଶାଳା ନୁହେ । ତେତେବେଳେ ଏ ପ୍ରକାର ମାନର ପାଠଶାଳା କଳ୍ପନାକୁ ସ୍ପର୍ଶ କରିଥିଲା କି ନାହିଁ, ସନ୍ଦେହ । ସେ ସମସ୍ତ ପାଠଶାଳାରେ ପଠିତବ୍ୟ ବିଷୟ ଓ ପାଠର ଇୟତ୍ତା ସମାନ ନ ଥିଲା । ଅନେକ ବିଦ୍ୟାଳୟରେ ବଙ୍ଗଳା ଶିକ୍ଷା ଦିଆ ହେଉଥିଲା । ଓଡ଼ିଆ ଶିକ୍ଷା ପାଇଁ ତଦାନୀନ୍ତନ ସ୍କୁଲ ଡେପୁଟି ଇନ୍ସପେକ୍ଟର ପଣ୍ଡିତ କୈଳାସଚନ୍ଦ୍ର ତର୍କାଳଙ୍କାର (ଓକିଲ ଶ୍ରୀଯୁକ୍ତ ପ୍ରିୟନାଥ ଚାଟୁର୍ଯ୍ୟାଙ୍କ ପିତା) ବିଦ୍ୟାସାଗରଙ୍କ ବଙ୍ଗଳା ବର୍ଣ୍ଣପରିଚୟର ଯେଉଁ ଉତ୍କଳାନୁବାଦ କରିଥିଲେ, ସେହି ଖଣ୍ଡି ସମ୍ବଳ ଥିଲା । ସ୍ଥାନେ ସ୍ଥାନେ ପାଠଶାଳାରେ ଇଂରାଜୀ ଶିକ୍ଷାର ମଧ୍ୟ ବ୍ୟବସ୍ଥା ଥିଲା । ପ୍ୟାରୀମୋହନ ଏ ପ୍ରକାର ଗୋଟିଏ ପାଠଶାଳାରେ ବାଲ୍ୟଶିକ୍ଷା ସାଙ୍ଗ କରି ବାର ବର୍ଷ ବୟସରେ କଟକ ଆସିଲେ ଏବଂ ଉଚ୍ଚ ଇଂରାଜୀ ଶିକ୍ଷାର ଏକମାତ୍ର ବିଦ୍ୟାଳୟ କଟକ ଜିଲ୍ଲା ସ୍କୁଲରେ ଅଧ୍ୟୟନ କଲେ । (ଏହି ଜିଲ୍ଲା ସ୍କୁଲ ପରେ ଏଫ୍.ଏ. କ୍ଲାସ ସହିତ କଟକ ହାଇସ୍କୁଲ ନାମରେ ଆଖ୍ୟାତ ହେଲା ଏବଂ ୧୮୭୬ ଠାରୁ ରେଭେନ୍‌ସା କଲେଜିଏଟ୍ ସ୍କୁଲ ନାମରେ ଅଭିହିତ ହୋଇ ଆସୁଅଛି ।)

ଏହି ଜିଲ୍ଲା ସ୍କୁଲରେ ପଢୁଥିବା ସମୟରେ ତାହାଙ୍କ ଜୀବନର ବିଶିଷ୍ଟ ଲକ୍ଷଣଗୁଡ଼ିକ ଛାତ୍ରସମାଜରେ ବାରି ହୋଇ ପଡୁଥିଲା । ପଠଦ୍ଦଶାରୁ ଦେଖାଯାଇଅଛି, ସେ ବଡ଼ ଚିନ୍ତାଶୀଳ ଥିଲେ । କି ଶ୍ରେଣୀରେ, କି ବାହାରେ, ସର୍ବତ୍ର ମଧ୍ୟେ ମଧ୍ୟେ ସେ ଗୋଟାଏ କଣ ଭାବୁଥାନ୍ତି । ତେଣୁ ସହଧ୍ୟାୟିମାନଙ୍କ ମଧ୍ୟରେ ଏହି ଧାରଣା ଜନ୍ମିଥିଲା ଯେ ପ୍ୟାରୀମୋହନ ଅନ୍ୟମନସ୍କ ବା 'ଖିଆଲବାଗୀ' । ସେଥିପାଇଁ ସେ ଉତ୍ତମରୂପେ ପଢ଼ା ପ୍ରସ୍ତୁତ କରିପାରୁନଥିଲେହେଁ ବେଳେବେଳେ ଯାହା କାନରେ ପଡୁଥିଲା, ତାହାରିଦ୍ୱାରା ତୀକ୍ଷ୍ଣ ମେଧାଶକ୍ତି ବଳରେ ପ୍ରତିଯୋଗିତାରୁ ପାର ପାଇ ଯାଉଥିଲେ । ସେହି ବାଲ୍ୟ ବୟସରେ ମଧ୍ୟ ସେ ଭାବୁକଜନୋଚିତ ବିବିକ୍ତ ସ୍ଥଳକୁ ଅଧିକ ଭଲ ପାଉଥିଲେ । ତେଣୁ ଅବକାଶ ସମୟରେ ଛାତ୍ରସାଧାରଣଙ୍କ ପରି ଖେଳକୁ ନଯାଇ ନିରୋଳାରେ ପ୍ରିୟତମ

ବନ୍ଧୁ ସହିତ ପୁସ୍ତକ ଘେନି ପଢ଼ି ବସୁଥିଲେ ଅଥବା କୌଣସି ବିଷୟରେ ତର୍କ ବିତର୍କ କରୁଥିଲେ । ଯାହାଙ୍କ ସହିତ ହୃଦୟ ମିଳେ, ତାଙ୍କ ବ୍ୟତୀତ ଅନ୍ୟ କୌଣସି ସହପାଠି ମାନଙ୍କ ସଙ୍ଗେ ସେ କଦାପି ମିଶୁ ନଥିଲେ । ଛାତ୍ରଙ୍କଠାରୁ ଶିକ୍ଷକଙ୍କ ପର୍ଯ୍ୟନ୍ତ ସମସ୍ତେ ତାହାଙ୍କୁ ସତ୍ୟପ୍ରିୟ ଏବଂ ସ୍ପଷ୍ଟବକ୍ତା ବୋଲି ଜାଣିଥିଲେ । କେବେ ଅନୁରୋଧ ଉପରୋଧ(୧)ରେ ମଧ ସେ ବାଳକଙ୍କୁ ସତ୍ୟ ତ୍ୟାଗ କରିଥିବାର ଦେଖା ଯାଇନାହିଁ । ଦିନେ ଦିନେ ଏପରି ମଧ ଘଟିଅଛି ଯେ, ସେ ବରଂ କଠୋର ଦଣ୍ଡ ସ୍ୱୀକାର କରିଅଛନ୍ତି, କିନ୍ତୁ ଶିକ୍ଷକଙ୍କ ଭୟରେ ଶ୍ରେଣୀରେ ଅନ୍ୟ ଛାତ୍ରମାନେ ସତ୍ୟଗୋପନ ବା ମୌନାବଲମ୍ବନ କରିଥିବା ସ୍ଥଳରେ ସେ ସ୍ପଷ୍ଟ କଥା କହିବାକୁ ଛାଡ଼ି ନାହାନ୍ତି । ୧୮୬୯ ଖ୍ରୀଷ୍ଟାବ୍ଦରେ ବିଶ୍ୱବିଦ୍ୟାଳୟର ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ସେ କଲେଜରେ ଅର୍ଥାତ୍ ଏଠା କଟକ ହାଇସ୍କୁଲର ପ୍ରଥମବର୍ଷୀୟ ଶ୍ରେଣୀରେ ଅଧ୍ୟୟନ କଲେ । ଏହିଠାରେ ତାଙ୍କର ପୁରୀରୁ ଆଗତ ମଧୁସୂଦନଙ୍କ ସହିତ ପ୍ରଥମ ପରିଚୟ ହୋଇଥିଲା ଏବଂ ସେହି ପରିଚୟ କ୍ରମଶଃ ଗାଢ଼ତର ହୋଇ ପରେ ପରମାତ୍ମୀୟତା ଆକାର ଧାରଣ କଲା । ପୂର୍ବୋକ୍ତ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟଙ୍କୁ ଉପଦେଶକ ପାଇ ଉଭୟେ ବ୍ରାହ୍ମଧର୍ମ ପ୍ରତି ଏକାନ୍ତ ଆସ୍ଥାବାନ୍ ହୋଇଥିଲେ । କଲେଜର ଅବକାଶ ସମୟରେ ଏ ଉଭୟେ ଅନ୍ୟ ଛାତ୍ରମାନଙ୍କ ସହିତ ଇତସ୍ତତଃ ନହୋଇ କୌଣସି ନିଭୃତ ସ୍ଥାନରେ ବସି ନାନା ପ୍ରସଙ୍ଗରେ ବିଶେଷତଃ ଆଧ୍ୟାତ୍ମିକ ବିଷୟରେ ତର୍କ ବିତର୍କ କରୁଥିଲେ । ମଧ୍ୟେ ମଧ୍ୟେ ଅବସରକ୍ରମେ ସେହିଠାରେ ମଧ ପ୍ରବନ୍ଧ ଲେଖା ଅଥବା ଇଂରାଜୀ ଭାଷାର କୌଣସି ଉତ୍କୃଷ୍ଟ ରଚନାର ଅନୁବାଦ ହୋଇ ଯାଉଥିଲା । ଅନେକେ 'ଉତ୍କଳପୁତ୍ର' ନାମକ ସମ୍ବାଦପତ୍ରର ନାମ ଶୁଣିଥିବେ । କ୍ଷୁଦ୍ର କଳେବର (୪ ପୃଷ୍ଠା) ଶିଶୁ ଉତ୍କଳଦୀପିକାରେ ତେତେବେଳେ ସମସ୍ତ ବିଷୟ ପ୍ରକାଶିତ ହୋଇପାରୁ ନ ଥିବାରୁ ପ୍ୟାରୀମୋହନ ପ୍ରମୁଖ ଯୁବକମାନେ ଏହି ସମୟରେ (୧୮୭୧) ଆଉ ଖଣ୍ଡିଏ ପତ୍ରିକାର ଆବଶ୍ୟକତା ଅନୁଭବ କରି ଭେଦା ସଂଗ୍ରହ ଦ୍ୱାରା ଛାତ୍ରାବସ୍ଥାରେ ପ୍ରକାଶ କରିବାକୁ ସାହସୀ ହୋଇଥିଲେ । ଏ ଦୁଇ ଯୁବକଙ୍କ ବ୍ୟତୀତ ଅନ୍ୟାନ୍ୟ ଉଦ୍‌ଯୋକ୍ତାମାନଙ୍କ ମଧରେ ପଣ୍ଡିତ ଗୋବିନ୍ଦ ରଥ ଜଣେ ପ୍ରଧାନ ଥିଲେ । ପ୍ୟାରୀମୋହନ ଏ ପତ୍ରର ସମ୍ପାଦକ ଓ ପ୍ରଧାନ ଉଦ୍‌ଯୋକ୍ତାରୂପେ କାର୍ଯ୍ୟ ପରିଚାଳନ କରିବାକୁ ଲାଗିଲେ । ଏହି ପତ୍ରିକାରେ ପ୍ରକାଶିତ ଗୋଟିଏ ପ୍ରବନ୍ଧ ଲାଗି ତାହାଙ୍କୁ କଲେଜ ତ୍ୟାଗ କରିବାକୁ ହୋଇଥିଲା । ଘଟନାଟି ଏଠାରେ ସଂକ୍ଷେପତଃ ପ୍ରକାଶ କରି ପାଠକମାନଙ୍କର ଉତ୍କଣ୍ଠା ଦୂର କରିବୁଁ ।

(୧) ଉପ୍ରୋଧ (ସଂ.)

୧୮୮୫ ଖ୍ରୀଷ୍ଟାବ୍ଦର ବା ସ୍ଥାନୀୟ ଆତ୍ମଶାସନ ପ୍ରଣାଳୀ (Local Self Government) ପ୍ରବର୍ତ୍ତିତ ହେବା ପୂର୍ବେ ଏ ନଗରର ସ୍ୱାସ୍ଥ୍ୟ ସଂରକ୍ଷଣ ବା ପରିଷ୍କରଣାଦିର ଭାର ଜିଲ୍ଲାର ମାଜିଷ୍ଟ୍ରେଟଙ୍କ ହାତରେ ଥିଲା । ସେ କାଳର ଫେରିଫଣ୍ଡରୁ ଅର୍ଥାତ୍ ଘାଟ ଆଦିରୁ ଉତ୍ପନ୍ନ ଆୟରୁ ଉକ୍ତ ବ୍ୟୟ ଚଳୁଥିଲା । ବର୍ଣ୍ଣିତ ସମୟର କଲେକ୍ଟର ଏରିଭିଙ୍ଗ୍ ସାହେବଙ୍କ ତତ୍ତ୍ୱାବଧାନର ଅଭାବରେ ଏ ସହର ନିତାନ୍ତ ଆବର୍ଜନାମୟ ହୋଇପଡ଼ିବାରୁ ତାହାର ପ୍ରତୀକାର ଲାଗି 'ଉତ୍କଳ ପୁତ୍ର'ରେ ପ୍ୟାରୀମୋହନଙ୍କର 'ଦରଖାସ୍ତ ଯୁତିୟାନ' ଅର୍ଥାତ୍ 'ଯୋତାମାନଙ୍କର ଆବେଦନ' ଶୀର୍ଷକ ଗୋଟିଏ ପ୍ରବନ୍ଧ ବାହାରିଲା । ଏକେ ତ ଅପ୍ରିୟ ସତ୍ୟ କଥା–ଦ୍ୱିତୀୟରେ ପୁଣି ଅତି ତେଜସ୍ୱିନୀ ଭାଷା । ଏହି ଦୁଇ ତୀବ୍ରତାରେ ସାହେବ ପ୍ରଚଣ୍ଡ ହୋଇ ହାଇସ୍କୁଲ ହେଡ଼ମାଷ୍ଟର ପୂର୍ବୋକ୍ତ ଚଣ୍ଡୀ ବାବୁଙ୍କୁ ଏ ପ୍ରବନ୍ଧ ଲେଖକ ଛାତ୍ରଙ୍କୁ ସ୍କୁଲରୁ ବହିଷ୍କୃତ କରିଦେବାକୁ ଆଦେଶ ଦଲେ । ଚଣ୍ଡୀ ବାବୁ ଏପରି ଛାତ୍ରକୁ ବହିଷ୍କୃତ କରିବା ପୂର୍ବରୁ ରକ୍ଷାର ଉପାୟ ଲାଗି ପ୍ୟାରୀମୋହନଙ୍କୁ ସାହେବଙ୍କ ନିକଟରେ କ୍ଷମା ପ୍ରାର୍ଥନା କରିବାକୁ ଅନୁରୋଧ କଲେ; ମାତ୍ର ଏ ସ୍ୱାଧୀନଚେତା ସତ୍ୟପ୍ରିୟ ଯୁବକ ସେଥିରେ ସମ୍ମତ ନ ହୋଇ ସ୍ପଷ୍ଟଭାଷାରେ କହିଲେ "ଯାହା ଲେଖା ହୋଇଅଛି, ସେଥିରେ କିଛି ଅଯଥାର୍ଥ ଅଛି କି ? ମୁଁ କଦାପି କ୍ଷମା ପ୍ରାର୍ଥନା କରି ପାରିବି ନାହିଁ ।" ଏହାରି ଫଳରେ ତାହାଙ୍କୁ ଦ୍ୱିତୀୟ ବର୍ଷୀୟ ଶ୍ରେଣୀରୁ ବିଦାୟ ନେବାକୁ ହେଲା ।

ସରକାରୀ ସ୍କୁଲରୁ ବାହାରି ଆସି ତାହାଙ୍କ ମନରେ ଏହି ଭାବନା ଦୃଢ଼ୀଭୂତ ହେବାକୁ ଲାଗିଲା ଯେ, ଆଉ ଗୋଟାଏ ସ୍କୁଲ ଏ ସହରରେ ହେଲେ ଏମାନଙ୍କର ଆଉ ଏତେ ପ୍ରଭାବ ବା ଯଥେଚ୍ଛାଚାର ରହିବ ନାହିଁ । ତହୁଁ ସେ ଗୋଟିଏ ନୂତନ ବିଦ୍ୟାଳୟ ସ୍ଥାପନ କରିବାର ସଂକଳ୍ପ ଅନ୍ତରଙ୍ଗ ବନ୍ଧୁଗଣଙ୍କ ନିକଟରେ ପ୍ରକାଶ କଲେ । ସେମାନେ ଏହି କପର୍ଦ୍ଦକଶୂନ୍ୟ ଯୁବକର "ବାମନର ଚନ୍ଦ୍ର ଧାରଣବତ୍" ପ୍ରୟାସରେ ଯେ ଉପହାସ କରିବେ, ଏହା ସ୍ୱତଃସିଦ୍ଧ କଥା । କିନ୍ତୁ ପ୍ୟାରୀମୋହନ "Where there is a will there is a way" ମନ୍ତ୍ରରେ ଦୀକ୍ଷିତ ହୋଇ ସଂକଳ୍ପିତ କର୍ମ ଅନୁଷ୍ଠାନରେ ଅଗ୍ରସର ହେଲେ । ପଣ୍ଡିତ ଗୋବିନ୍ଦ ରଥ ଏହି କାର୍ଯ୍ୟରେ ତାଙ୍କର ଜଣେ ପ୍ରଧାନ ସହଯୋଗୀ । ବକ୍ସିବଜାର ନିବାସୀ କୃପାନିଧି ସାହୁ ନାମକ ଜଣେ ଧନୀ ମହାଜନଙ୍କର ତେତେବେଳେ ଗୋଟିଏ ପାଠଶାଳା ଥିଲା । ଏହି ପାଠଶାଳାକୁ ପ୍ରଶସ୍ତତର ଭିତ୍ତିରେ ସ୍ଥାପନ କରିବା ଆଶୟରେ ପ୍ୟାରୀମୋହନ ପଣ୍ଡିତ ଗୋବିନ୍ଦ ରଥଙ୍କୁ ଘେନି କାର୍ଯ୍ୟାରମ୍ଭ କଲେ । ତାହାଙ୍କ ଶିକ୍ଷାଦାନ ପ୍ରଣାଳୀରେ ଆକୃଷ୍ଟ ହୋଇ ଅଭିଭାବକମାନେ ସ୍ୱ ସ୍ୱ ସନ୍ତାନମାନଙ୍କୁ ସେହିଠାକୁ ପଠାଇଲେ । ଛାତ୍ରଦତ୍ତ ବେତନରେ ବିଦ୍ୟାଳୟର ବ୍ୟୟ କଥଞ୍ଚିତ୍ ଚଳିବାର ଆଶା

ଦେଖାଗଲା । ପ୍ୟାରୀବାବୁ ବହୁକାଳ ଆଉ ଶିକ୍ଷକ କର୍ମରେ ଆବଦ୍ଧ ରହି ପାରିଲେ ନାହିଁ । ଅର୍ଥାଗମର କୌଣସି ଉପାୟ ନଥିଲା — ପ୍ରଥମେ ସେ କମିଶନର ଅଫିସରେ ୨୫ ଟଙ୍କା ବେତନର ଗୋଟିଏ କିରାଣୀ କର୍ମ ଗ୍ରହଣ କରି ତାହା ବଳରେ ସ୍କୁଲର ସାହାଯ୍ୟ ବା ତତ୍ତ୍ୱାବଧାନ କରିବାକୁ ସାହସୀ ହୋଇଥିଲେ । ବାବୁ ବଂଶୀଧର ମହାପାତ୍ର (ବର୍ତ୍ତମାନ ଯାଜପୁର ସ୍କୁଲର ଦ୍ୱିତୀୟ ଶିକ୍ଷକ) ଏ ସ୍କୁଲର ପ୍ରଥମ ହେଡ୍‌ମାଷ୍ଟର ନିଯୁକ୍ତ ହେଲେ । ୧୮୭୫ ଅବ୍ଦରେ ଏହି ସ୍କୁଲଟି ଗୋଟିଏ ମଧ୍ୟ-ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା ଏବଂ କ୍ରମଶଃ ଉନ୍ନୀତ ହୋଇ ଚାରି ବର୍ଷ ପରେ ଅର୍ଥାତ୍ ୧୮୭୯ ଶେଷରେ ଏହା ହାଇସ୍କୁଲ ଶ୍ରେଣୀଭୁକ୍ତ ହେଲା ।

ଏହି ସମୟରେ ବଙ୍ଗ ଦେଶରୁ ବାବୁ ବିପିନ ଚନ୍ଦ୍ର ପାଳ (ବର୍ତ୍ତମାନ ଭାରତରେ ଯାହାଙ୍କ ନାମ ସୁପରିଚିତ) ଏ ସ୍କୁଲର ହେଡ୍‌ମାଷ୍ଟର ପଦରେ ନିଯୁକ୍ତ ହୋଇ ଆସିଲେ । ତେତେବେଳେ ତାଙ୍କଠାରେ ଏଡ଼େ ସମ୍ଭାବନା ଥିଲା ବୋଲି କାହାରି ହୃଦୟକୁ ସ୍ପର୍ଶ କରି ନଥିଲା । ଏହିପରି ଯେଉଁ ସୁପୁରୁଷମାନେ ଏ ବିଦ୍ୟାଳୟରେ କିଛି ଦିନ ହାତ ଦେଇଅଛନ୍ତି, ସମସ୍ତେ ବର୍ତ୍ତମାନ ଅନ୍ୟତ୍ର ଥିଲେହେଁ ସେମାନଙ୍କର ଶକ୍ତି ଏ ବିଦ୍ୟାଳୟର ଆଭ୍ୟନ୍ତରୀଣ ଉନ୍ନତିରେ ପ୍ରଚ୍ଛନ୍ନ ଭାବରେ କାର୍ଯ୍ୟ କରୁଅଛି । ଦେଖୁଁ ଦେଖୁଁ ହାଇସ୍କୁଲ ହୋଇଗଲା । କିନ୍ତୁ ପରିଚାଳନର ବ୍ୟବସ୍ଥା କିଛି ହୋଇନାହିଁ । ପ୍ୟାରୀମୋହନ ମଧୁସୂଦନ ପ୍ରମୁଖ କେତେକ ବନ୍ଧୁଙ୍କ ସାହାଯ୍ୟରେ ସ୍କୁଲର କେତେକ ଉପକରଣ ସଂଗ୍ରହ କରି ଅବଶିଷ୍ଟ ଉପକରଣ ଏବଂ ଶିକ୍ଷକଗଣଙ୍କ ବେତନ ଲାଗି ଉପଯୁକ୍ତ ଅର୍ଥ ସଂଗ୍ରହ କରିବାରେ ବ୍ୟାକୁଳ ହୋଇପଡ଼ିଲେ । ତାଙ୍କର ଧନ କିଛି ନ ଥିଲା ସତ୍ୟ, କିନ୍ତୁ ମନ ଯଥେଷ୍ଟ ମାତ୍ରାରେ ଥିଲା । ମନ ଦୃଢ଼ ଥିଲେ ଧନ କିପରି ବଶମ୍ବଦ ଭାବରେ ପାଖକୁ ଆସେ, ତାହାର ଦୃଷ୍ଟାନ୍ତ ବଙ୍ଗର ବିଦ୍ୟାସାଗର ଏବଂ ଏହି ପ୍ୟାରୀମୋହନଙ୍କ ଜୀବନରେ ଦେଖାଯାଇଅଛି । ପ୍ରାଚୀନ କବି ଭୂରି ଭୂରି ଘଟନା ପ୍ରତ୍ୟକ୍ଷ କରି କହିଅଛନ୍ତି, ''ଉତ୍ସାହସମ୍ପନ୍ନମଦୀର୍ଘସୂତ୍ରଂ ଲକ୍ଷ୍ମୀଃ ସ୍ୱୟଂ ଯାତି ନିବାସହେତୋଃ ।'' ଅନ୍ୟ ଉପାୟ ନ ଦେଖି ପ୍ୟାରୀମୋହନ କେତେକ ରାଜାଙ୍କର ଜିନିଷ ଯୋଗାଇବାର ଏଜେଣ୍ଟ ହୋଇ ସେହି କମିଶନ ଲବ୍‌ଧ ଅର୍ଥ ବିଦ୍ୟାଳୟକୁ ପ୍ରଦାନ କରୁଥିଲେ । ନିଜର ମାସିକ ଆୟ ୩୦ ଟଙ୍କା ମାତ୍ର । ତହିଁରୁ ଆପଣାର ଅପରିହାର୍ଯ୍ୟ ବ୍ୟୟ ବ୍ୟତୀତ ଆଉ ସମସ୍ତ ସେଥିପାଇଁ ପ୍ରଦତ୍ତ ହେଉଥିଲା । ହାତକୁ କିଛି ଅର୍ଥ ଆସିଲେ ତାହା ଗୋଟିଏ ବ୍ୟୟର ଦାଣ୍ଡ ନ ଧରି ରହି ପାରୁ ନ ଥିଲା । ଯେ ଯାହା ଚାହିଁଲେ ସେ ତତ୍‌କ୍ଷଣାତ୍ ତାକୁ ପକାଇ ଦେଉଥିଲେ । ନିଜର ପରିଚ୍ଛଦ ଅତି ଜୀର୍ଣ୍ଣ ଛିନ୍ନ, କିନ୍ତୁ ପରର ନୂତନ ପରିଚ୍ଛଦ ପାଇଁ ତାଙ୍କର ଅର୍ଥର ଗତି—ନିଜର ଆର୍ଥିକ ଅବସ୍ଥା ଅତି ହୀନ, କିନ୍ତୁ

ପରର ହୀନତା ଦୂର କରିବାପାଇଁ ତାଙ୍କର ଅର୍ଥ ଧାବିତ । ଏହିପରି ସଜ୍ଜନଙ୍କ ହସ୍ତରେ ଅର୍ଥର ସଦ୍‌ଗତି ହୋଇଥାଏ । କବି ଯଥାର୍ଥ କହିଅଛନ୍ତି, ''ଧନମିବ କୃପଣସ୍ୟ ବ୍ୟର୍ଥତାଂ ଯାତି ଚକ୍ଷୁଃ ।'' ପ୍ୟାରୀମୋହନଙ୍କ ମୁକ୍ତ ହସ୍ତତା ଦେଖି ତଦାନୀନ୍ତନ ସାଧାରଣଙ୍କର ଧାରଣା ହୋଇଥିଲା ଯେ, ସେ ବଡ଼ ଫାଙ୍ଗୁଳା ଲୋକ । କିନ୍ତୁ ଫାଙ୍ଗୁଳା ନ ହୋଇଥିଲେ ମାସିକ ୨୫-୩୦ ଟଙ୍କା ଆୟରେ ଏତେବଡ଼ ବ୍ୟୟସାଧ କାର୍ଯ୍ୟରେ ହାତ ଦେବାକୁ ସାହସୀ ହୋଇଥାନ୍ତେ କି ? ତାଙ୍କର ଜୀବନ ମଧରେ ଏହି ଆୟ ବଢ଼ି ବଢ଼ି ୫୦ ଟଙ୍କା ପର୍ଯ୍ୟନ୍ତ ଯାଇଥିଲା । ଉତ୍କଳର ସୁପରିଚିତ ଫକୀରମୋହନ ସେନାପତି ମହାଶୟ ତେତେବେଳେ ଡମପଡ଼ା ରାଜ୍ୟର ମ୍ୟାନେଜର ଥିଲେ । ରାଜସ୍ୱ ବୃଦ୍ଧି ଯୋଗେ ରାଜା ଓ ପ୍ରଜାମାନଙ୍କ ମଧରେ ବିରୋଧ ଜନ୍ମିବାରୁ ସେ ଉକ୍ତ କାର୍ଯ୍ୟ ପରିତ୍ୟାଗ କରନ୍ତେ, ସେ ସ୍ଥଳରେ ଡମପଡ଼ା ରାଜକୁମାରଙ୍କ ଗୃହଶିକ୍ଷକ ପ୍ୟାରୀମୋହନ ଏହି କର୍ମରେ ମାସିକ ଅର୍ଦ୍ଧଶତ ମୁଦ୍ରା ବେତନରେ ନିଯୁକ୍ତ ହେଲେ ଏବଂ ତାଙ୍କର ଏକାତ୍ମା ଆମ୍ଭମାନଙ୍କ ମଧୁସୂଦନ ରାଜକୁମାର ବ୍ରଜେନ୍ଦ୍ରକୁମାର ମାନସିଂହଙ୍କ ଶିକ୍ଷକ ପଦରେ ନିଯୁକ୍ତ ହୋଇଥିଲେ । ଡମପଡ଼ାର ତଦାନୀନ୍ତନ ରାଜା ରଘୁନାଥ ମାନସିଂହ ଜଣେ ଯଥାର୍ଥ ଗୁଣଗ୍ରାହୀ ପୁରୁଷ ଥିଲେ । ତେଣୁ ସେ ଉତ୍କଳର ତିନୋଟି ସୁପୁତ୍ରଙ୍କୁ ବରଣ କରି ପୁଣ୍ୟ ରାଜଶ୍ରୀ ଅର୍ଜନ କରିଥିଲେ । ୧୮୮୦ରେ ପ୍ୟାରୀମୋହନଙ୍କ ଏକ ହସ୍ତରେ ମ୍ୟାନେଜର ପଦ ଲାଭ ଅନ୍ୟ ହସ୍ତରେ କଟକ ଏକାଡେମୀ (ହାଇସ୍କୁଲ) । ଗୋଟିକରେ ଆଣି ଅନ୍ୟଟିରେ ଅର୍ପଣ କରିବା ତାଙ୍କର ପ୍ରଧାନ କାର୍ଯ୍ୟ ହେଲା । ଡମପଡ଼ା ଏହି କଟକ ଏକାଡ଼େମୀର ପ୍ରଥମ ପୃଷ୍ଠପୋଷକ ହୋଇଥିଲା । କିନ୍ତୁ ଅଧିକ କାଳ ନୁହେଁ– ପ୍ରଥମ ବର୍ଷରେ ଗୋଟିଏ ଛାତ୍ର ଏ ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇଥିବା ସମ୍ବାଦରେ ପ୍ୟାରୀମୋହନ ସିଦ୍ଧିଲାଭ କରିଥିଲେ । ତେଣୁ ଅକାଳରେ ସେ ଇହଧାମରୁ ଅନ୍ତରିତ ହୋଇଥିଲେ । ତାଙ୍କର ଲୋକାନ୍ତରପ୍ରସ୍ଥାନ ସମ୍ବାଦ ସର୍ବଶେଷରେ ପ୍ରଦାନ କରିବୁଁ ।

ଏଥି ପୂର୍ବେ ବୋଲାଯାଇଅଛି ଯେ ପ୍ୟାରୀମୋହନ ବଡ଼ ସ୍ୱାଧୀନଚେତା ଥିଲେ । ତାହାଙ୍କର ଏହି ନିର୍ଭୀକ ସ୍ୱଭାବ ଓ ତେଜସ୍ୱିତା ଦେଖି ଅନେକ ପଦସ୍ଥ କର୍ମଚାରୀ ଅନ୍ତଃକରଣରେ ବଡ଼ ଭୟ ପୋଷିଥିଲେ । ତାଙ୍କର କୌଣସି ବନ୍ଧୁ ଯେଡ଼େ ପଦସ୍ଥ ହୋଇଥାନ୍ତୁ ପଛକେ ଅନୁରୋଧ ଉପରୋଧରେ କେବେ ତାଙ୍କୁ ସତ୍ୟ ପ୍ରତିଜ୍ଞାରୁ ବିଚଳିତ ହେବାର ଦେଖିଲେ ସେ ଅତ୍ୟନ୍ତ ଘୃଣା କରୁଥିଲେ । କୌଣସିଠାରେ କିଛି ଅତ୍ୟାଚାର ହେବାର ଦେଖିଲେ ତାହାର ନିବାରଣ ଲାଗି ସେ ବଡ଼ ବ୍ୟାକୁଳ ହୋଇ ପଡୁଥିଲେ ଏବଂ ଅତ୍ୟାଚାରିତ ଲୋକଙ୍କୁ ଯଥାଶକ୍ତି ସାହାଯ୍ୟ କରି ଉତ୍ସାହିତ କରୁଥିଲେ । ଅନେକ ପାଠକଙ୍କୁ

ସେ ସମୟରେ ବାଙ୍କୀ ତହସିଲଦାରଙ୍କ ଅତ୍ୟାଚାର ବିରୁଦ୍ଧରେ ପଣ୍ଡିତ ଗୋବିନ୍ଦ ରଥଙ୍କ ମକଦ୍ଦମାର ସମ୍ବାଦ ଜଣା ଥିବ । ଉତ୍କଳ ଦୀପିକାର ଅନେକ ସ୍ତମ୍ଭ ଏହି ସମ୍ବାଦରେ ପୂର୍ଣ୍ଣ ହୋଇଥିଲା । ତେତେବେଳେ ପ୍ୟାରୀମୋହନ ଏହି ଅତ୍ୟାଚାର ବିରୁଦ୍ଧରେ ଦଣ୍ଡାୟମାନ ସ୍ୱବନ୍ଧୁ ରଥଙ୍କ ପକ୍ଷ ସମର୍ଥନ କରି କିପରି ଉତ୍ସାହିତ କରୁଥିଲେ, ତାହା ନିମ୍ନୋଦ୍ଧୃତ ପତ୍ର ଖଣ୍ଡିକରୁ ପାଠକମାନେ ଅନୁମାନ କରିପାରିବେ ।

"ରଥେ, ଯେଉଁ କାର୍ଯ୍ୟରେ ପ୍ରବୃତ୍ତ ହୋଇଅଛ, ସେଥିରେ ସାବଧାନପୂର୍ବକ କାର୍ଯ୍ୟ କରିବ । ସାକ୍ଷିମାନେ ଯେମନ୍ତ ଯଥାର୍ଥ ବର୍ଣ୍ଣନା କରନ୍ତି, ସେଥିପ୍ରତି ଚେଷ୍ଟାର ତ୍ରୁଟି କରିବ ନାହିଁ । ସାକ୍ଷିମାନେ ସତ୍ୟ କହିବେ କି ନାହିଁ, ବଡ଼ ସନ୍ଦେହର ବିଷୟ । କମିସନର ସାହେବ ଯେ କିଛିକାଳ ସକାଶେ ସ୍ଥାନାନ୍ତରିତ କରିବାକୁ ଅସ୍ୱୀକୃତ ହୋଇଅଛନ୍ତି, ଏହା ଶୁଣି ମୁଁ ଟିକିଏ ଶଙ୍କିତ ହୋଇଅଛି । ସାବଧାନ ! ସାବଧାନ ! 'ଯତୋଧର୍ମସ୍ତତୋଜୟଃ' ଏହି କଥା ସ୍ଥିର ଜାଣି ଯଥାସାଧ ଚେଷ୍ଟା କର । ଭଗବାନ ଯାହା କରିବେ । ବଙ୍ଗୀୟ ଓ ଉତ୍କଳୀୟ ସମସ୍ତ ସମ୍ବାଦପତ୍ରମାନଙ୍କୁ ଏ ସମ୍ବାଦ ପଠାଅ । ମିରର ଓ କଲିକତାର Statesman ଏହି ଦୁଇ ପତ୍ରକୁ ଟେଲିଗ୍ରାମଦ୍ୱାରା ସମ୍ବାଦ ଦିଅ ଯେ ବାଙ୍କୀ ଡେପୁଟୀ ମେଜେଷ୍ଟର ଏପରି ଅତ୍ୟାଚାର କରୁଥିବାର କେତେକ ବାଙ୍କୀବାସିମାନେ କମିସନର ସାହେବଙ୍କଠାରେ ଦରଖାସ୍ତ କରିଅଛନ୍ତି । ଦରଖାସ୍ତକାରୀମାନେ ସ୍ଥାନାନ୍ତରିତ କରି ମକଦ୍ଦମା ବିଚାର କରିବାକୁ ପ୍ରାର୍ଥନା କରନ୍ତି, ମାତ୍ର କମିସନର ତାହା ନ କରି ଗୁହା ତଲବ କରିଅଛନ୍ତି । ଇତ୍ୟାଦି । ଏହିପରି ମଧୁ ପ୍ରଭୃତିଙ୍କି ବିଚାରି ସାବଧାନ ହୋଇ ତାର ଡାକରେ ଖବର ଦିଅ । ସନ୍ଧ୍ୟା ଉତ୍ତାରୁ ଖବର ଦେଲେ ଟଙ୍କାକେ ୩୬ କଥା ଯିବ । ସମସ୍ତ ସମ୍ବାଦ ଲେଖିବ ।

ତୁମ୍ଭର

ତା ୨୦।୮।୧୮୮୦ । ପ୍ୟାରୀମୋହନ ।

(ଏ ପତ୍ର ଡୋମପଡ଼ାରୁ କଟକ ଏକାଡ଼େମୀର ପଣ୍ଡିତ ରଥଙ୍କ ନାମରେ ଆସିଥିଲା ।)

କଟକରେ ଥିବା କାଳରେ ସେ ଅନେକ ସମୟରେ ଶିକ୍ଷା, ସମାଜସଂସ୍କାର ଓ ସତ୍ୟଧର୍ମାନୁରାଗ ସମ୍ବନ୍ଧରେ ବକ୍ତୃତାମାନ ଓଜସ୍ୱିନୀ ଭାଷାରେ ପ୍ରଦାନ କରୁଥିଲେ । ରାଜନୈତିକ ବିଷୟର ଚର୍ଚ୍ଚା ସେତେବେଳେ ସାଧାରଣଙ୍କ କର୍ଣ୍ଣକୁ ଆସି ନ ଥିଲେ ହେଁ ସେ ଯେ ତାହାର ଜଣେ ମର୍ମଜ୍ଞ ଥିଲେ, ଏଥିର ପ୍ରମାଣ କେତେକ କାର୍ଯ୍ୟରୁ ଜଣାଯାଏ । ଏ ଉଭୟ ମହାତ୍ମାଙ୍କଠାରେ କେତେଗୁଡ଼ିଏ ଗୁଣ ସମଞ୍ଜସ ଭାବରେ ଥିଲା । କିନ୍ତୁ ମଧୁସୂଦନଙ୍କଠାରେ ଯାହା କିଞ୍ଚିତ୍ ନମ୍ର ବା ସହନୀୟ ଭାବରେ ଥିଲା,

ପ୍ୟାରୀମୋହନଙ୍କଠାରେ ତାହା କିଞ୍ଚିତ୍ ତେଜସ୍ୱୀ ଭାବରେ ଥିଲା । ତେଣୁ ଜଣଙ୍କର ବ୍ୟବହାର ଲୋକଙ୍କୁ ମଧୁର ବୋଧ ହେଲେ, ଅନ୍ୟ ଜଣଙ୍କର କିଞ୍ଚିତ୍ ତୀବ୍ର ବୋଧ ହେଉଥିଲା । ପରୋପକାର ବ୍ରତରେ ପ୍ୟାରୀମୋହନ ଯେ କେବଳ ସ୍ୱଲବ୍ଧ ଅର୍ଥର ସଦ୍‌ଗତି ବିଧାନ କରୁଥିଲେ ତାହା ନୁହେଁ, ଅନେକ ସମୟରେ ଆର୍ତ୍ତ ଏବଂ ରୋଗାତୁର ଜନଙ୍କ ସେବାରେ ଶରୀରକୁ ନିଯୁକ୍ତ କରୁଥିଲେ । ଏଠାରେ ଗୋଟିଏ ଦୃଷ୍ଟାନ୍ତ ପ୍ରକାଶ କଲେ ଏ ବିଷୟରେ ଯଥେଷ୍ଟ ହେବ । ମୃତ୍ୟୁର କିଛି କାଳ ପୂର୍ବେ ପୁରୀରେ ବିସୂଚିକାର ପ୍ରାଦୁର୍ଭାବ ହେବାରୁ ଅନେକ ଜଗନ୍ନାଥଯାତ୍ରୀ ଧରାଶାୟୀ ହେବାକୁ ଲାଗିଲେ । ପ୍ୟାରୀମୋହନ ଶୁଣିପାରିଲେଯେ ଜଗନ୍ନାଥ ସଡ଼କରେ ଶତ ଶତ ଯାତ୍ରୀ ଅଚିକିତ୍ସିତ ଓ ଅସହାୟ ଅବସ୍ଥାରେ ପ୍ରାଣ ହରାଉଅଛନ୍ତି । ତାହା ଶୁଣି ସେ ଅପୂର୍ବ ସାହସରେ କିଛି ସାଗୁ ଏବଂ କେତେ ଔଷଧ ଶିଶି ଘେନି କଟକରୁ ଜଗନ୍ନାଥ ସଡ଼କରେ ପୁରୀ ଅଭିମୁଖରେ ବାହାରିଲେ । ଉଦ୍ଦେଶ୍ୟ ଏହି ଥିଲା ଯେ, ସଡ଼କର ଯେଉଁଠାରେ ବିସୂଚିକାଗ୍ରସ୍ତ ଲୋକ ଦେଖିବେ, ତାକୁ ଉପଯୁକ୍ତ ଔଷଧ ସେବନ କରାଇବେ ଏବଂ ତାହାର ଆତ୍ମୀୟାଦିଙ୍କୁ ସାଗୁରେ ପଥ୍ୟ ପ୍ରସ୍ତୁତ କରିବାକୁ ଉପଦେଶ ଦେବେ । କି ହୃଦୟ ! ମନୁଷ୍ୟ ହୃଦୟରେ ସ୍ୱର୍ଗ ପାତାଳ ପ୍ରଭେଦ ଏହିପରି କାର୍ଯ୍ୟରେ ଏକା ଜଣାପଡ଼େ ।

ସ୍ୱଦେଶର ଭାଷା ଓ ସାହିତ୍ୟର ଉନ୍ନତିକଳ୍ପେ ପ୍ୟାରୀମୋହନ ବିଶେଷରେ ଯତ୍ନବାନ ଥିଲେ । ପ୍ରାୟ ଚାରିବର୍ଷକାଳ 'ଉତ୍କଳପୁତ୍ର' (ପାକ୍ଷିକ ପତ୍ର) ସମ୍ପାଦନଦ୍ୱାରା ସେ ଏହି ଉଦ୍ଦେଶ୍ୟ କିୟତ୍ ପରିମାଣରେ ସାଧନ କରିଥିଲେ । ଉତ୍କଳପୁତ୍ରର ଓଜସ୍ୱିନୀ ଲେଖା ତେତେବେଳେ ଅନେକଙ୍କୁ ଉତ୍ତେଜିତ ଏବଂ ଉତ୍ସାହିତ କରିଥିଲା । କିନ୍ତୁ ଗ୍ରାହକମାନଙ୍କର ଆଗ୍ରହ ଅଭାବରେ ତାହା ଆଉ ଅଧିକ କାଳ ଚଳି ପାରିଲା ନାହିଁ । ଏହାପରେ ଓଡ଼ିଶାର ଇତିହାସ ଲେଖା ତାହାଙ୍କର ଦ୍ୱିତୀୟ କାର୍ଯ୍ୟ । ଉତ୍କଳବନ୍ଧୁ ରେଭେନ୍‌ସା ସାହେବଙ୍କ ଅମଳରେ ୧୮୭୦ରେ ଯେତେବେଳେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକମାନ ରଚନା କରିବାପାଇଁ ସରକାରଙ୍କ ପକ୍ଷରୁ ପୁରସ୍କାର ଘୋଷିତ ହେଲା, ତେତେବେଳେ ଲେଖକମାନେ ଗୋଟିଏ ଗୋଟିଏ ବିଷୟ ଘେନି ପୁସ୍ତକ ପ୍ରଣୟନ କରିଥିଲେ । ପ୍ୟାରୀମୋହନ ଓଡ଼ିଶାର ଗୋଟିଏ ସର୍ବାଙ୍ଗ ସୁନ୍ଦର ଇତିହାସ ଲେଖିବାପାଇଁ କୃତପ୍ରତିଜ୍ଞ ହୋଇ ଅଧ୍ୟବସାୟ ସହକାରେ ତାହା ସମ୍ପାଦନ କଲେ ଏବଂ ତିନି ଶତ ଟଙ୍କା ପୁରସ୍କାର ପ୍ରାପ୍ତ ହୋଇଥିଲେ । ଐତିହାସିକ ଉପକରଣ ସଂଗ୍ରହ ଓ ସାହିତ୍ୟିକ ମର୍ଯ୍ୟାଦାର ଗଣନାରେ ଏପ୍ରକାର ପୁସ୍ତକ ଏପର୍ଯ୍ୟନ୍ତ ଓଡ଼ିଶାରେ ଆଉ ବାହାରିନାହିଁ ବୋଲିବାକୁ ହେବ । କିନ୍ତୁ ଦୁଃଖର କଥା ଯେ, ଏ ପୁସ୍ତକର ପ୍ରଚଳନ ଅଳ୍ପକାଳ ପରେ ବିଦ୍ୟାଳୟ-ମାନଙ୍କରେ ସ୍ଥଗିତ ହୋଇଗଲା । ସ୍ୱର୍ଗୀୟ କାଳୀପଦ ବନ୍ଦ୍ୟୋପାଧ୍ୟାୟ ଏହି ଇତିହାସ

ଲିଖିତ କେତେକ ପ୍ରସଙ୍ଗର ପ୍ରତିକୂଳରେ ଆପତ୍ତି ଉତ୍‌ଥାପନ କଲେ । ଉତ୍କଳ ହିତୈଷିଣୀ ପତ୍ରିକାରେ ଏହାର ଦୀର୍ଘ ପ୍ରତିବାଦମାନ ବାହାରିଲା ଏବଂ ତାହା ଏଡ଼େ ଦୀର୍ଘ ଓ ତୀବ୍ରତର ହେବାକୁ ଲାଗିଲା ଯେ ତାହାରି ଫଳରେ ଏ ପୁସ୍ତକ ଆଉ ବିଦ୍ୟାଳୟ ଛାତ୍ରମାନଙ୍କ ହସ୍ତରେ ଶୋଭା ପାଇ ପାରିଲା ନାହିଁ । ଆମ୍ଭମାନଙ୍କ ମତରେ ବର୍ତ୍ତମାନ ଏହାର ନିର୍ଦ୍ଦୋଷ ନୂତନ ସଂସ୍କରଣ ପ୍ରକାଶିତ ହେବା ବାଞ୍ଛନୀୟ । ଏହା କେବଳ ଇତିହାସରୂପେ ନୁହେଁ, ସାହିତ୍ୟିକ ସାରବାନ୍ ପୁସ୍ତକ ରୂପେ ପାଠକ ସମାଜରେ ଆଦର ଲାଭ କରି ପାରିବ ।

ପ୍ୟାରୀମୋହନଙ୍କ ପାରିବାରିକ ଜୀବନ ସୁଖମୟ ନ ଥିଲା । କନିଷ୍ଠ ଭ୍ରାତାମାନେ ତାଙ୍କ ପରି ଚରିତ୍ରବାନ୍ ନ ଥିଲେ, ବରଂ ତାଙ୍କର ବିପରୀତଧର୍ମୀ ଥିଲେ । ତେଣୁ ସୌଭାତ୍ରର ସୁଖ ଶାନ୍ତି ତାଙ୍କ ପକ୍ଷରେ ସ୍ୱପ୍ନ ଥିଲା । ତାହାଙ୍କ ହୃଦୟର ଭାବ ସହିତ ଯେ ପରିବାର ମଧ୍ୟରେ କାହାରି ମେଳ ଖାଉ ନ ଥିଲା, ଏହା ସହଜରେ ଅନୁମେୟ । ତହିଁ ଉପରେ ପୁଣି ଦ୍ୱିତୀୟ ଦୁଃଖ– ଯୌବନ ଅବସ୍ଥାରେ ସହଧର୍ମିଣୀଙ୍କର (ଯାଜପୁର ବାସିନୀ) ବିୟୋଗ । ଦ୍ୱିତୀୟ ଦାର ଗ୍ରହଣ କରିବାକୁ ସେ ଆଉ ସମ୍ମତ ନ ଥିଲେ, ଅନ୍ତରଙ୍ଗ ବନ୍ଧୁଗଣଙ୍କ ଉପଦେଶ ଓ ପ୍ରବର୍ତ୍ତନାରେ ପୁଣି ଦୀକ୍ଷିତପଡ଼ାର ଚକ୍ରବର୍ତ୍ତୀ ପରିବାରରୁ କନ୍ୟା ଗ୍ରହଣ କଲେ । ମୃତ୍ୟୁର କେତେକେ ମାସ ପୂର୍ବରୁ ଏହି ପତ୍ନୀ ଗର୍ଭରୁ ଗୋଟିଏ ସନ୍ତାନ ଜନ୍ମିଥିବାରୁ ତାହାଙ୍କର ଏକ ପ୍ରକାର କୁଳରକ୍ଷା ହୋଇଅଛି । ନୋହିଲେ ସେ ଇନ୍ଦ୍ରଦ୍ୟୁମ୍ନଙ୍କ ପରି କୁଳରେ କେହି ନ ଥିଲେ ସୁଦ୍ଧା ଏକାଡ଼େମୀ ରୂପ ବଡ଼ ଦେଉଳ ଦ୍ୱାରା ଶ୍ରଦ୍ଧାଞ୍ଜଳି ପାଇ ଆସୁଥାନ୍ତେ ।

ଅନେକ ଦୃଷ୍ଟାନ୍ତରୁ ଦେଖାଯାଏ, ମହାତ୍ମାମାନେ ନୀରବରେ ଅକସ୍ମାତ୍ ଦେହ ତ୍ୟାଗ କରନ୍ତି । ପ୍ୟାରୀମୋହନଙ୍କ ମୃତ୍ୟୁରେ ମଧ୍ୟ ତାହା ଦେଖାଯାଏ । ମୃତ୍ୟୁର କିଛିଦିନ ପୂର୍ବେ ସେ ଡମପଡ଼ାର ରାଜାଙ୍କ ସହିତ ପାରିଧିକୁ ଯାଇଥିଲେ । ଜଙ୍ଗଲ ମଧ୍ୟରେ ଗୋଟିଏ ଝର ଜଳପୂର୍ଣ୍ଣ କୁଣ୍ଡ ଦେଖି ମହୋଲ୍ଲାସରେ ସେଥିରେ ହଠାତ୍ ନିଷେଧ ସତ୍ତ୍ୱେ ଅବଗାହନ କରି ପକାଇଲେ । ତହିଁ ଆରଦିନ ଅର୍ଥାତ୍ ୧୮୮୧ ଡିସେମ୍ବର ମାସ ୨୩ ତାରିଖ ଶନିବାର ଦିନ ସେ ଘୋର ଜ୍ୱରାକ୍ରାନ୍ତ ହେଲେ ଏବଂ ସେହିଦିନ କଟକରେ ଆସି ଉପସ୍ଥିତ ହେଲେ । ଜ୍ୱର କ୍ରମଶଃ ଉଗ୍ର ମୂର୍ତ୍ତି ଧାରଣ କଲା, ଚିକିତ୍ସାର କୌଣସି ଫଳ ଦେଖାଗଲା ନାହିଁ । କଟକବସାରେ ଉପସ୍ଥିତ ହେଲାକ୍ଷଣି ସମ୍ବାଦ ପାଇ ସର୍ବପ୍ରଥମେ ଏକାତ୍ମା ମଧୁସୂଦନ ଉପସ୍ଥିତ ହୋଇଥିଲେ । ତାଙ୍କୁ ଦେଖିଲାକ୍ଷଣି "ତୁମେ ଆସିଛ ?" କହି ମସ୍ତକରେ ହସ୍ତ ବୁଲାଇ ତତ୍‌କ୍ଷଣାତ୍ ଗମ୍ଭୀର ମୂର୍ତ୍ତି ଧାରଣ କଲେ ଏବଂ ପଛେ ପଛେ କେତୋଟି ଅଶ୍ରୁବିନ୍ଦୁ ତାଙ୍କ ଚକ୍ଷୁ ଦ୍ୱୟରେ ଦେଖାଦେଲା । ମଧୁସୂଦନ ଅହର୍ନିଶ ସେହିଠାରେ ରହି ତାଙ୍କର ସେବା ଶୁଶ୍ରୁଷା କରିବାକୁ ଲାଗିଲେ । କିନ୍ତୁ ଯାହାଙ୍କର ଚିକିତ୍ସା ପ୍ରତି ନିତାନ୍ତ

ଅନାସ୍ଥା ଏବଂ ଔଷଧ ପ୍ରତି ନିଷେଧ, ତାଙ୍କ ଦେହରେ ଏସବୁ କୃତ୍ରିମତାଦ୍ୱାରା କି ଫଳ ହେବ ? ବୋଧହୁଏ, ସେ ପୁଣ୍ୟଧାମକୁ ଯିବାକୁ ପ୍ରସ୍ତୁତ ହେଉଥିବାରୁ ଆଉ ଇହଧାମରେ ଆବଦ୍ଧ ହୋଇ ରହିବାକୁ ଭଲ ପାଉ ନଥିଲେ । ମଧୁସୂଦନଙ୍କ ଅନ୍ତିମ ଜୀବନରେ ଏହି ସାଦୃଶ୍ୟ ପଶ୍ଚାତ୍ ବର୍ଣ୍ଣନ କରିବୁଁ । ବିଶିଷ୍ଟ ପୁରୁଷମାନଙ୍କର ଏହି ବିଶେଷତ୍ୱ ସାଧାରଣ ଜନର ଦୁର୍ବୋଧ । ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ପ୍ୟାରୀମୋହନ ସମସ୍ତ ବନ୍ଧୁଙ୍କ ସହିତ କଥାବାର୍ତ୍ତା କରୁଥିଲେ, ମଧ୍ୟେ ମଧ୍ୟେ କାହାର ମସ୍ତକରେ ହସ୍ତ ଅର୍ପଣ—କାହାର ବା ଦୁଇ ହସ୍ତକୁ ଅଞ୍ଜଳି ପ୍ରାୟ ଆପଣା ହସ୍ତରେ ଧରି କିଛିକ୍ଷଣ ନୀରବ ଅବସ୍ଥାନ—କାହାକୁ ଧରି ବା ଊର୍ଦ୍ଧ୍ୱ ମୁଖରେ ପ୍ରାର୍ଥନା—ବନ୍ଧୁମାନଙ୍କ ହୃଦୟକୁ ଅଧିକ ବିଚଳିତ କରି ଦେଉଥିଲା । ମୃତ୍ୟୁର ଅବ୍ୟବହିତ ପୂର୍ବ କ୍ଷଣରେ ତାଙ୍କ ମୁଖରେ ଅପୂର୍ବ ଜ୍ୟୋତି ଦେଖାଗଲା ଏବଂ ତତ୍ସହ ସେ ବୈଦ୍ୟୁତିକ ଆଲୋକ ପରି ହଠାତ୍ ଅନ୍ଧକାର କରି ଚାଲିଗଲେ । ଡିସେମ୍ବର ୨୮ ତାରିଖ ଗୁରୁବାର ପୂର୍ବାହ୍ନ ୯ ଘଟିକା ସମୟରେ ୩୦ ବର୍ଷ ବୟସରେ ତାହାଙ୍କର ଏହି ଆକସ୍ମିକ ମୃତ୍ୟୁ ସମ୍ବାଦ କଟକ ନଗରରେ ପ୍ରଚାରିତ ହେଲା । ଏ ଘଟନା ଯେତେବେଳେ ମଧୁସୂଦନ ବର୍ଣ୍ଣନ କରନ୍ତି, ତେତେବେଳେ ତାହାଙ୍କ ବେନି ଚକ୍ଷୁରୁ କିପରି ଅବିରଳ ଅଶ୍ରୁଜଳ ଝରିପଡ଼େ, ତାହା ଅନେକ ବନ୍ଧୁ ପ୍ରତ୍ୟକ୍ଷ କରିଥିବେ । ଶ୍ରାଦ୍ଧ ବା ଶୋକ ସଭାରେ ମୃତ ବନ୍ଧୁଙ୍କର ଗୁଣ ସ୍ମରଣ କରୁ କରୁ ସେ କୋମଳପ୍ରାଣ ମହାତ୍ମା କିପରି ଅଶ୍ରୁବାରି ଝରାଇ ଦିଅନ୍ତି, ତାହା ମଧ ଅନେକେ ଦେଖିଥିବେ । ଶୋକ କିପରି କରିବାକୁ ହୁଏ, ତାହା ସେହିପରି ଅନୁଭବୀ ଜାଣନ୍ତି । ଆମ୍ଭେମାନେ ଗୋଟିଏ ଘଟନା ଏଠାରେ ମନେ ପଡ଼ିବାରୁ ଦୃଷ୍ଟାନ୍ତସ୍ୱରୂପ ଉଲ୍ଲେଖ କରୁଅଛୁଁ । ୧୯୦୮ର ଚୈତ୍ର ପୂର୍ଣ୍ଣିମାର ନୀରବ ନିଶୀଥରେ ଯେତେବେଳେ ନିର୍ଜନତାପ୍ରିୟ କବିବର ରାଧାନାଥ ନୀରବରେ ଦେହତ୍ୟାଗ କଲେ, ତେତେବେଳେ ତାଙ୍କର ପରମ ଭକ୍ତ ବନ୍ଧୁ ମଧୁସୂଦନ କାର୍ଯ୍ୟୋପଲକ୍ଷରେ ପୁରୀଠାରେ ଥିଲେ । ପରଦିନ ଉତ୍କଳ ସମ୍ମିଳନୀର ପଞ୍ଚମ ଅଧିବେଶନ ପୁରୀରେ ହେବ । ସେଦିନ (ଗୁରୁବାର) ପୂର୍ବାହ୍ନ ୯ ଘଟିକା ସମୟରେ ଯେତେବେଳେ ସେ ଏହି ଦୀନ ଲେଖକଠାରୁ ଏ ଦାରୁଣ ସମ୍ବାଦ ପାଇଲେ, ସେ ଗୋଟିଏ ପ୍ରକୋଷ୍ଠରେ ନୀରବରେ ଦ୍ୱାର ବନ୍ଦକରି ବସି ରହିଲେ । ସମ୍ମିଳନୀ ମଣ୍ଡପରେ ସେଦିନ ଅନେକେ ତାଙ୍କର ଉପସ୍ଥିତି ପ୍ରତୀକ୍ଷା କରୁଥିଲେ, କିନ୍ତୁ ସନ୍ଧ୍ୟା ପର୍ଯ୍ୟନ୍ତ ଜଣାଯାଇଅଛି ଯେ, ସେ ଉକ୍ତ ପ୍ରକୋଷ୍ଠରୁ ବାହାରକୁ କେଉଁଠେ ଯାଇ ନାହାନ୍ତି । ସେହି ସମୟ ମଧ୍ୟରେ ସେ କୋମଳ ପ୍ରାଣରେ କଣ ଅନୁଭବ କରୁଥିଲେ, ତାହା ସେହି ଜାଣନ୍ତି । ରାଧାନାଥ ତାଙ୍କର 'କୈଶୋର ଗୁରୁ' 'ଜୀବନର ପରମହିତୈଷୀ' 'ସାହିତ୍ୟ ସେବାର ପଥପ୍ରଦର୍ଶକ' ଥିଲେ । ତେଣୁ ସେ ସର୍ବଦା

ତାଙ୍କୁ ତାହାଙ୍କ ହୃଦୟର ଉଚ୍ଚ ବେଦୀରେ ବସାଇଥିଲେ । ଇଚ୍ଛା ଥିଲା, ତାଙ୍କର ଖଣ୍ଡିଏ ସର୍ବାଙ୍ଗ ସୁନ୍ଦର ଜୀବନ ଚରିତ ଲେଖି ଆତ୍ମାର ଶାନ୍ତି ବିଧାନ କରିଥାଆନ୍ତେ; କିନ୍ତୁ ଆମ୍ଭମାନଙ୍କ ଭାଗ୍ୟରେ ସେପରି ଗ୍ରନ୍ଥ ପାଇବା ଘଟିଲା ନାହିଁ । ମରଣାନ୍ତେ ଏହି ଦୁଇ ବିଶିଷ୍ଟ ଆତ୍ମା ସହିତ ତାହାଙ୍କ ପୁଣ୍ୟାତ୍ମାର କିପରି ଯୋଗ ଥିଲା, ତାହା ଆମ୍ଭେମାନେ ଅନ୍ତିମ ଜୀବନର ଘଟନାରେ ପାଠକମାନଙ୍କୁ ଦେଖାଇ ଦେବୁଁ । ଏ ଦୁହିଁଙ୍କ ବ୍ୟତୀତ ଅନ୍ୟାନ୍ୟ ଜ୍ୟେଷ୍ଠ ବା ଗୁରୁଜନଙ୍କ ପ୍ରତି ତାହାଙ୍କର ଯେପରି ଭକ୍ତି ଦେଖାଯାଏ, ତାହା ଅନନ୍ୟସାଧାରଣ । ନମସ୍ୟ ବ୍ୟକ୍ତିଙ୍କ ନିକଟରେ ଉପସ୍ଥିତ ହେଲେ ସେ କେବଳ ଭକ୍ତିପୂର୍ଣ୍ଣ ପ୍ରଣାମ କରି କ୍ଷାନ୍ତ ହେଉ ନଥିଲେ, ତାଙ୍କର ପଦଧୂଳି ଗ୍ରହଣ ନ କରିବା ଯାଏ ତାଙ୍କର ତୃପ୍ତି ହେଉ ନଥିଲା । ଅନ୍ୟ ନିକଟରେ ଉପସ୍ଥିତ ହେଲେ ସେ ନିଜ ଆତ୍ମାକୁ ଅତି ତୁଚ୍ଛ ଓ ଅକିଞ୍ଚିତ୍କର ପରି ପ୍ରକଟିତ କରନ୍ତି । ଏ ପ୍ରକାର ବିନୟମାହାତ୍ମ୍ୟ ସବୁ ପାତ୍ରରେ ସୁଲଭ ନୁହେ ।

## ୧୦

ମଧୁସୂଦନଙ୍କର ମାତୃଭକ୍ତି ଅସାଧାରଣ ଥିଲା । ସେ ବିଦ୍ୟାସାଗରଙ୍କ ପରି ଜଣେ ମାତୃଭକ୍ତ ଥିଲେ, କିନ୍ତୁ ତାଙ୍କ ତୁଳନାରେ କଣାମାତ୍ର ମାତୃସ୍ନେହସୁଧା ଭୋଗ କରି ନାହାନ୍ତି । ପାଞ୍ଚ ବର୍ଷ ବୟସରୁ ସେ ଜନନୀଙ୍କୁ ହରାଇ ହାହାକାର କରି ଆସୁଥିଲେ । ଏହି ଶୈଶବରେ ସେ ଯେଉଁ ମାତୃସ୍ନେହ ଲାଭ କରିଥିଲେ, ତାହା ଅନ୍ୟ ପକ୍ଷରେ ବିସ୍ମୃତି ଗର୍ଭଗତ ହେବା ସ୍ୱାଭାବିକ ହେଲେହେଁ ମଧୁସୂଦନଙ୍କଠାରେ ଅମରସ୍ମୃତିରେ ପରିଣତ ହୋଇଥିବାର ଦେଖା ଯାଇଅଛି । ସେ ଆଜୀବନ ଜନନୀଙ୍କୁ ସ୍ମରଣ କରୁଥିଲେ । ପଠଦ୍ଦଶାରେ ସହାଧ୍ୟାୟୀମାନେ ତାହାଙ୍କୁ ମାତୃସ୍ମରଣରେ ସଲୋତକ ହେଉଥିବାର ଦେଖିଅଛନ୍ତି । ପ୍ରତି ବର୍ଷ ମାତାଙ୍କ ଶ୍ରାଦ୍ଧ ଦିବସରେ ସେ ସ୍ନେହମୟୀ ଜନନୀଙ୍କର ଚରଣ ଉଦ୍ଦେଶ୍ୟରେ ଅଶ୍ରୁଜଳାଞ୍ଜଳି ପ୍ରଦାନ କରୁଥିଲେ । କେବେ କେବେ କାହାରିକୁ ଶୈଶବର କଥା କହୁ କହୁ ଜନନୀଙ୍କ କଥା ମନେ ପଡ଼ିଲାକ୍ଷଣି ସେ ବାଷ୍ପରୁଦ୍ଧ କଣ୍ଠରେ କଥଞ୍ଚିତ୍ ଭାବ ପ୍ରକାଶ କରି ପାରୁଥିଲେ । ଦେଖୁ ଦେଖୁ ତାହାଙ୍କର ସଜଳ ନୟନଯୁଗଳରୁ ବିନ୍ଦୁ ବିନ୍ଦୁ ଅଶ୍ରୁ ଝରି ପଡୁଥିଲା । ଜନନୀବତ୍ସଳ ସନ୍ତାନ ସେହି ମାତୃସ୍ନେହସ୍ମୃତିକୁ କିପରି ଅମୂଲ୍ୟ ସମ୍ପଦ ରୂପେ ହୃଦୟରେ ସଞ୍ଚୟ କରିଥିଲେ, ତାହା ତତ୍କୃତ ଛାନ୍ଦମାଳାର ''ମୋ-ଜନନୀ'' ଶୀର୍ଷକ କବିତାର ନିମ୍ନୋଦ୍ଧୃତ କେତେକ ପଙ୍‌କ୍ତି ପାଠ କଲେ ଉତ୍ତମରୂପେ ହୃଦୟଙ୍ଗମ ହେବ ।

ନୟନେ ନାଚଇ ଆଜି ସେ ସୁନ୍ଦର ମୁଖ ହେ
ପରମ ସୁନ୍ଦର ।
ଆହା କିବା ସ୍ନେହଭରେ ହସି ହସି କି ଆଦରେ
ମୋ ଆଡ଼କୁ ବଢ଼ାନ୍ତି ମା କୋମଳ ଶ୍ରୀକର ହେ
କୋମଳ ଶ୍ରୀକର ।
ଅତି ମଳିନ ମୋ ଅଙ୍ଗ ଧୂଳିଧୂସରିତ ହେ
ପୋଛିଣ ଶ୍ରୀକରେ ।
ମା' ମୋର ଆନନ୍ଦମୟୀ ମଧୁର ବଚନ କହି
ଆନନ୍ଦେ ଧରନ୍ତି ମୋତେ ଅମୃତ ବକ୍ଷରେ ହେ
ଅମୃତ ବକ୍ଷରେ ।
ମାତାର ଅମୃତ ବକ୍ଷ ସ୍ୱର୍ଗ ସୁଖ ଜିଣି ହେ
ଅତି ସୁଖମୟ,
କାହିଁ ପଟାନ୍ତର ତାର ରାଜ୍ୟ ବିଭବ କି ଛାର,
କାହିଁ ଆଉ ସନ୍ତାନର ସେପରି ଆଶ୍ରୟ ହେ
ସେପରି ଆଶ୍ରୟ ।
ପାଞ୍ଚ ବର୍ଷ ବିନୁ ମୁହିଁ ଅଟଇ ଅନାଥ ହେ
ହରାଇ ଜନନୀ,
କିନ୍ତୁ ଆହା ବିଶ୍ୱପତି ଦୟା ବହି ଦୁଃଖୀ ପ୍ରତି
ଦେଇଛନ୍ତି ମୋର ପ୍ରାଣେ ମହା ସ୍ୱର୍ଣ ମଣି ହେ
ମହା ସ୍ୱର୍ଣ ମଣି ।
ବିଶ୍ୱାସ ପରଶମଣି ହୃଦୟେ ମୁଁ ଧରି ହେ
ଦେଖଇଁ ପ୍ରତ୍ୟକ୍ଷେ,
ଦିବା ନିଶି ଆକାଶରେ ଜଳେ ସ୍ଥଳେ ଚରାଚରେ
ମୋହରି ଜନନୀ ମୂର୍ତ୍ତି ଧରି ମୋତେ ବକ୍ଷେ ହେ
ଧରି ମୋତେ ବକ୍ଷେ ।

ଯଥାର୍ଥରେ ସେ ସର୍ବତ୍ର ଚିନ୍ମୟୀ ଜନନୀଙ୍କ ଅଙ୍କରେ ସର୍ବଦା ଆପଣାକୁ ଆସୀନ ଦେଖୁଥିଲେ ଏବଂ ଅନ୍ତିମ ମୁହୂର୍ତ୍ତରେ ତାଙ୍କର ସେହି ଚିନ୍ମୟୀ ମା ଯେହ୍ନେ 'ହସି ହସି ସ୍ନେହଭରେ' 'କୋମଳ ଶ୍ରୀକର' ବଢ଼ାଇ ଘେନିଗଲେ । ମଧୁସୂଦନ ମା ନାମର ବଡ଼ ପ୍ରିୟ ଥିଲେ । ମା ନାମ ଉଚ୍ଚାରଣ କଲାବେଳେ ତାହାଙ୍କ ହୃଦୟରେ କି ଏକ ମହାଭାବ ଓ ଅପୂର୍ବ ଶାନ୍ତି ଯେହ୍ନେ ଜାଗରିତ ହୁଏ । ରୋଗଯନ୍ତ୍ରଣାରେ ଛଟପଟ ହେଉଥିବାବେଳେ ସେ ମା ନାମ କେତେକଥର ଉଚ୍ଚାରଣ କଲେ ଶାନ୍ତି ଅନୁଭବ କରୁଥିଲେ । ଭଗବାନଙ୍କୁ ସେ ଜଗଜ୍ଜନନୀ ବା ମା ନାମରେ ଡାକିବାକୁ ଅଧିକ ଭଲ ପାଉଥିଲେ । ଯେଉଁ ଭକ୍ତ ବା ସାଧକ ଦୟାମୟ ଈଶ୍ୱରଙ୍କୁ ଯେତିକି ଅଧିକ ଚିହ୍ନି ପାରିଅଛନ୍ତି ବା ତାଙ୍କର ଦୟା, ସ୍ନେହ ଓ କ୍ଷମା ଯେତେ ଅଧିକ ଅନୁଭବ କରିଅଛନ୍ତି, ସେ ତେତିକି ମାତୃରୂପିଣୀ ବୋଲି ତାଙ୍କୁ ଜାଣି ପାରିଅଛନ୍ତି । ନବଯୁଗର ଧର୍ମପ୍ରବର୍ତ୍ତକ ଶ୍ରୀମତ୍ ରାମକୃଷ୍ଣ ପରମହଂସଙ୍କ ଜୀବନରେ ଏହି ଭାବ ଅତି ଉଜ୍ଜ୍ୱଳ ଭାବରେ ଦେଖା ଯାଇଅଛି । କି ଜ୍ୟେଷ୍ଠ କି କନିଷ୍ଠ ଉଭୟ ପ୍ରିୟ ସ୍ତ୍ରୀଜନଙ୍କୁ ମା ବୋଲି ସମ୍ବୋଧନ କରି ସେ ଅତୁଲ୍ୟ ଗଭୀର ସ୍ନେହ ଭକ୍ତି ପ୍ରଦର୍ଶନ କରୁଥିଲେ । ପୁରୁଷମାନଙ୍କୁ ସେହିପରି ବାବା, ପ୍ରାଣାଧିକ, ପ୍ରାଣର ଭାଇ, ପ୍ରାଣର ସଙ୍ଗାଳି ମୋର, ପରମପ୍ରେମାସ୍ପଦ, ଇତ୍ୟାଦି ପ୍ରକାର ସମ୍ବୋଧନ କରିବାଦ୍ୱାରା ତାହାଙ୍କ ହୃଦୟର ଗଭୀର ସ୍ନେହର ପରିଚୟ ମିଳେ । ସେ ବରଂ ଗୁରୁଜନଙ୍କ ପ୍ରତି ହୃଦୟାରାଧ୍ୟ, ପ୍ରାଣର ଦେବ, ପୂଜ୍ୟପାଦ, ଦେବାତ୍ମନ୍, ଇତ୍ୟାଦି ପ୍ରକାର ଶବ୍ଦ ଯଥେଷ୍ଟ ପ୍ରୟୋଗ କରୁଥିବେ, କିନ୍ତୁ ତାଙ୍କ ପ୍ରତି କେହି 'ପୂଜ୍ୟପାଦ' ପ୍ରଭୃତି ଶବ୍ଦ ପ୍ରୟୋଗ କଲେ ସେ ପତ୍ରରେ ଏହିପରି ନିଷେଧ କରିଥାନ୍ତି, ''ମୋ ନିକଟକୁ 'ପୂଜ୍ୟପାଦ' ପ୍ରଭୃତି ଶବ୍ଦ ପ୍ରୟୋଗ କରି ଲେଖିବ ନାହିଁ । ବୟସରେ ବଡ଼ଭାଇର ଯାହା ପ୍ରାପ୍ୟ, ସେତିକି ମାତ୍ର ମୋତେ ଦେବ ।'' ବନ୍ଧୁମାନଙ୍କ ପ୍ରତି ତାଙ୍କର ଅତୁଲ୍ୟ ସ୍ନେହ ଏପରି ଗାଢ଼ଭାବ ଧାରଣ କରିଥାଏ ଯେ, ମୃତ୍ୟୁ ବିନା ସେ ସ୍ନେହଗ୍ରନ୍ଥିକି ଆଉ କେହି ଛେଦନ କରି ପାରିବ ନାହିଁ ଜଣାଯାଏ । ଆତ୍ମୀୟ ବନ୍ଧୁଙ୍କ ଆପଦ ବିପଦରେ ମଧୁସୂଦନ ଘନ ଘନ ନିକଟରେ ଉପସ୍ଥିତ ହୋଇ ସାହାଯ୍ୟ କରୁଥିଲେ ଏବଂ ଆଶ୍ୱାସନା ପ୍ରଦାନ କରୁଥିଲେ । ଆତ୍ମୀୟ ସ୍ୱଜନ ବିୟୋଗରେ ସେ ବନ୍ଧୁମାନଙ୍କୁ ଯେପରି ଅମୃତ ସାନ୍ତ୍ୱନା ପ୍ରଦାନ କରିଅଛନ୍ତି, ତାହା ଲୋକ ସମାଜରେ ଦୁର୍ଲଭ, ଅନେକ ଶୋକଦୁଃଖ ପ୍ରପୀଡ଼ିତ ବନ୍ଧୁଙ୍କ ହୃଦୟରେ ସେ ସାନ୍ତ୍ୱନା ବାକ୍ୟ ସୁଚିର ଜାଗରୁକ ଥିବ । ଏଠାରେ ସେପରି ଶିକ୍ଷାପ୍ରଦ ସାନ୍ତ୍ୱନାର ଗୋଟିଏ ଦୃଷ୍ଟାନ୍ତ ଦେବୁଁ । ଉତ୍କଳ-ସାହିତ୍ୟ ସମ୍ପାଦକ ବିଶ୍ୱନାଥ ବାବୁ ଯେତେବେଳେ ତାଙ୍କର ପ୍ରାଣପ୍ରିୟ କନିଷ୍ଠ ଭୋଳାନାଥ ଓ ଲୋକନାଥଙ୍କୁ ଅକାଳରେ ହରାଇ ଶୋକଦଗ୍ଧ ହୋଇଥିଲେ, ତେତେବେଳେ

ମଧୁସୂଦନ ନିମ୍ନୋକ୍ତ ପ୍ରକାର ସାନ୍ତ୍ୱନାମୃତ ପ୍ରଦାନଦ୍ୱାରା ତାଙ୍କ ହୃଦୟକୁ ଶୀତଳ କରିଥିଲେ ।

ଓଁ

ପରତ୍ର ଗୃହମସ୍ମାକଂ । ରଘୁନାଥପୁର

୭ । ୮ । ୧୯

ପ୍ରାଣର ବିଶ୍ୱନାଥ, କି ସାନ୍ତ୍ୱନା ଦେବି ! ଯାହାଙ୍କର ଧନ ସେହି ଘେନିଗଲେ । ସେହି ଏକା ସାନ୍ତ୍ୱନା ଦେବେ । ତୁମର ପ୍ରାଣର ଭୋଳାନାଥ, ଲୋକନାଥ ତୁମର ପ୍ରାଣନାଥଙ୍କ କୋଳରେ ସ୍ୱର୍ଗର ଅମୃତ ପାନ କରୁଅଛନ୍ତି । ସେମାନେ ଏ ଉତ୍କଳଭୂମିରେ କି ଅପୂର୍ବ ସତ୍ୟନିଷ୍ଠତା ଦେଖାଇ ଗଲେ ! ଧନ୍ୟ ସେମାନଙ୍କର ଜୀବନ !

ତୁମେ ସେମାନଙ୍କଠାରୁ ଅନେକ ଆଶା କରିଥିଲ, ସେ ଆଶା ପୂର୍ଣ୍ଣ ହେଲା ନାହିଁ । ତୁମର ଶୋକ ଅନ୍ତର୍ଯ୍ୟାମୀ ବିନା ଆଉ କିଏ ବୁଝିବ ? ଆହା, ମା ତୁମ ହୃଦୟରେ ସାନ୍ତ୍ୱନାମୃତ ଢାଳି ଦିଅନ୍ତୁ । ମା ତୁମକୁ କୋଳରେ ବସାଇ ତୁମର ମୁଖ ଚୁମ୍ବନ କରି ତୁମର ଭଗ୍ନହୃଦୟକୁ ଆଲିଙ୍ଗନ କରନ୍ତୁ । ମାଙ୍କୁ ସର୍ବଦା ଡାକ । ତାଙ୍କ ବିନା ଆଉ କିଏ ଅଛି ?

ପ୍ରାଣର ବିଶ୍ୱନାଥ, ଅଧୀର ହୁଅ ନାହିଁ । ତୁମର ପିତାମାତାଙ୍କୁ ତୁମ ବିନା ଆଉ କିଏ ସାନ୍ତ୍ୱନା ଦେବ ? ସେମାନଙ୍କ ଶୋକ ଯେ ଭାଳି ସୁଦ୍ଧା ହେଉନାହିଁ । ଭାଇ, ତୁମର ଗୁରୁ କର୍ତ୍ତବ୍ୟଭାର ସ୍ମରଣ କରି ପ୍ରଭୁଙ୍କ ଉପରେ ନିର୍ଭର କରି ସମ୍ମୁଖବର୍ତ୍ତୀ କର୍ତ୍ତବ୍ୟ ସାଧନ କର ।

Bibleରେ Job ଚରିତ ପଢ଼ିଅଛ; ତୁମ ଜୀବନରେ ପ୍ରଭୁ କି ସେହିପରି ଭାଗବତ ଅଙ୍କିତ କରୁଅଛନ୍ତି ?

ମୁଁ ତୁମ ଗୃହଠାକୁ ଖଣ୍ଡେ ପତ୍ର ଲେଖୁଅଛି ।

ତୁମର ଜଣେ ଅଯୋଗ୍ୟ ଭାଇ

ମଧୁସୂଦନ ।

ମଧୁସୂଦନଙ୍କର ପିତୃଭକ୍ତି ଅତୀବ ପ୍ରଶଂସନୀୟ ଥିଲା । ସେ ସମାଜ-ଧର୍ମ ତ୍ୟାଗଦ୍ୱାରା ପିତାଙ୍କଠାରୁ ଅନ୍ତରିତ ହୋଇଥିଲେ ହେଁ ତାଙ୍କୁ ସନ୍ତୁଷ୍ଟ ରଖିବାପାଇଁ ସର୍ବଦା ଯତ୍ନଶୀଳ ଥିଲେ । ମଧ୍ୟେ ମଧ୍ୟେ ତାଙ୍କର ପିତା ପୁରୀଠାରୁ ଯେତେବେଳେ ତାଙ୍କୁ ଦେଖିବାକୁ ଆସୁଥିଲେ, ତେତେବେଳେ ସୁପୁତ୍ର ମଧୁସୂଦନ ପାଦତଳରେ ଭକ୍ତିତଦ୍‌ଗତ ଚିତ୍ତରେ

ପ୍ରଣିପାତ କରି ଚରଣଧୂଳି ଗ୍ରହଣପୂର୍ବକ ଚରଣସେବକ ପ୍ରାୟ ତଳେ ବସୁଥିଲେ । ନୀରବରେ ପିତୃପଦ ସେବା କରିବାକୁ ସେ ଅତି ପବିତ୍ର କାର୍ଯ୍ୟ ମଣୁଥିଲେ । ଦିନେ ପିତାଙ୍କର ପାଦରେ କିଛି ବେଦନା ହୋଇଥିବାର ଜାଣି ବହୁ ଭୃତ୍ୟର ପ୍ରଭୁ ମଧୁବାବୁ ନୀରବରେ କିଞ୍ଚିତ୍ ତୈଳ ସହ ଆସି ପଦତଳେ ବସି ବେଦନା ସ୍ଥାନରେ ଅତି କୋମଳ ଭାବରେ ତୈଳ ମର୍ଦନ କରିବାକୁ ଲାଗିଲେ । ହସ୍ତସ୍ପର୍ଶରେ ସ୍ନେହମୟ ପିତା ଦେଖିଲେ ଯେ, ପଦତଳେ ତାଙ୍କର ସୁପୁତ୍ର ସମାସୀନ ହୋଇ ପ୍ରସନ୍ନ ମନରେ ସେବା କରୁଅଛନ୍ତି । କେତେଜଣ ପୁତ୍ର ଏପରି ପବିତ୍ର ପିତୃପଦ ସେବା କରି ଧନ୍ୟ ହୋଇଅଛନ୍ତି ! ତାହାଙ୍କ ପ୍ରାଣତ୍ୟାଗର ପ୍ରାୟ ତିନି ବର୍ଷ ପୂର୍ବ ପର୍ଯ୍ୟନ୍ତ ପିତା ଜୀବିତ ଥିଲେ । ମୃତ୍ୟୁ ପୂର୍ବରେ ସମ୍ବାଦ ପାଇ ସେ ପତ୍ନୀ ଓ କନ୍ୟାଙ୍କୁ ଘେନି ପୁରୀଠାରେ ଉପସ୍ଥିତ ହେଲେ ଏବଂ ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ସେବା କରିଥିଲେ । ତଥାପି ସେ ପିତାଙ୍କର କିଛିମାତ୍ର ଆକାଂକ୍ଷା ପୂରଣ କରିପାରିଲେ ନାହିଁ ବୋଲି ପରେ ବହୁ ଅନୁତାପ କରିଥିଲେ । ତେତେବେଳେ ମଧୁସୂଦନ ତାଙ୍କର ପ୍ରାଣାଧିକ କନିଷ୍ଠ ସ୍ଥାନାନ୍ତରସ୍ଥିତ ଶ୍ରୀଯୁକ୍ତ ଜଗନ୍ନାଥ ରାଓଙ୍କ ନିକଟକୁ ଏ ସମ୍ବନ୍ଧରେ ଯେଉଁସବୁ ପତ୍ର ଲେଖିଅଛନ୍ତି, ସେଥିର କେତେକାଂଶ ପାଠ କଲେ ପାଠକମାନେ ତାଙ୍କ ହୃଦୟର ଭାବ ଅନୁମାନ କରି ପାରିବେ ।

" xxx ସ୍ଥିରଭାବରେ ଉର୍ଦ୍ଧ୍ୱ ନେତ୍ର ହୋଇ ସମାଧିସ୍ଥଭାବରେ ପ୍ରସନ୍ନବଦନରେ ମୋ ସଙ୍ଗରେ ଏବଂ ଏକାକୀ ଅନବରତ ହରିନାମ କରିବାକୁ ଲାଗିଲେ । କେତେବେଳେ ବା ଗୀତାର ଶ୍ଳୋକ ଆବୃତ୍ତି କରୁଥିଲେ । ଏହିପରି ପ୍ରାଣତ୍ୟାଗର ୫।୬ ମିନିଟ୍ ପୂର୍ବ ପର୍ଯ୍ୟନ୍ତ ଆନନ୍ଦରେ ହରିନାମ କରି ପ୍ରାୟ ସାଢ଼େ ଦଶଟା ସମୟରେ ସଂସାରସମୁଦ୍ର କିପରି ସହଜରେ ସୁନ୍ଦରରୂପେ ପାର ହୋଇଗଲେ ! ସେ ଆନନ୍ଦ ଜ୍ୟୋତିପୂର୍ଣ୍ଣ ଚକ୍ଷୁ ମୁଦ୍ରିତ ହୋଇଗଲା, କେବଳ ଓଷ୍ଠ ଦିଓଟି ଯେହ୍ନେ ଆହୁରି ହରିନାମ କରିବା ପାଇଁ ମେଲା ରହିଲା । ବାବା, ଏହିପରି ଆମର ପିତୃଦେବ ଆନନ୍ଦରେ ଚାଲିଗଲେ, ଆମେମାନେ ଆଉ କାହିଁକି ଅସାର ଶୋକ କରିବା ? ପ୍ରଭୁଙ୍କ ଇଚ୍ଛା ପୂର୍ଣ୍ଣ ହେଲା, ବାବା ମୋକ୍ଷଧାମ ହରି ପାଦପଦ୍ମ ପାଇଲେ । ଆଉ ଅଧିକ କ'ଣ ଲେଖିବି, ଚକ୍ଷୁ ଅଶ୍ରୁପୂର୍ଣ୍ଣ, ହୃଦୟ ବ୍ୟାକୁଳ, ପୁଣି ସଂସାରର କର୍ମଜାଲରେ ଜୀବନ ବଦ୍ଧ ।

ବାବା, ତୁ ତ ସତ୍‌ପୁତ୍ର ହୋଇ ତାଙ୍କର କେତେ ଆକାଂକ୍ଷା ପୂର୍ଣ୍ଣ କରିଅଛୁ; ମୁଁ ଯେ କିଛି କରିନାହିଁ । ସେଥିପାଇଁ ହୃଦୟ କିପରି ବିକଳ ହେଉଅଛି, ତାହା କିପରି ଜଣାଇବି ! ତେବେ ଏତିକି ମାତ୍ର ଭରସା ଯେ ସେହି କ୍ଷମାପୂର୍ଣ୍ଣ ସନ୍ତାନବତ୍ସଳ ପିତା ମୋର ଶତ ଶତ ଅପରାଧକୁ କ୍ଷମା କରିଅଛନ୍ତି । x x" (୨୨।୫।୧୯୦୯)

''ବାବା,—ଏ ସମୟରେ ପ୍ରାଣ ଅତ୍ୟନ୍ତ ଆକୁଳ ହେଉଅଛି ଓ ତୋତେ ବକ୍ଷରେ ଧରି ବାବା ବୋଲି ଡାକିବାପାଇଁ କ୍ରନ୍ଦନ କରୁଅଛି । ତୁ ବାବାଙ୍କ ଆକାଂକ୍ଷା ପୂର୍ଣ୍ଣ କରିବାପାଇଁ ଓ ତାଙ୍କ ଦୁଃଖ ଦୂର କରିବାପାଇଁ ଯାହା ଯାହା କରିଅଛୁ, ତାହା ସ୍ମରଣ କରି ମୋ ପ୍ରାଣ ତୋତେ ବାରମ୍ବାର ଶତ ସହସ୍ର ବାର ଧନ୍ୟ ଧନ୍ୟ କହୁଅଛି । ତୁ ବାବାଙ୍କର ଶେଷକାଳରେ ଆହା କିପରି ସୁପୁତ୍ରର କାର୍ଯ୍ୟ କରିଅଛୁ ।'' (୨୩ । ୫ । ୦୯)

''ବାବା, ୪ ତାରିଖର ପତ୍ର ୬ ଦିନ ପରେ ପରିଦିନ ପାଇଲି । ଅଶ୍ରୁପୂର୍ଣ୍ଣ ନୟନରେ ତାହା ପଢ଼ିଲି ଏବଂ ତେତେବେଳେ ଅଶ୍ରୁପୂର୍ଣ୍ଣନୟନରେ ଏ ପତ୍ର ଲେଖୁଅଛି । ଆମ୍ଭମାନଙ୍କର ଯାହା କିଛି ଉନ୍ନତି ହୋଇଅଛି, ତାହା କେବଳ ପିତୃଦେବଙ୍କ ଆଶୀର୍ବାଦରୁ ଘଟିଅଛି । ସଂସାରରେ କେଉଁ ପିତାଙ୍କର ସ୍ନେହ ବାବାଙ୍କର ସ୍ନେହ ଅପେକ୍ଷା ଅଧିକ ମଙ୍ଗଳକର ଓ ଆଶୀର୍ବାଦମୟ ? ହାୟ ! ହାୟ ! ସେ ସଂସାରରେ ଥିଲାବେଳେ ତାଙ୍କର ମୂଲ୍ୟ ବୁଝିଲି ନାହିଁ ! ଏବେ ଏତିକି ମାତ୍ର ସାନ୍ତ୍ୱନା ଯେ ତାଙ୍କର ପରଲୋକଗମନ ଆମ୍ଭମାନଙ୍କଠାରୁ ତାହାଙ୍କୁ ଦୂରବର୍ତ୍ତୀ କରି ଦେଇ ନାହିଁ । ଏବେ ପ୍ରଭୁଙ୍କ କୃପାରେ ବାବାଙ୍କୁ ପ୍ରାଣର ନିକଟତର ବୋଲି ଅନୁଭବ କରୁଅଛୁଁ । ପରମ ପିତାଙ୍କର ପ୍ରତିନିଧି ସେହି ପରମ ପିତାଙ୍କ କ୍ରୋଡ଼ରେ ଥାଇ ଆହା ଆମ୍ଭମାନଙ୍କ ପ୍ରତି କି ପୁଣ୍ୟ ସ୍ନେହାମୃତମୟ ନୟନରେ ଅନାଇଅଛନ୍ତି । ସେହି ହୃଦୟାରାଧ ପ୍ରାଣର ବାବା ଆମ୍ଭମାନଙ୍କ ପ୍ରାଣ ସଙ୍ଗରେ ଅଛନ୍ତି । ସେହି ପାଦପଦ୍ମରେ ଆମ୍ଭମାନଙ୍କର ମତି ସ୍ଥିର ରହୁ ।'' (୧୨।୬।୦୯)

ମଧୁସୂଦନଙ୍କ ଭ୍ରାତୃସ୍ନେହ ଏକ ଦିବ୍ୟାନନ୍ଦ ରସରେ ପୂର୍ଣ୍ଣ ଥିଲା । ଏପରି ସୌଭ୍ରାତ୍ର ଆଜିକାଲି ସମାଜରେ କ୍ୱଚିତ୍ ଦେଖାଯାଏ । ଅତି ଶୈଶବରେ ଜନନୀଙ୍କ ବିୟୋଗ ଦିନଠାରୁ ତାଙ୍କର ଏକମାତ୍ର କନିଷ୍ଠ ସହୋଦର ଜଗନ୍ନାଥଙ୍କ ସହିତ ଏକତ୍ର ଭୋଜନ ଶୟନ ଓ ଅଧ୍ୟୟନ କରି ବଢ଼ି ଆସିଥିଲେ । ତେତେବେଳେ ମାତୃହୀନ କନିଷ୍ଠ ପ୍ରତି ତାଙ୍କର ସ୍ନେହ ମାତୃସ୍ନେହ ଅପେକ୍ଷା କୌଣସି ଅଂଶରେ ହୀନ ନଥିଲା । ତାଙ୍କୁ ନ ଦେଖିଲେ ସେ ଅନ୍ନ ଗ୍ରହଣ କରୁ ନ ଥିଲେ । କେବେ କେବେ ଗୃହକୁ ଆସିବାରେ ବିଳମ୍ବ ଦେଖିଲେ ସେ ସଜଳନୟନରେ ତାଙ୍କୁ ଅନାଇ ବସି ରହୁଥିଲେ ଏବଂ ସହପାଠୀ ବନ୍ଧୁଙ୍କ ନିକଟରେ ବାଳକବତ୍ ରୋଦନ କରି ଅନ୍ୱେଷଣ କରୁଥିଲେ । ପାଠରେ କନିଷ୍ଠଙ୍କର ଅମନୋଯୋଗ ଏବଂ ଗର୍ହିତ ଆଚରଣ ଦେଖି ସେ କେବେ ତିରସ୍କାର ବା କଠୋର ଶାସନ କରି ନାହାନ୍ତି । କେବଳ ଅବିରଳ ଅଶ୍ରୁପାତ । ଏହି ଅଶ୍ରୁ ବର୍ଷଣରେ ତାଙ୍କର ଚରିତ୍ରଦୋଷ ବିଧୌତ ହୋଇ ଯାଇଥିଲା । କେବେ କେବେ ଅସଦ୍‌ବୁଦ୍ଧି ଚାଳନାରେ ଜଗନ୍ନାଥ କିଛିଦିନ ନିରୁଦ୍ଦେଶ୍ୟ ଭାବରେ କାହିଁ ଚାଲିଗଲେ ସେ ଚାରିଆଡ଼କୁ ସମ୍ବାଦ ଦେଇ ବ୍ୟାକୁଳ ପ୍ରାଣରେ ବିକ୍ଷତ

ହୃଦୟରେ ଗୃହ କୋଣରେ ପଡ଼ି ରହିଥାନ୍ତି । ପରେ ତାଙ୍କୁ ଆସିବାର ଦେଖିଲେ ସମସ୍ତ ଅପରାଧ ଭୁଲିଯାଇ ଆଲିଙ୍ଗନ କରି ବାଳକବତ୍ ଉଚ୍ଚୈଃସ୍ୱରରେ ବିଳାପ କରିବାକୁ ଲାଗୁଥିଲେ । ଏପରି ସ୍ନେହସିକ୍ତ ବ୍ୟବହାରରେ କାହାର ହୃଦୟ ବା ବିଗଳିତ ନ ହେବ ? କିନ୍ତୁ ଏଥିରେ କିଛି ଫଳ ନ ଦେଖି ପ୍ରାଣାଧିକ ଭାଇର ଚରିତ୍ର ଶୋଧନ ଉଦ୍ଦେଶ୍ୟରେ ପରିଶେଷରେ ସେ ଦିନେ ଯେପରି ବ୍ୟବହାର କରିଥିଲେ, ତାହା ସ୍ମରଣ କରି କଥା ପ୍ରସଙ୍ଗରେ ଜଗନ୍ନାଥ ବାବୁ ସରଳ ପ୍ରାଣରେ କହିଲେ, ''ମୁଁ ଯୌବନରେ ମନ୍ଦମେଳରେ ପଡ଼ି ଅନେକ କୁକାର୍ଯ୍ୟ ଓ ଅମେଧ ସେବା କରିଅଛି । ଶେଷରେ ଗୋଟିଏ ଦିନର ଘଟନାରେ ସବୁ ଛାଡ଼ିଅଛି । ଦାଦାଙ୍କ ଜ୍ୟେଷ୍ଠପୁତ୍ରର ଜନ୍ମର କିଛିକାଳ ପରେ ଦିନେ କାଳିଗଳିର ପୂର୍ବ ବସାରୁ ବାହାରି ଯାଇ ବାହାରେ ଅର୍ଦ୍ଧରାତ୍ର ଏହିପରି କଟାଇ ଯେତେବେଳେ ଏକାକୀ ଫେରିଲି, ଦ୍ୱାରଦେଶରେ ଆସି ଦେଖିଲି ଯେ ଦାଦା ନୀରବରେ ଠିଆ ହୋଇଅଛନ୍ତି । ମୋତେ ଦେଖିଲାକ୍ଷଣି ସେ ହାତ ଧରି ପକାଇ ବାଷ୍ପରୁଦ୍ଧ କଣ୍ଠରେ କହିବାକୁ ଲାଗିଲେ–ବାବା, ତୁ ଏତେବେଳେ କୁଆଡ଼େ ଥିଲୁ ? ଶୈଶବରୁ ମା'ତ ଚାଲି ଯାଇଛନ୍ତି, ତୁ ଏକମାତ୍ର ଥିଲୁ । ଏପରି ଯଦି ହେବୁ, ତାହାହେଲେ ମୋର ସଂସାରରେ ଆଉ କି ସୁଖ ଅଛି ଯେ ରହିବି ? ତେବେ ତୁ ତୋର ଏ ଘର ସମ୍ଭାଳ, ଏ ସମସ୍ତେ ତୋତେ ଲାଗିଲେ–ମୁଁ ଏହିକ୍ଷଣି କୁଆଡ଼େ ଚାଲି ଯାଉଛି ।'' ଏ ସମସ୍ତ କଥା ପ୍ରାଣର ଗଭୀର ପ୍ରଦେଶରେ ପ୍ରବେଶ କରିବାରୁ ତତ୍କ୍ଷଣାତ୍ ଆଚାରଭ୍ରଷ୍ଟ କନିଷ୍ଠ ତାଙ୍କର ପାଦ ଧରି ପ୍ରତିଜ୍ଞା କଲେ, ଦାଦା, ଆଉ ଜୀବନରେ ଆଜିଠାରୁ ଏପରି କରିବି ନାହିଁ । ସେହି ଦିନଠାରୁ ତାଙ୍କର ଜୀବନର ଗତି ଏକାବେଳେକେ ପରିବର୍ତ୍ତିତ ହୋଇଗଲା । କାର୍ଯ୍ୟକ୍ଷେତ୍ରରେ ପ୍ରବେଶ କଲାପରେ ଜଗନ୍ନାଥବାବୁ ଯେତେବେଳେ ସ୍ଥାନାନ୍ତରରେ ରହିଲେ, ତେତେବେଳେ ପ୍ରାୟ ଅନେକ ପତ୍ର ତାଙ୍କୁ ଲିଖିତ ହେଉଥିଲା ଏବଂ ଅନେକ ପତ୍ରରେ ପ୍ରାୟ ଦର୍ଶନର ଉତ୍କଣ୍ଠା ଏବଂ ସସ୍ନେହ ଆଲିଙ୍ଗନ ଲାଗି ପ୍ରାଣର ବ୍ୟାକୁଳତା ପ୍ରକାଶ ପାଉଥିଲା । ବହୁଦିନ ପରେ ଭାଇଙ୍କୁ ଦେଖିଲେ ସେ ହଠାତ୍ ଆଲିଙ୍ଗନ କରି ଶିରଶ୍ଚୁମ୍ବନ କରୁଥିଲେ । ବୃଦ୍ଧ ବୟସରେ ସୁଦ୍ଧା ଏ ରୀତି ସେହିପରି ଥିଲା । ବୃଦ୍ଧ ବୟସରେ ସେ ଯେପରି ଅତୁଲ୍ୟ ସ୍ନେହର ଏକାନ୍ତ ବଶ ହୋଇ ପତ୍ର ଲେଖୁଥିଲେ, ତାହା ପାଠକଲେ ଜଣାଯିବ, ଜଣେ ଶିଶୁପୁତ୍ର ପ୍ରତି ତାହା ଲିଖିତ । 'ଜ୍ୟେଷ୍ଠଭ୍ରାତାସମଃପିତୁଃ' ଉକ୍ତିର ସତ୍ୟତା ସେ ସ୍ୱଜୀବନରେ ଉଜ୍ଜ୍ୱଳରୂପେ ପ୍ରମାଣ କରି ଦେଇଅଛନ୍ତି । ଏ ବୟସରେ କିଏ 'ବାବା' ବୋଲି ଡାକି ଲେଖିବ ''ଏ ସମୟରେ ପ୍ରାଣ ଅତ୍ୟନ୍ତ ଆକୁଳ ହେଉଅଛି ଓ ତୋତେ ବକ୍ଷରେ ଧରି 'ବାବା' ବୋଲି ଡାକିବାପାଇଁ କ୍ରନ୍ଦନ କରୁଅଛି ।'' ପତ୍ରାନ୍ତରରେ–

''ବାବା, ତୁ ଯେ ମୋର କି ଧନ, ତାହା କି କୌଣସି ଭାଷାଦ୍ୱାରା କହି ହେବ ? ଆଉ ତୁ ମୋତେ କି ଚକ୍ଷୁରେ ଦେଖୁ, ତାହା କି ପ୍ରଭୁ ମୋତେ ବୁଝାଇ ଦେଇ ନାହାନ୍ତି ବା ଦେଉ ନାହାନ୍ତି ? ଆଉ ଅଧିକ କଣ ଲେଖିବି ? ପରମପିତା ଆମ୍ଭ ଦୁହିଁଙ୍କ ଜୀବନକୁ ତାଙ୍କରି ପାଦପଦ୍ମ ଆଡ଼କୁ ଏକତ୍ର ଏକନିଷ୍ଠ ଭାବରେ ଉନ୍ମୁଖ କରି ରଖନ୍ତୁ ।'' ଏ ଜଗତରେ କେତେଜଣ ବା ଭାଇକୁ ଏପରି ଦ୍ୱିତୀୟ ଜୀବନ ମଣନ୍ତି ? କେତେଜଣ ବା ଏପରି ପୁଣ୍ୟ ସ୍ନେହର ଅଧିକାରୀ ଏବଂ କେତେଜଣ ତାହା ଲାଭ କରି ଧନ୍ୟ ହୋଇଅଛନ୍ତି ? ଅହୋ ! ପ୍ରେମର କି ମହିମା ମହାକବି ଭବଭୂତି ରାମଚନ୍ଦ୍ରଙ୍କ ମୁଖରେ କହିଅଛନ୍ତି—''ତତ୍ ତସ୍ୟ କିମପି ଦ୍ରବ୍ୟଂ ଯୋ ହି ଯସ୍ୟ ପ୍ରିୟୋ ଜନଃ ।''

## ୧୧

ଏହି ପ୍ରସଙ୍ଗରେ ଆମ୍ଭେମାନେ ମଧୁସୂଦନଙ୍କ ପାରିବାରିକ ଜୀବନ ଯତ୍‌କିଞ୍ଚିତ୍ ଆଲୋଚନା କରିବୁଁ । ମଧୁସୂଦନ ଗୋଟିଏ ବଡ଼ କୁଟୁମ୍ବର ନେତା ଥିଲେ । ଏକେ ତ ସେ ବିଭୁପ୍ରସାଦରୁ ଚତୁର୍ବର୍ଗ ଫଳପ୍ରାପ୍ତିସ୍ୱରୂପ ଚାରି ପୁତ୍ର ଓ ଚାରି କନ୍ୟା ଲାଭ କରିଥିଲେ; ସେମାନଙ୍କୁ ଛାଡ଼ି ଅନ୍ୟ କୁଟୁମ୍ବ ମଧ୍ୟରୁ ଅର୍ଥାତ୍ ଆତ୍ମୀୟ ଜ୍ଞାତିବର୍ଗ ମଧ୍ୟରୁ କେହି କେହି ମଧ୍ୟ ଆଶ୍ରୟ ପାଇ ମନୁଷ୍ୟତା ଅର୍ଜନ କରୁଥିଲେ । ଏଠାରେ ଆଗେ ଏହି ପୁତ୍ରକନ୍ୟାମାନଙ୍କର ଟିକିଏ ପରିଚୟ ଦେଇ ପଶ୍ଚାତ୍ ପାରିବାରିକ ଶିକ୍ଷାଦି କଥା ଆଲୋଚନା କରିବା ସଙ୍ଗତ ବୋଧ ହେଉଅଛି ।

ପ୍ରଥମ ସନ୍ତାନ —ଶ୍ରୀମତୀ ବାସନ୍ତୀ ଦେବୀ ସନ ୧୦୮୧ ସାଲ (୧୮୭୪ ଖ୍ରୀଷ୍ଟାବ୍ଦ) ଆଷାଢ଼ କୃଷ୍ଣ ପଞ୍ଚମୀରେ ଭୂମିଷ୍ଠା । ଏ ବଙ୍ଗର ସୁଲେଖକ ଏବଂ ଉତ୍କଳର ସୁପରିଚିତ ଶ୍ରୀଯୁକ୍ତ ବିଜୟଚନ୍ଦ୍ର ମଜୁମଦାର ବି.ଏଲ୍.ଙ୍କୁ ପତି ପଦରେ ଲାଭ କରିଅଛନ୍ତି ।

ଦ୍ୱିତୀୟ – ଆମ୍ଭମାନଙ୍କ ସୁପରିଚିତ ଡାକ୍ତର ଶ୍ରୀଯୁକ୍ତ ଜୟନ୍ତ ରାଓ । ସନ ୧୨୮୬ ସାଲ ଆଶ୍ୱିନ ଶୁକ୍ଳ ଚତୁର୍ଥୀ ବା ୧୮୭୮ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ୨୮ ତାରିଖରେ ଏହାଙ୍କର ଜନ୍ମ । ଏ ସ୍ଥାନୀୟ ରେଭେନ୍‌ସା କଲେଜରୁ ଏଫ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୮୯୯ ଖ୍ରୀଷ୍ଟାବ୍ଦର ମେ ମାସ ଶେଷରେ କଲିକତା ମେଡ଼ିକେଲ କଲେଜରେ ଅଧ୍ୟୟନାର୍ଥ ପ୍ରବେଶଲାଭ କଲେ । ୬ ବର୍ଷ ପରେ ସେଠାରୁ L.M.S. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବର୍ତ୍ତମାନ କେତେକ ବର୍ଷ ହେଲା ଏଠା ଜେନେରଲ ହସ୍‌ପିଟାଲର ଆସିଷ୍ଟାଣ୍ଟ ସର୍ଜନ ଓ ମେଡ଼ିକେଲ ସ୍କୁଲର ଶିକ୍ଷକରୂପେ କାର୍ଯ୍ୟ କରୁଅଛନ୍ତି । ବଙ୍ଗର ଜଣେ ସୁଲେଖକ ଏବଂ ସୁପ୍ରସିଦ୍ଧ ଚିତ୍ରକର ଶ୍ରୀଯୁକ୍ତ ଉପେନ୍ଦ୍ରକିଶୋର ରାୟ ଚୌଧୁରୀଙ୍କ (U. Ray) କନ୍ୟା

କଳାକୁଶଳା ଶ୍ରୀମତୀ ସୁଖଲତା ଦେବୀଙ୍କ ସହିତ ଏହାଙ୍କର ଶୁଭବିବାହ ସମ୍ପନ୍ନ ହୋଇଅଛି ।

ତୃତୀୟ ସନ୍ତାନ–ଉତ୍କଳ ସାହିତ୍ୟ ପାଠକମାନଙ୍କର ପରିଚିତା ଶ୍ରୀମତୀ ଅବନ୍ତୀ ଦେବୀ (ଗୃହ ପ୍ରଚଳିତ ନାମ କୃଷ୍ଣା) ସନ ୧୨୮୮ର ଫାଲଗୁନ ଶୁକ୍ଳଚତୁର୍ଥୀ ବା ୧୮୮୧ ଖ୍ରୀଷ୍ଟାବ୍ଦର ମାର୍ଚ୍ଚ ୪ ତାରିଖରେ ଜନ୍ମଗ୍ରହଣ କରିଅଛନ୍ତି । କନ୍ୟାମାନଙ୍କ ମଧ୍ୟରେ ଏ ଅପେକ୍ଷାକୃତ ଅଧିକ ଶିକ୍ଷିତା । କଲିକତା ସାଧାରଣ ବ୍ରାହ୍ମସମାଜର ଜଣେ ପ୍ରଧାନ ନେତା ବଙ୍ଗର ସୁପରିଚିତ ପଣ୍ଡିତ ଶ୍ରୀ ଶିବନାଥ ଶାସ୍ତ୍ରୀ ଏମ୍.ଏ. ମହାଶୟଙ୍କ ପୁତ୍ର ଶ୍ରୀମାନ୍ ପ୍ରିୟନାଥ ଭଟ୍ଟାଚାର୍ଯ୍ୟ ମହାଶୟ ଏହାଙ୍କର ପାଣିଗ୍ରହଣ କରିଅଛନ୍ତି ।

ଚତୁର୍ଥ ସନ୍ତାନ–ଶ୍ରୀମତୀ ଶାନ୍ତି ଦେବୀଙ୍କର ସନ ୧୨୯୧ର ଆଶ୍ୱିନ ଅମାବାସ୍ୟାରେ ବା ୧୮୮୩ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ମାସରେ ଜନ୍ମ । ଏଠା ବ୍ରାହ୍ମ ପ୍ରଚାରକ ଶ୍ରୀଯୁକ୍ତ ରାଜମୋହନ ବସୁଙ୍କ ମଧ୍ୟମ ପୁତ୍ର ଶ୍ରୀମାନ୍ ପ୍ରଫୁଲ୍ଲଚନ୍ଦ୍ର ବସୁଙ୍କ (ବର୍ତ୍ତମାନ ଭିକ୍ଟୋରିଆ ସ୍କୁଲର ଶିକ୍ଷକ) ସହିତ ଏହାଙ୍କର ବିବାହ ହୋଇଅଛି ।

ପଞ୍ଚମ ସନ୍ତାନ–ଶ୍ରୀମାନ୍ ପ୍ରଶାନ୍ତ ରାଓ ସନ ୧୨୯୩ର ମୀନ ସଂକ୍ରାନ୍ତି ବା ୧୮୮୬ ଖ୍ରୀଷ୍ଟାବ୍ଦର ମାର୍ଚ୍ଚ ମାସ ୧୧ ତାରିଖରେ ଜାତ । ଏହି ପୁତ୍ର ଭୂମିଷ୍ଠ ହେବା ମାତ୍ରକେ ଭ୍ରାତୃବତ୍ସଳ ମଧୁସୂଦନ ପ୍ରାଣାଧିକ ଭ୍ରାତା ଜଗନ୍ନାଥ ରାଓଙ୍କର ପୁତ୍ର ସନ୍ତାନ ନ ଥିବାରୁ ସୁତିକାଗାରରେ ତଦୀୟ ପତ୍ନୀ ଶ୍ରୀମତୀ ରମା ଦେବୀଙ୍କ ହସ୍ତରେ ସମର୍ପଣ କଲେ । ତାହାଙ୍କ ଆଦେଶକ୍ରମେ ଜଗନ୍ନାଥବାବୁ ଏହାଙ୍କୁ ପୋଷ୍ୟପୁତ୍ରରୂପେ ଗ୍ରହଣ କରିଅଛନ୍ତି । ଏ ୧୯୦୬ରେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କିଛିକାଳ ଆଇନ ଅଧ୍ୟୟନାନ୍ତର ମୟୂରଭଞ୍ଜରେ ସବ୍‌ଡେପୁଟୀ କାର୍ଯ୍ୟ କରୁଅଛନ୍ତି । ଉକ୍ତ ରାଜ୍ୟର ଶିକ୍ଷାବିଭାଗର କର୍ତ୍ତା ଶ୍ରୀଯୁକ୍ତ ସୁଧାଂଶୁମୋହନ ଚକ୍ରବର୍ତ୍ତୀଙ୍କ ଭାତୁଷ୍ପୁତ୍ରୀଙ୍କ ସହିତ ଏହାଙ୍କର ବିବାହ ସମ୍ପନ୍ନ ହୋଇଅଛି ।

ଏହାଙ୍କ ଉତ୍ତାରେ ଦିଓଟି ସନ୍ତାନ ପରେ ପରେ ଜନ୍ମି ଅତି ଶୈଶବରେ ନଷ୍ଟ ହୋଇଯିବାରୁ ମଧୁସୂଦନ ସନ୍ତାନ ନାଶର ଦାରୁଣ ଶୋକରେ ବ୍ୟାକୁଳ ହୋଇ ପଡ଼ିଥିଲେ । ଶେଷରେ ଗୋଟିଏ କନ୍ୟାରତ୍ନ ଲାଭ ସଙ୍ଗେ ସଙ୍ଗେ ସାନ୍ତ୍ୱନା ପ୍ରାପ୍ତ ହୋଇ, ତାହାର ନାମ ଯଥାର୍ଥ ସାନ୍ତ୍ୱନା ଦେଇଥିଲେ । କୁମାରୀ ସାନ୍ତ୍ୱନା ସନ ୧୨୯୯ର ଚୈତ୍ରପୂର୍ଣ୍ଣିମା ଓ ମେଷ ସଂକ୍ରାନ୍ତିରେ ଅଥବା ୧୮୯୨ ଖ୍ରୀଷ୍ଟାବ୍ଦ ଏପ୍ରିଲ ୧୨ ତାରିଖରେ ଜନ୍ମଗ୍ରହଣ କରିଅଛନ୍ତି । ଏହାର ପ୍ରାୟ ୪ ବର୍ଷ ପରେ ଅର୍ଥାତ୍ ୧୮୯୬ ଅବ୍ଦର ଜାନୁଆରୀ ୧୮

ତାରିଖରେ ଅବା ସନ ୧୩୦୩ର ମାଘ ଅମାବାସ୍ୟା ଦିନ ଶ୍ରୀମାନ୍ ସୁକାନ୍ତ ରାଓଙ୍କର ଜନ୍ମ । ଏ ବର୍ତ୍ତମାନ ପ୍ରେସିଡ଼େନ୍‌ସି କଲେଜରେ ବି.ଏସ୍.ସି. ଶ୍ରେଣୀରେ ଅଧ୍ୟୟନ କରୁଅଛନ୍ତି । କନିଷ୍ଠ ସନ୍ତାନ ଶ୍ରୀମାନ୍ ଶ୍ରୀକଣ୍ଠ ମଧୁସୂଦନ ରାଓ ୧୮୯୯ ଖ୍ରୀଷ୍ଟାବ୍ଦର ଫେବୃୟାରୀ ୧୬ ତାରିଖରେ ଭୂମିଷ୍ଠ ହୋଇଅଛନ୍ତି । ବର୍ତ୍ତମାନ ଏ ଭିକ୍ଟୋରିଆ ସ୍କୁଲରେ ଅଧ୍ୟୟନ କରୁଅଛନ୍ତି । ଏମାନଙ୍କ ବ୍ୟତୀତ ଦୁଇଟି ଭ୍ରାତୁଷ୍ପୁତ୍ରୀ ତାହାଙ୍କର କନ୍ୟା ସ୍ଥାନରେ ଥିଲେ । ପ୍ରଥମା ପାଠକମାନଙ୍କର ସୁପରିଚିତା ଶ୍ରୀମତୀ ରେବା ରାୟ । ସ୍ୱର୍ଗତ ସାଧୁଚରଣ ରାୟଙ୍କ ସହିତ ଏହାଙ୍କର ଶୁଭପରିଣୟ ସମ୍ପାଦିତ ହୋଇଥିଲା । ଅନ୍ୟଟି ତାହାଙ୍କର କନୀୟସୀ ଶ୍ରୀମତୀ ସରସ୍ୱତୀ ଦେବୀ । ବଙ୍ଗ ଦେଶର ଜଣେ ଗଣନୀୟ ପଣ୍ଡିତ ଉପାଧ୍ୟାୟ ଗୌରଗୋବିନ୍ଦ ରାୟଙ୍କ ପୁତ୍ର ସ୍ୱର୍ଗୀୟ ଅମୃତାନନ୍ଦ ରାୟ ଏହାଙ୍କର ପାଣି ଗ୍ରହଣ କରିଥିଲେ ।

ସାଧୁବାବୁ ଉତ୍କଳର ଜଣେ ବିଶିଷ୍ଟ ପୁରୁଷ ଥିଲେ । ଉତ୍କଳ ସାହିତ୍ୟ ଓ ଉତ୍କଳର ଶିକ୍ଷା ବିଭାଗ ତାହାଙ୍କ ନିକଟରେ ଋଣୀ ଅଛି । ମଧୁସୂଦନଙ୍କର ସେ ଜଣେ ପ୍ରିୟ ଶିଷ୍ୟ, ପରମ ଭକ୍ତ ଏବଂ ପ୍ରାଣର ବନ୍ଧୁ ଥିଲେ । ଅନେକ ପାଠକଙ୍କୁ ସମ୍ଭବତଃ ତାହାଙ୍କ ବିଷୟ ଜଣା ନ ଥିବ । ତେଣୁ ସଂକ୍ଷେପରେ ତାହାଙ୍କ ଜୀବନବୃତ୍ତାନ୍ତ ଏଠାରେ ପ୍ରକାଶ କରୁଅଛୁଁ । ଯାଜପୁର ସବ୍-ଡିଭିଜନ ଅନ୍ତର୍ଗତ କତରାପୁର ନାମକ ଗ୍ରାମରେ ସାଧୁଚରଣ ଖଣ୍ଡାଏତ କୁଳରେ ଜନ୍ମଗ୍ରହଣ କରିଥିଲେ । ଶୈଶବରୁ ମାତୃଶୂନ୍ୟ ହୋଇଥିବାରୁ କଟକପ୍ରବାସୀ ପିତା ଦୟାନିଧି ସୁନ୍ଦରରାୟଙ୍କ ଉପରେ ତାଙ୍କର ଏବଂ କନିଷ୍ଠ ଭ୍ରାତାର ଲାଳନପାଳନ ଭାର ପଡ଼ିଲା । ସୁତରାଂ କଟକଠାରେ ସେ ବାଲ୍ୟକାଳରୁ ଶିକ୍ଷାଲାଭ କରି ୧୮ ବର୍ଷ ବୟସରେ (୧୮୭୯ ଖ୍ରୀଷ୍ଟାବ୍ଦ) ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଏବଂ ସ୍ଥାନୀୟ କଲେଜରେ ଏଫ୍.ଏ. ଅଧ୍ୟୟନ କଲେ । ଏକାଧିକ ଥର ଉକ୍ତ ପରୀକ୍ଷା ଦେଇ ସୁଦ୍ଧା ଉତ୍ତୀର୍ଣ୍ଣ ହୋଇ ନ ପାରିବାରୁ ଅଳ୍ପ ବେତନରେ ପ୍ରଥମେ କଟକ ଏକାଡ଼େମୀରେ ଶିକ୍ଷକତାକର୍ମ ଗ୍ରହଣ କଲେ । କିଛିକାଳ ଉକ୍ତ ବିଦ୍ୟାଳୟରେ ସେ ପଦୋନ୍ନତି ସହିତ ଏହି କାର୍ଯ୍ୟ ଦକ୍ଷତା ସହକାରେ ନିର୍ବାହ କରି କଟକ ମିଶନ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହୋଇ ଯାଇଥିଲେ । ଏହି କାର୍ଯ୍ୟ ସେ ମୃତ୍ୟୁ ପର୍ଯ୍ୟନ୍ତ ଅତି ସୁଖ୍ୟାତି ସହକାରେ ଚଳାଇ ଆସିଥିଲେ । ତାଙ୍କର ଯୋଗ୍ୟତା ଓ ଅଧ୍ୟାପନାକର୍ମରେ ସନ୍ତୁଷ୍ଟ ହୋଇ କର୍ତ୍ତୃପକ୍ଷମାନ ଅଳ୍ପ ସମୟରେ ତାଙ୍କର ବେତନ ବୃଦ୍ଧି କରାଇ ଦେଉଥିଲେ । ବିଦ୍ୟାଳୟ ପରି ଗୃହରେ ମଧ ଶିକ୍ଷକତାଦ୍ୱାରା ସେ ଯଥେଷ୍ଟ ସୁଖ୍ୟାତି ଅର୍ଜ୍ଜନ କରିଥିଲେ । ତାଙ୍କ ଚରିତ୍ରଗୁଣରେ ଆକୃଷ୍ଟ ହୋଇ ଗୁଣଜ୍ଞ ରାୟ ନନ୍ଦକିଶୋର ଦାସ ବାହାଦୂର ପ୍ରମୁଖ କେତେଜଣ ସମ୍ଭ୍ରାନ୍ତ

ବ୍ୟକ୍ତି ତାଙ୍କ ଉପରେ ସ୍ୱ ସ୍ୱ ସନ୍ତାନମାନଙ୍କର ଶିକ୍ଷାଭାର ଅର୍ପଣ କରିଥିଲେ । କେତେକ ବର୍ଷ ସେ ମଧ୍ୟ ତାଳଚେର ରାଜକୁମାରଙ୍କର (ବର୍ତ୍ତମାନ ରାଜା) ଶିକ୍ଷକ ଓ ଅଭିଭାବକ ପଦରେ ନିଯୁକ୍ତ ହୋଇ ତାହାଙ୍କର ସର୍ବାଙ୍ଗୀନ ଶିକ୍ଷା ପ୍ରତି ଐକାନ୍ତିକ ଯତ୍ନପରାୟଣ ଥିଲେ । ଶିଷ୍ୟମାନଙ୍କର ନୀତି ଓ ଧର୍ମଶିକ୍ଷା ପ୍ରତି ତାଙ୍କର ତୀକ୍ଷ୍ଣ ଦୃଷ୍ଟି ଥିଲା । ସେମାନଙ୍କ ମନରେ ନୈତିକ ସାହସ ଓ ଈଶ୍ୱରପ୍ରୀତି ଜନ୍ମାଇ ପାରିଲେ ସେ ଆପଣାକୁ କୃତାର୍ଥ ମଣୁଥିଲେ ।

ସାଧୁଚରଣ ଆଧୁନିକ ଉତ୍କଳର ଜଣେ ବିଶିଷ୍ଟ ସାହିତ୍ୟିକ ପୁରୁଷ । ଉତ୍କଳର ଏକାଧିକ ମାସିକ ପତ୍ର ଓ କେତେକ ଖଣ୍ଡି ପୁସ୍ତକରେ ତାଙ୍କ ସାହିତ୍ୟ ସେବାର ନିଦର୍ଶନ ରହିଅଛି । ତାଙ୍କର ଯେଉଁ କେତେଖଣ୍ଡି କବିତାପୁସ୍ତକ ଅଛି, ସେଗୁଡ଼ିକ ଆଧୁନିକ ସାହିତ୍ୟରେ ପ୍ରଶଂସିତ ସ୍ଥାନ ପାଇବାର ଯୋଗ୍ୟ । ପ୍ରତ୍ୟେକ କବିତା ଯେପରି ନୀତି ଓ ଧର୍ମ ଭାବରେ ପୂର୍ଣ୍ଣ, ତାହା ଯେ ସମାଜର ଯଥେଷ୍ଟ ହିତସାଧନ କରିବ, ଏଥିରେ ସନ୍ଦେହ ନାହିଁ । ସାଧୁଚରଣ ଏହି 'ଉତ୍କଳ ସାହିତ୍ୟ' ପତ୍ରିକାର ପ୍ରାରମ୍ଭ କାଳରେ ଜଣେ ପ୍ରଧାନ ଲେଖକ ଥିଲେ । ତତ୍ପୂର୍ବେ ତାଙ୍କର ପ୍ରବନ୍ଧାଦି ପ୍ରଥମେ ନବସମ୍ବାଦ ନାମକ ପତ୍ରିକାରେ ପ୍ରକାଶିତ ହେଉଥିଲା । ଉକ୍ତ ପତ୍ରିକାର ସେ କିଛିକାଳ ସମ୍ପାଦକ କାର୍ଯ୍ୟ ମଧ୍ୟ ପରିଚାଳନ କରିଥିଲେ । ଏହାଛଡ଼ା ସେ 'ଆଶା' ନାମକ ଖଣ୍ଡିଏ ମାସିକପତ୍ର ପ୍ରକାଶ କରିବାକୁ ସାହସ କରିଥିଲେ । ଏହା କିଛିକାଳ ଏଠା ବ୍ରାହ୍ମସମାଜ ଅଧୀନରେ ଚାଳିତ ହୋଇ ପରେ ତାଙ୍କ ଯତ୍ନରେ ଏବଂ ବାମଣ୍ଡା ଯୁବରାଜ (ବର୍ତ୍ତମାନ ମହାରାଜ) ଶ୍ରୀ ସଚ୍ଚିଦାନନ୍ଦ ଦେବଙ୍କ ଆନୁକୂଲ୍ୟରେ ପ୍ରାୟ ଦୁଇ ବର୍ଷ ଚଳିଥିଲା । ତେତେବେଳେ ଏହି ପତ୍ରିକା ତାଙ୍କ ସହଧର୍ମିଣୀ ଶ୍ରୀମତୀ ରେବା ରାୟଙ୍କ କର୍ତ୍ତୃକ ସ୍ତ୍ରୀ ଶିକ୍ଷାର ପତ୍ରିକାରୂପେ ଉତ୍କଳରେ ପ୍ରଚାରିତ ହୋଇଥିଲା । ଏ ଦମ୍ପତି ସ୍ୱଦେଶର ସ୍ତ୍ରୀଶିକ୍ଷା ବିଧାନରେ, ତଥା ସାହିତ୍ୟର ପୁଷ୍ଟି ସାଧନରେ ଯେପରି ଐକାନ୍ତିକ ଯତ୍ନ ଓ ନିଷ୍ଠା ପ୍ରଦର୍ଶନ କରିଅଛନ୍ତି, ସେଥିପାଇଁ ଆମ୍ଭେମାନେ ଚିରକୃତଜ୍ଞ ରହିବୁଁ । ସାଧୁଚରଣ କେତେଗୁଡ଼ିଏ ଭକ୍ତି ସଙ୍ଗୀତ ରଚନା କରିଥିଲେ । ତାଙ୍କର କବିତା ପୁସ୍ତକ ମଧ୍ୟରୁ 'ଭାବ କୁସୁମ' 'ପୌରାଣିକ କବିତା' 'ଭାବନା' 'ଧ୍ରୁବଚରିତ', 'କୌତୁକ କାହାଣୀ', ଏହି କେତେଖଣ୍ଡି ସେ ପ୍ରକାଶ କରି ଯାଇଅଛନ୍ତି । ଓଡ଼ିଶା ପରି ସ୍ଥାନରେ ଏ ସବୁ ପୁସ୍ତକ ମୁଦ୍ରଣରେ ସେ ଯେଉଁ ଅର୍ଥତ୍ୟାଗ ସ୍ୱୀକାର କରିଅଛନ୍ତି, ତାହା ଅବଶ୍ୟ ତାଙ୍କ ପକ୍ଷରେ ପ୍ରଶଂସାର ବିଷୟ ।

ତରୁଣ ବୟସରେ ସାଧୁଚରଣ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହୋଇ ସେଥିରେ ଯୋଗ ଦେବା ଦ୍ୱାରା ଯଥେଷ୍ଟ ସାହସିକତା ଓ ସ୍ୱାଧୀନଚିତ୍ତତାର ପରିଚୟ ଦେଇଥିଲେ । ଦେଶ ପ୍ରଚଳିତ କୁସଂସ୍କାର ଏବଂ ଚିରନ୍ତନ ଉପଧର୍ମର ମୋହ ପରିବର୍ଜନ ସଙ୍ଗେ ସଙ୍ଗେ ସମାଜ

ବନ୍ଧନ ଛିନ୍ନ କରି ସେ ଅସୀମ ସାହସରେ ଏହି ନବଧର୍ମରେ ଦୀକ୍ଷିତ ହୋଇଥିଲେ । ଆଚାର୍ଯ୍ୟ ମଧୁସୂଦନ ତାଙ୍କର ଦୀକ୍ଷାଗୁରୁ । ଏହି ବ୍ରାହ୍ମଧର୍ମ ଗ୍ରହଣ ଲାଗି ସେ ପିତାଙ୍କ ନିକଟରୁ, ତଥା ଅନ୍ୟାନ୍ୟମାନଙ୍କଠାରୁ ଯଥେଷ୍ଟ ନିଗ୍ରହ ଭୋଗ କରି ଏବଂ ତଦ୍ଦ୍ୱାରା ସ୍ୱାର୍ଥନାଶ ଓ ଅନର୍ଥ ଘଟନାର ପ୍ରଭୂତ ସମ୍ଭାବନା ଦେଖି ସୁଦ୍ଧା ଆପଣାର ସ୍ୱାଧୀନ ମତରୁ ତିଳେ ବିଚଳିତ ହୋଇ ନଥିଲେ । କୌଣସି ପ୍ରକାର କଷ୍ଟକୁ ସେ କଷ୍ଟଜ୍ଞାନ ନ କରି ସମାଜରୁ କୁସଂସ୍କାର ଉତ୍ପାଟନ ଲାଗି ବଦ୍ଧପରିକର ହୋଇଥିଲେ । ବ୍ରାହ୍ମସମାଜରେ ସୁଦ୍ଧା କିଛି କୁସଂସ୍କାରର ଆଭାସ ଦେଖିଲେ ସେ ନିର୍ଭୀକ ଭାବରେ ତାହାର ତୀବ୍ର ପ୍ରତିବାଦ କରୁଥିଲେ । ବ୍ରାହ୍ମସମାଜର କାର୍ଯ୍ୟରେ ତାଙ୍କର ପୂର୍ଣ୍ଣ ଉତ୍ସାହ ଓ ଅନୁରାଗ ଥିଲା । ବ୍ରାହ୍ମଧର୍ମ ପ୍ରଚାର ଲାଗି ତାଙ୍କର ପ୍ରାଣ ଏପରି ବ୍ୟାକୁଳ ଥିଲା ଯେ, ସେଥିଲାଗି ଯଥାଶକ୍ତି ସମୟ ଓ ଅର୍ଥ ବ୍ୟୟ କରିବାକୁ ସେ କିଛି ମାତ୍ର କୁଣ୍ଠା ପ୍ରକାଶ କରୁ ନ ଥିଲେ, ବରଂ ପ୍ରଚାର ଲାଗି କିପରି ଯଥେଷ୍ଟ ଅର୍ଥ ସଂଗୃହୀତ ହେବ, ସେଥିପାଇଁ ସେ ଯଥେଷ୍ଟ ଚେଷ୍ଟା କରିଥିଲେ । ଏହି ଉଦ୍ଦେଶ୍ୟରେ ମଧ କଟକରେ ଗୋଟିଏ ଛାତ୍ରସମାଜ ଗଠନ କରି ସେ ଏକାକୀ ତାହାର ଅଧିନାୟକ ପଦ ଗ୍ରହଣ କରିଥିଲେ । ମଧେ ମଧେ ବନ୍ଧୁମାନଙ୍କ ସଙ୍ଗରେ ଧର୍ମପ୍ରଚାର ଲାଗି ମଫସଲକୁ ବାହାରୁଥିଲେ । 'ବ୍ରାହ୍ମଧର୍ମ' ପୁସ୍ତକର ଉତ୍କଳାନୁବାଦ ତାଙ୍କରି ଦ୍ୱାରା ସମ୍ପାଦିତ ହୋଇଥିଲା । ତାଙ୍କ ରଚିତ ସମସ୍ତ ବ୍ରହ୍ମସଙ୍ଗୀତ ଅଦ୍ୟାପି ପ୍ରକାଶିତ ହୋଇନାହିଁ । କେତେକ ସଙ୍ଗୀତ ଏଥିପୂର୍ବେ 'ପ୍ରୀତିକୁସୁମ' ନାମରେ ପୁସ୍ତିକାକାରରେ ପ୍ରକାଶିତ ହୋଇଥିଲା ।

ସାଧୁଚରଣ ଜଣେ ଉଦ୍ୟମୀ ଏବଂ କର୍ତ୍ତବ୍ୟନିଷ୍ଠ ଯୁବକ ଥିଲେ । ଗାର୍ହସ୍ଥ୍ୟକର୍ମ ସୁସମ୍ପନ୍ନ କରିବାରେ ତାଙ୍କର ଯଥେଷ୍ଟ ନୈପୁଣ୍ୟ ଥିଲା । ନାନା ସତ୍ ଉପାୟରେ ଅର୍ଥ ଉପାର୍ଜନ କରି ତାହାର ସଦ୍‌ବ୍ୟବହାରରେ ସେ ଉତ୍ତମରୂପେ ଅଭ୍ୟସ୍ତ ଥିଲେ । ବ୍ୟର୍ଥ ବିଳାସ ଆଡ଼ମ୍ବର ଆଡ଼କୁ ତାଙ୍କ ମନ ଯାଇ ନାହିଁ କି ଔଦାସୀନ୍ୟ ବା ଆଳସ୍ୟ ତାଙ୍କୁ ସ୍ପର୍ଶ କରିନାହିଁ । ତାଙ୍କର ଦାମ୍ପତ୍ୟଜୀବନ ମଧ ଅତି ସୁଖମୟ ଥିଲା । ଗୁରୁଭକ୍ତି ଓ କନିଷ୍ଠ ସ୍ନେହ ତାଙ୍କ ହୃଦୟରେ ପ୍ରଶଂସନୀୟ ମାତ୍ରାରେ ଥିଲା । ପିତାଙ୍କ ମୃତ୍ୟୁ ଉତ୍ତାରେ ତାଙ୍କର ଏକମାତ୍ର କନୀୟାନ୍ ଅବିବେକୀ ଭ୍ରାତା ତାଙ୍କଠାରୁ ବିଚ୍ଛିନ୍ନ ହୋଇ ଶେଷରେ ସର୍ବସ୍ୱ ହରାଇ ବସି ସୁଦ୍ଧା ପୂର୍ବବତ୍ ଅତ୍ୟାଚାର କରିବାକୁ ଲାଗିଲା । ତଥାପି ସେ ତାହାକୁ କ୍ଷମାଦେଇ ଆପଣା ପାଖରେ ରଖି ସମସ୍ତ ଅତ୍ୟାଚାର ଅକାତରରେ ସହି ତାହାର ସମସ୍ତ ବ୍ୟୟ ନିର୍ବାହ କରୁଥିଲେ । ସାଧୁଚରଣ ଦିଓଟି ପୁତ୍ର ଓ ଗୋଟିଏ କନ୍ୟା ଲାଭ କରିଥିଲେ । ତାଙ୍କର ମୃତ୍ୟୁକାଳୀନ ଘଟନା ଶିକ୍ଷାପ୍ରଦ । ତେଣୁ ତେତିକି ପ୍ରକାଶ କରି ଏ ପ୍ରସଙ୍ଗର ଉପସଂହାର କରିବୁଁ ।

୧୮୯୮ ଖ୍ରୀଷ୍ଟାବ୍ଦର ଜୁନ୍ ମାସ ୨୬ ତାରିଖ ଦିନ ସକାଳେ ହଠାତ୍ ତାଙ୍କୁ ଉଦରାମୟ ଆକ୍ରମଣ କଲା । ଡାକ୍ତରୀ ଚିକିତ୍ସା ଅବିରାମ ଚାଲିଥିଲେହେଁ କୌଣସି ଫଳ ହେଲାନାହିଁ । ୨୯ ତାରିଖ ଦିନ ପ୍ରାତଃକାଳରୁ ପୀଡ଼ା କ୍ରମଶଃ ବୃଦ୍ଧି ପାଇଲା ଏବଂ ସେହିଦିନ ସନ୍ଧ୍ୟା ସମୟରେ ତାଙ୍କ ଜୀବନର ସନ୍ଧ୍ୟା ହୋଇଗଲା । ଏହି ପୀଡ଼ା ଯନ୍ତ୍ରଣା ସମୟରେ ସେ ଯେପରି ସହିଷ୍ଣୁତା ଓ ଧୈର୍ଯ୍ୟ ପ୍ରଦର୍ଶନ କରିଅଛନ୍ତି, ତାହା ସାଧାରଣତଃ ଦେଖାଯାଏ ନାହିଁ । ମୃତ୍ୟୁର ପୂର୍ବକ୍ଷଣରେ ସେ ଉପସ୍ଥିତ ଅନ୍ତରଙ୍ଗ ବନ୍ଧୁଗଣଙ୍କୁ ନିର୍ବିକାର ମନରେ କହିଲେ, ''ମୋତେ ଭୋଳାର (ବିଶ୍ୱନାଥ ବାବୁଙ୍କ କନିଷ୍ଠ ଭ୍ରାତା) ରୋଗ ଧରିଲା, ଏଥର ଆଉ ବଞ୍ଚିବି ନାହିଁ । ରବିର* ଲେଖାପଢ଼ା ଯେପରି ହୁଏ ।'' ସହଧର୍ମିଣୀଙ୍କ ପ୍ରତି ତାଙ୍କର ଏହି ଅନ୍ତିମ ଉପଦେଶ ଥିଲା ଯେ, ''ପବିତ୍ରଭାବରେ ଜୀବନଯାପନ କରିବ । ଈଶ୍ୱରଙ୍କ ଉପରେ ନିର୍ଭର ରଖି ଚଳିବ, ସେହି ସମସ୍ତ ଅଭାବ ପୂରଣ କରିବେ—ପ୍ରଭୁ ! ତୁମ୍ଭର ଇଚ୍ଛା ପୂର୍ଣ୍ଣ ହେଉ—ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।'' ମୃତ୍ୟୁ ମୁହୂର୍ତ୍ତରେ ତାଙ୍କର ମୁଖାକୃତି କିଛିମାତ୍ର ବିକୃତ ହୋଇ ନଥିଲା । ଦେଖି ମନେ ହେଉଥିଲା, ଯେପରି ପ୍ରଫୁଲ୍ଲ ଚିତ୍ତରେ ଓ ପ୍ରଶାନ୍ତ ଭାବରେ ଶୟନ କରିଅଛନ୍ତି । ଅଟଳ ଧର୍ମବିଶ୍ୱାସ ଓ ଈଶ୍ୱର ନିର୍ଭର ଭାବରେ ଅନୁପ୍ରାଣିତ ନ ହେଲେ ଲୋକର ଏପରି ଅବସ୍ଥା ଘଟିବା ଅସମ୍ଭବ ।''

ପୁତ୍ର କନ୍ୟାମାନଙ୍କ ଶିକ୍ଷାର ଉନ୍ନତିବିଧାନରେ ମଧୁସୂଦନ ସର୍ବଦା ଯତ୍ନବାନ୍ ଥିଲେ । ସେମାନଙ୍କ ପାଇଁ ଯଥେଷ୍ଟ ଅର୍ଥବ୍ୟୟରେ ଗୃହଶିକ୍ଷକ ନିଯୁକ୍ତ କରୁଥିଲେ, ନିଜେ ପ୍ରତିଦିନ ଅବସରକ୍ରମେ ସେମାନଙ୍କ ପଢ଼ାଶୁଣା ଦେଖୁଥିଲେ । ସନ୍ତାନମାନଙ୍କର ଧର୍ମଜୀବନ ଓ ଚରିତ୍ର ପ୍ରତି ତାଙ୍କର ସମଧିକ ଦୃଷ୍ଟି ଥିଲା । ପୁତ୍ରମାନଙ୍କୁ ବାହାରେ ଖେଳିବାକୁ ଅଥବା ଅନ୍ୟ ପିଲାଙ୍କ ସହିତ ମିଳିବାକୁ ସେ ଛାଡୁ ନ ଥିଲେ । ତେଣୁ ସେ ବାସସନ୍ନିହିତ ଚତ୍ୱରରେ ସେମାନଙ୍କ କ୍ରୀଡ଼ାଭୂମି ନିର୍ଦ୍ଦେଶ କରିଦେଇଥିଲେ । କାହାରିକି କେବେ ସନ୍ଧ୍ୟା ପରେ ଆସିବାର ଦେଖିଲେ ସେ ଅତ୍ୟନ୍ତ ବିରକ୍ତି ପ୍ରକାଶ କରିଥାନ୍ତି । କେତୋଟି ପରିଚିତ ପରିବାର ଛଡ଼ା ଅନ୍ୟ କେଉଁଠାକୁ ଯିବାକୁ ଅନୁମତି ନ ଥିଲା । କେହି ନିର୍ଦ୍ଦିଷ୍ଟ ସମୟରେ ଗୃହକୁ ଫେରି ନ ଆସିଲେ ମଧୁସୂଦନ ଗୃହଦ୍ୱାରରେ ଆସି ଅପେକ୍ଷା କରି ବସୁଥିଲେ । ସେ ସ୍ତ୍ରୀ ସ୍ୱାଧୀନତାର ପକ୍ଷପାତୀ ଥିଲେହେଁ କେବେ କନ୍ୟାମାନଙ୍କୁ କେତୋଟି ପରିଚିତ ପରିବାର ବ୍ୟତୀତ ଅନ୍ୟତ୍ର ସ୍ୱାଧୀନଭାବରେ ଛାଡୁ ନ ଥିଲେ । କୌଣସି ପ୍ରକାର ଆମୋଦପ୍ରମୋଦରେ ସେମାନେ ପ୍ରାୟ ଯୋଗ ଦେଉ

* ପ୍ରକୃତ ନାମ ଶ୍ରୀମାନ ସଚ୍ଚିଦାନନ୍ଦ ରାୟ । ଗତ ବର୍ଷ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ବର୍ତ୍ତମାନ ସେ ଉତ୍କଳର ପ୍ରଥମ ଭାରତୀୟ ସିବିଲ୍ ସର୍ବିସ୍ ପରୀକ୍ଷାର୍ଥୀ ହୋଇ ବିଲାତ ଯିବାକୁ ପ୍ରସ୍ତୁତ ।

ପାରୁ ନଥିଲେ । ଅନ୍ୟ ଥିଏଟର ତ ଦୂରର କଥା—କଟକରେ ଯେତେବେଳେ ବହୁ ଦିନଯାଏ (କେବଳ ପୁରୁଷମାନଙ୍କ ଦ୍ୱାରା) ନିର୍ଦ୍ଦୋଷ ସାଙ୍ଗେଲି ଥିଏଟରର ଅଭିନୟ ହେଉଥିଲା, ତେତେବେଳେ ସୁଦ୍ଧା ତାଙ୍କ ପରିବାରରୁ କେହି ଜଣେ ଯାଉ ନ ଥିଲେ । ଆମ୍ଭମାନଙ୍କର ବେଶ୍ ସ୍ମରଣରେ ଅଛି ଯେ, ଦିନେ ଉକ୍ତ ଦଳର ପ୍ରଧାନ ଚାଳକ ଜଣେ ମହାରାଷ୍ଟ୍ର ବନ୍ଧୁ ମଧୁବାବୁଙ୍କୁ ଥରେ ଅଭିନୟ ଦର୍ଶନ କରିବା ପାଇଁ ଅନୁରୋଧ କରି ଆସିଥିଲେ । ସ୍ୱଜାତିପ୍ରୀତିବଶତଃ ସେ କଥଞ୍ଚିତ୍ ସ୍ୱୀକୃତ ହୋଇ କନିଷ୍ଠ ପୁତ୍ର ଓ କନ୍ୟାଦୁହିଁଙ୍କୁ ଘେନି ଅଭିନୟ ଦେଖିବାକୁ ଯାଇଥିଲେ । ପ୍ରଥମ ଅଭିନୟଟି ହୋଇଯିବା ପରେ ମଧୁଶଯ୍ୟା ଅଭିନୟର ଉପକ୍ରମ ଦେଖି ସେ ତତ୍କ୍ଷଣାତ୍ ସମସ୍ତଙ୍କୁ ଘେନି ଉଠି ଆସିଲେ । ତାହାଙ୍କର ଘୃଣାବ୍ୟଞ୍ଜକ ଅକାଳ ନିଷ୍କ୍ରମଣରେ ଅବଶ୍ୟ ଅଭିନେତୃ ଦଳ କିଞ୍ଚିତ୍ ସଙ୍କୋଚ ଅନୁଭବ କରିଥିଲା ପରି ବୋଧହେଲା ଏବଂ ଅଧିକାଂଶ ଦର୍ଶକ ସେ କିପରି ସୁନୀତିର ଆଦର କରନ୍ତି, ତାହା ଉତ୍ତମରୂପେ ବୁଝି ପାରିଥିଲେ । କୌଣସି ହିନ୍ଦୁ ବା ମୁସଲମାନ ବନ୍ଧୁଙ୍କ ବିବାହ ଉତ୍ସବରେ ଯୋଗ ଦେବାକୁ ଗଲେ ସେ କେବେ କୌଣସି ପ୍ରକାର ଗୀତ ନାଟ୍ୟ ଉତ୍ସବରେ ଯୋଗ ଦିଅନ୍ତି ନାହିଁ କିମ୍ବା ସନ୍ତାନମାନଙ୍କୁ ତାହା କରାଇ ଦିଅନ୍ତି ନାହିଁ । କେବଳ ନିଜ ସନ୍ତାନମାନଙ୍କ ପ୍ରତି ଯେ ଏହିପରି ଦୃଷ୍ଟି ଥିଲା ତାହା ନୁହେ, ବନ୍ଧୁବାନ୍ଧବଗଣଙ୍କ ସନ୍ତାନ, ଛାତ୍ର ଏବଂ ପ୍ରତିବାସୀମାନଙ୍କ ପ୍ରତି ମଧ ସେହିପରି ଥିଲା । ଏ ଯୁଗରେ ଅତି ଅଳ୍ପ ପିତା ସନ୍ତାନମାନଙ୍କର ସର୍ବାଙ୍ଗୀନ ଶିକ୍ଷାବିଧାନରେ ମଧୁସୂଦନଙ୍କ ପ୍ରାୟ ଯତ୍ନବାନ୍ ଦେଖାଯାନ୍ତି । କାହାରି କିଛି ଚରିତ୍ରରେ ତ୍ରୁଟି ଦେଖିଲେ ତାହାଙ୍କର କ୍ରୋଧାଗ୍ନି ଉଦ୍ଦୀପିତ ହୋଇ ଉଠୁଥିଲା, କିନ୍ତୁ କ୍ଷଣକ ମଧରେ ପୁଣି ଅଦ୍ଭୁତ ଭାବରେ ସେ ଅଗ୍ନିର ନିର୍ବାଣ ହେଉଥିଲା । ଅନ୍ୟ କଥା ଦୂରେ ଥାଉ, ଭୃତ୍ୟ ମୁଖରେ ଅସତ୍ୟ କଥା ଶୁଣିଲେ କ୍ରୋଧରେ ଅଧୀର ହୋଇ ପଡୁଥିଲେ । ଅନେକେ ଏଣୁ ତାହାଙ୍କୁ ବଡ଼ କ୍ରୋଧୀ ବୋଲି ଭାବିଥାନ୍ତି, କିନ୍ତୁ ତାହା ଯଥାର୍ଥ ନୁହେଁ । ସେ ନୀତିର ମୂଲ୍ୟ ଯେତେ ବୁଝନ୍ତି, ତାହା ତୁଳନାରେ ସାଧାରଣ ଦୃଷ୍ଟିରେ ଯାହା ଅତି ସାମାନ୍ୟ ତ୍ରୁଟି, ତାହାକୁ ସେ ମହାଦୋଷ ବୋଲି ମନେ କରନ୍ତି, ତଦନୁପାତରେ ହଠାତ୍ ମହାକ୍ରୋଧ ପ୍ରକାଶ କରନ୍ତି; କିନ୍ତୁ ପରକ୍ଷଣରେ ଦୟା ଓ କ୍ଷମା ଗୁଣରେ ସେ କ୍ରୋଧ କାହିଁ ଉଭେଇଯାଏ ଏବଂ ଅନୁତାପ ଆସି ତାହା ସ୍ଥାନ ଅଧିକାର କରେ । ତେଣୁ କହନ୍ତି, ମହାତ୍ମାମାନଙ୍କର କ୍ରୋଧ ଜଳରେ ରେଖାବତ୍ ସ୍ଥାୟୀ ।

ବୈମାତ୍ରେୟ ଭ୍ରାତାମାନଙ୍କୁ ସେ ଯଥେଷ୍ଟ ସ୍ନେହ କରୁଥିଲେ ଏବଂ ସେମାନଙ୍କ ଶିକ୍ଷାଦିରେ ଆଶାନୁରୂପ ସହାୟ ହୋଇଥିଲେ । ତନ୍ମଧରେ କନିଷ୍ଠଟିଙ୍କୁ ବହୁକାଳ ପାଖରେ ରଖି ଉପଦେଶ ଦେଇ ସୁଦ୍ଧା ଚରିତ୍ରର ଉନ୍ନତି ନ ଦେଖି ସେ ମଧେ ମଧେ ଅତ୍ୟନ୍ତ ମର୍ମାହତ

ହେଉଥିଲେ । ସେ ଯାହାହେଉ ଚରିତ୍ରମାଧୁରୀରେ ତାଙ୍କର ଗୃହ ଅତି ପବିତ୍ର ଓ ସ୍ୱର୍ଗୋପମ ବୋଧହୁଏ ।

''ବୈକୁଣ୍ଠ ସମାନ ଆହା ଅଟେ ସେହି ଘର,
ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।''

କବିଙ୍କର ଏହି ଉକ୍ତିଟି ତାଙ୍କର ପରିବାର ପ୍ରତି ପ୍ରଯୋଜ୍ୟ ହୋଇପାରିବ ।

ଏହି ପରିବାର ମଧ୍ୟରେ ସେ ଦୈନନ୍ଦିନ ଜୀବନ କିପରି ଯାପନ କରନ୍ତି, ତାହା ଗୋଟିଏ ଦିନର କାର୍ଯ୍ୟରେ ଦୃଷ୍ଟାନ୍ତ ଦେଲେ ପାଠକମାନଙ୍କର ମାନସ ପ୍ରତ୍ୟକ୍ଷ ହୋଇପାରିବ । ମଧୁସୂଦନ ଅତି ପ୍ରତ୍ୟୁଷରେ ଶଯ୍ୟାରୁ ଗାତ୍ରୋତ୍‌ଥାନ କରୁଥିଲେ । ମୃତ୍ୟୁର କିଛିକାଳ ପୂର୍ବେ ରାତ୍ରିରେ ସୁନିଦ୍ରାର ଅଭାବରୁ ଏହାର କିଞ୍ଚିତ୍ ବ୍ୟତିକ୍ରମ ହୋଇଥିଲା । ଦନ୍ତଧାବନାଦି ପରେ ପ୍ରତ୍ୟହ ସ୍ନାନ କରୁଥିଲେ । ପାଇଖାନାକୁ ଯିବାବେଳେ କିଞ୍ଚିତ୍ ଗୁଡ଼ାଖୁ ଖାଇବାର ଅଭ୍ୟାସ ଥିଲା । ଭୋଜନର ଅବ୍ୟବହିତ ପରେ ମଧ ଥରେ ପାନ ଗୁଡ଼ାଖୁ ଖାଉଥିଲେ । କିନ୍ତୁ ତାହା ସେ ଏପରି ସାବଧାନ ଓ ପ୍ରଚ୍ଛନ୍ନ ଭାବରେ ସମ୍ପାଦନ କରନ୍ତି ଯେ, ଅତି ଅଳ୍ପ ଲୋକେ ତାହାଙ୍କୁ ଏହା ଖାଇବାର ଦେଖିଅଛନ୍ତି । ତଥାପି ଏହା ଗୋଟିଏ ଦୋଷାବହ ଅଭ୍ୟାସ ବୋଲି ସେ ନିଜେ ଘୃଣା କରିଥାନ୍ତି । ଏପରିକି, ମଧେ ମଧେ ତାହା କିଛି ଦିନ ପାଇଁ ବର୍ଜନ କରି ଦେଉଥିଲେ । ସ୍ନାନ ପୂର୍ବରେ ଅନେକ ସମୟ ତାହାଙ୍କର ତୈଳ ମର୍ଦ୍ଦନରେ କଟୁଥିଲା । ଏହି ଅବସରରେ ସେ କେବେ ପୁତ୍ରକନ୍ୟାଙ୍କର ପଢ଼ାଶୁଣା ଦେଖନ୍ତି । କେବେ ବା ଦର୍ଶନ, ଧର୍ମଗ୍ରନ୍ଥ ବା ଅନ୍ୟ କୌଣସି ଉପାଦେୟ ଗ୍ରନ୍ଥ ପାଠ କରୁଥାନ୍ତି । ସ୍ନାନାନ୍ତେ ତାହାଙ୍କର ଲଘୁଖାଦ୍ୟ ସାମାନ୍ୟ ଅଦା ଲୁଣ ଗ୍ରହଣ କରି ଉପାସନାରେ ବସନ୍ତି । କେବେ କେବେ ଏକାକୀ କେବେ ବା ପରିବାରବର୍ଗଙ୍କୁ ଘେନି ଉପାସନା କରିଥାନ୍ତି । ପରିବାର ମଧରେ କିପରି ବ୍ରହ୍ମୋପାସନା ଉତ୍ତମରୂପେ ପ୍ରତିଷ୍ଠିତ ହେବ, ଏଥିପାଇଁ ସେ ସର୍ବଦା ଉପଦେଶ ଦେଇଥାନ୍ତି ଏବଂ ସମସ୍ତଙ୍କୁ ଘେନି ଉପାସନା କରିବାକୁ ଅଧିକ ଭଲ ପାନ୍ତି । ଏପରିକି, ଦୂରରେ ଥିବା ପୁତ୍ର କନ୍ୟାମାନଙ୍କୁ ପ୍ରତି ପତ୍ରରେ ଦୈନିକ ଉପାସନା ବିଷୟରେ ଉପଦେଶ ଦେଇଥାନ୍ତି । ଉପାସନାରୁ ଉଠିବାଠାରୁ ଆହାର ପର୍ଯ୍ୟନ୍ତ ସମୟ ମଧରେ ସେ କେବେ ନିଜ କାର୍ଯ୍ୟ କରୁଥିଲେ ଅଥବା ଗୃହକାର୍ଯ୍ୟ ତତ୍ତ୍ୱାବଧାନ କରୁଥିଲେ । କେବେ ବା ପୁତ୍ର କନ୍ୟାମାନଙ୍କ ପଢ଼ାଶୁଣା ଦେଖୁଥିଲେ । କନ୍ୟାମାନଙ୍କର ସଂସ୍କୃତଜ୍ଞାନ ବୃଦ୍ଧି ପ୍ରତି ସେ ବିଶେଷ ଦୃଷ୍ଟି ରଖିଥିଲେ ଏବଂ ନିଜେ ହିତୋପଦେଶ, ରଘୁବଂଶ, ଉତ୍ତର ଚରିତ ନାଟକ ସେମାନଙ୍କୁ ପଢ଼ାଉଥିଲେ । କନ୍ୟାମାନେ କିପରି ଶିକ୍ଷାପ୍ରାପ୍ତ ହୋଇଥିଲେ, ତାହା ଏହି ପତ୍ରିକାରେ ପ୍ରକାଶିତ ତଦୀୟ ପତ୍ରାବଳୀରୁ

ପାଠକମାନେ ଅନୁମାନ କରିପାରୁଥିବେ । ପୂର୍ବାହ୍ନ ଦଶଟା ବେଳେ ଅଧାୟୀ ପୁତ୍ରମାନଙ୍କୁ ଘେନି ଏକତ୍ର ଭୋଜନ କରନ୍ତି— କେବେ କେବେ କନ୍ୟାମାନଙ୍କୁ ଘେନି ବସିଥାନ୍ତି । ଖାଇ ସାରିବା ପରେ ଗୁଡ଼ାଖୁ ଖାଇବା ଅବସରରେ ଖବରକାଗଜର ଆଲୋଚନା କରି ଅନନ୍ତର ସ୍କୁଲ ବା ଅଫିସକୁ ଗଲେ ପ୍ରାୟ ୫ଟା ପର୍ଯ୍ୟନ୍ତ ଉକ୍ତ କାର୍ଯ୍ୟରେ କଟି ଯାଉଥିଲା । ଅବସର କାଳରେ ଏହି ସମୟ ମଧରେ ପୁସ୍ତକ ପାଠ, ପୁସ୍ତକ ପ୍ରଣୟନ ବା ଅନୁବାଦ କିମ୍ବା ଭିକ୍ଟୋରିଆ ସ୍କୁଲର କାର୍ଯ୍ୟ ହେଉଥିଲା । ଅପରାହ୍ନରେ ଗୃହକୁ ଆସିବା ପରେ କିଛି କ୍ଷଣ ବଗିଚାର କାମ ଅଥବା ସ୍କୁଲର କାର୍ଯ୍ୟ ତତ୍ତ୍ୱାବଧାନ କରି ସନ୍ଧ୍ୟା ପର୍ଯ୍ୟନ୍ତ ବନ୍ଧୁମାନଙ୍କ ଦେଖା ସାକ୍ଷାତ୍‌କାରରେ କଟାଇଥାନ୍ତି । ସନ୍ଧ୍ୟା ପରେ ପୁଣି ଉପାସନା, ଉପାସନାନ୍ତେ ଗୃହାଗତ ଦର୍ଶନାର୍ଥୀ ଭଦ୍ରବ୍ୟକ୍ତିଗଣଙ୍କ ସହିତ ଆଳାପ ପରିଚୟରେ କିଛି କାଳ କଟିଯାଏ । ତହିଁ ଉତ୍ତାରେ କେତେକ ସମୟ ପୁସ୍ତକ ଅଧୟନାଦିରେ କଟାଇ ଭୋଜନ ସମୟରେ ସମସ୍ତ ପୁତ୍ର କନ୍ୟାମାନଙ୍କୁ ଘେନି ବସନ୍ତି । ଏହି ସମୟରେ ସେମାନଙ୍କର ଦିନର ସମସ୍ତ କଥା ବୁଝିବା ସଙ୍ଗେ ସଙ୍ଗେ ନାନା ଆନନ୍ଦ ବିନୋଦ ହାସ ପରିହାସ ମଧ ହେଉଥାଏ । ଦିନକ ଡାଏରିରେ ଲେଖାଅଛି, ''ଆହାରାନ୍ତେ ସାନ୍ତ୍ୱନା ଓ ମୁନି ସଙ୍ଗେ ଟିକେ ଖେଳା କଲି ।'' ଏ ଖେଳା ଅବଶ୍ୟ ଗୁଡ଼ାଖୁ ଖାଇବା ଅବସରରେ । ଅନନ୍ତର କୁଟୁମ୍ବ ମଧରେ ସମସ୍ତେ ଖାଇ ସାରିଲେ ସେ ଶଯ୍ୟାରେ ଚିତି ହୋଇ ଶୋଇ ନିଦ୍ରା ହେବାଯାଏ ଖଣ୍ଡେ ପୁସ୍ତକ ଧରି ପଢୁଥାନ୍ତି ଏବଂ ଭୃତ୍ୟ ପାଦ ସଂବାହନ କରୁଥାଏ । ତାହାଙ୍କର ଡାଏରି ପାଠ କଲେ ଦେଖାଯାଏ, କୌଣସି ଦିନ ତାଙ୍କର ଭଲ ନିଦ୍ରା ହୁଏନାହିଁ । ପ୍ରାୟ ଦୈନିକ ବିବରଣ ମଧରେ 'Little sleep', 'ଅନିଦ୍ରାର କଷ୍ଟ ଦାରୁଣ', 'ଦୁଇଟା ପରେ ନିଦ୍ରା', ଏହି ପ୍ରକାର ଉଲ୍ଲେଖ ଦେଖାଯାଏ । ମଧୁସୂଦନ ଜୀବନରେ ସୁନିଦ୍ରାର ସୁଖ ଅତି ଅଳ୍ପ ଦିନ ଭୋଗିଥିବେ, ତେଣୁ ସେ ପ୍ରାୟ କହିଥାନ୍ତି, ''ଯେଉଁମାନଙ୍କର ସୁନିଦ୍ରା ହୁଏ, ତାଙ୍କୁ ସ୍ୱର୍ଗବାସୀ ତୁଲ୍ୟ ଜ୍ଞାନ କରେଁ । ସୁନିଦ୍ରଲୋକ ପ୍ରତି ମୋହର ବଡ଼ ଈର୍ଷା ହୁଏ ।''

## ୧୨

ଅନେକ ସମୟରେ ରୋଗ ଯନ୍ତ୍ରଣାରେ ଛଟପଟ ହୋଇ ମଧୁସୂଦନ ପଢ଼ିବାର ଉପଯୋଗୀ ଅତି ଅଳ୍ପ ଅବସର ପାଉଥିଲେ । ସେହି ଅବସର ମଧରେ ସେ ଯେଉଁ ଯେଉଁ ପୁସ୍ତକ ପାଠ କରୁଥିଲେ, ତନ୍ମଧରେ ଅଧିକାଂଶ ଧର୍ମଗ୍ରନ୍ଥ । ଗୀତା, ବାଇବେଲ, କୋରାଣ ବ୍ୟତୀତ ଉପନିଷତ୍ ଏବଂ ବୌଦ୍ଧ ଓ ବ୍ରାହ୍ମ ଧର୍ମର ବିବିଧ ସାହିତ୍ୟ ବା ଧର୍ମଗ୍ରନ୍ଥମାନ ସେ ଏକାଧିକ ଥର ଅଧୟନ କରିଥିଲେ । ଉଲ୍ଲିଖିତ ଧର୍ମଗ୍ରନ୍ଥମାନଙ୍କ ବ୍ୟତୀତ ବିଭିନ୍ନ

ଭାଷାର ପ୍ରସିଦ୍ଧ ଗ୍ରନ୍ଥକାରମାନଙ୍କର ଯେଉଁ ଯେଉଁ ପୁସ୍ତକ ତାହାଙ୍କର ପ୍ରିୟତମ ଥିଲା, ସେଗୁଡ଼ିକର ନାମୋଲ୍ଲେଖ ଏଠାରେ କରାଗଲା ।

୧ । ଇଂରାଜୀ ଭାଷାରେ–ମାର୍ଟିନୋ (Martineau), ରସ୍କିନ୍ (Ruskin), ଇମର୍ଶନ (Emerson), ଭଏସି (Voisy), ଭିକ୍ଟର ହ୍ୟୁଗୋ (Victor Hugo), ମେଥ୍ୟୁ ଆର୍ନଲ୍ଡ (Mathew Arnold), ଆର୍ମଷ୍ଟ୍ରଙ୍ଗ୍ (Armstrong) ପ୍ରଭୃତି ମନୀଷିଗଣଙ୍କର ଦର୍ଶନୋପନ୍ୟାସ ଗ୍ରନ୍ଥ ଏବଂ ଟେନିସନ୍ (Tennyson), ଓ୍ୱାର୍ଡସ୍ୱର୍ଥ (Wordsworth), ଶେଲି (Shelly), ବ୍ରାଉନିଂ (Browning) ପ୍ରଭୃତି ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କର କାବ୍ୟ-ସାହିତ୍ୟ ଗ୍ରନ୍ଥ ।

୨ । ସଂସ୍କୃତ ଭାଷାରେ ଭବଭୂତିଙ୍କର ଉତ୍ତର ଚରିତ[୧] ଓ ମାଳତୀ ମାଧବ, କାଳିଦାସଙ୍କର ରଘୁବଂଶ ଓ ଅଭିଜ୍ଞାନଶକୁନ୍ତଳ, ବାଲ୍ମୀକି ରାମାୟଣ ଓ ଶ୍ରୀମଦ୍‌ଭାଗବତ ଏବଂ ବେଦାନ୍ତ ଦର୍ଶନ ଗ୍ରନ୍ଥ ।

୩ । ବଙ୍ଗ ଭାଷାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ମାଇକେଲ ମଧୁସୂଦନ ଦତ୍ତ, ଭୂଦେବଚନ୍ଦ୍ର ମୁଖୋପାଧ୍ୟାୟ ଏବଂ ରବୀନ୍ଦ୍ରନାଥ ଠାକୁରଙ୍କର ବିବିଧ ରଚନାବଳୀ ।

୪ । ହିନ୍ଦୀ ଭାଷାରେ ତୁଳସୀ ଦାସଙ୍କ ରାମାୟଣ ଓ ଦୋହାଁବଳୀ ।

୫ । ଓଡ଼ିଆ ଭାଷାରେ ଶାରଳା ଦାସଙ୍କ ମହାଭାରତ, ଜଗନ୍ନାଥ ଦାସଙ୍କ ଶ୍ରୀମଦ୍ ଭାଗବତ, ଦୀନକୃଷ୍ଣଙ୍କ ରସକଲ୍ଲୋଳ ଏବଂ ବଳରାମ ଦାସଙ୍କ ରାମାୟଣ ।

୬ । ମହାରାଷ୍ଟ୍ର ଭାଷାରେ ଭକ୍ତ ତୁକାରାମଙ୍କର ଉପଦେଶାବଳୀ ଏବଂ ଆଧୁନିକ କେତେକ ପଣ୍ଡିତଙ୍କର ରଚନାବଳୀ ।

ଏ ତ ଗଲା ଦୈନିକ ଅଧ୍ୟୟନ । ତାହାଙ୍କର ଦୈନିକ ପ୍ରାର୍ଥନା କିପରି ଉଚ୍ଚ ଶ୍ରେଣୀର ଥିଲା, ତହିଁର ଆଭାସ ଏଠାରେ ପ୍ରଦାନ କରିବୁଁ । ସେଥିରୁ ପାଠକମାନେ ଭକ୍ତ ହୃଦୟର ମେରୁପ୍ରତିମ ଉଚ୍ଚ ଭାବରାଶିର ସୁନ୍ଦର ପରିଚୟ ପାଇବେ । * "୪-୨-୧୧-ଶନିବାର-ଶ୍ରୀପଞ୍ଚମୀ–My birth day observed to-day. Divine Service with family from 11.½ A.M. 1.½ P.M. କି ଘୋର ସଙ୍କଟ ସ୍ଥଳରେ ଆଜି ମୁଁ ଉପସ୍ଥିତ ହୋଇଅଛି ! ମୋହର ପାଷଣ୍ଡ ଜୀବନର ସଂକୀର୍ଣ୍ଣ ବିକାର ମୋତେ କି ନୈରାଶ୍ୟମୟ ଭୟାବହ ସ୍ଥଳକୁ

(୧) ଉତ୍ତର ରାମ ଚରିତ (ସଂ)

* ଦୈନିକ ଲିପିରୁ ଉଦ୍ଧୃତ । ଲେ.

ଆଣିଅଛି । ପର୍ବତର ସାନୁମଞ୍ଚର ପ୍ରାନ୍ତରେ ମୁଁ ଦଣ୍ଡାୟମାନ—ଅତଳ ରସାତଳରେ ପତନର ଶଙ୍କା ଉପସ୍ଥିତ । ପଡ଼ିଲି-ପଡ଼ିଲି ବୋଲି ପ୍ରାଣ ଭୟରେ ଥରୁଅଛି । ହେ ପ୍ରଭୋଃ ! ଏ ଘୋର ସଙ୍କଟରେ ତୁମ୍ଭେ ମୋ ସମ୍ମୁଖରେ ଆଶା ଅଭୟର ମହାମହୋତ୍ସବରୂପେ ବିରାଜିତ । ମୋତେ ପତନରୁ ରକ୍ଷା କରିବାପାଇଁ ପ୍ରତ୍ୟକ୍ଷ ପରିତ୍ରାଣ ରୂପେ ଉପସ୍ଥିତ ହୋଇଅଛ । ହେ ପ୍ରଭୋ ! ଧନ୍ୟ ତୁମ୍ଭର ନାମ । ଉଦ୍ଧାର କର ପ୍ରଭୋ । ଉଦ୍ଧାର କର । (Divine Service with family in the evening) ମୋତେ ଏ ଯୁଗରେ ଏ ଦେଶରେ ଜନ୍ମଦେଇ ହେ ଜନ୍ମଦାତା, କେତେ ସୁଯୋଗ—କେତେ ସୌଭାଗ୍ୟ ମଧ୍ୟରେ ରଖିଅଛ । ଅତୀତର ଓ ବର୍ତ୍ତମାନର କେତେ ମହାଶିକ୍ଷା, ଏ ଦେଶର ଓ ବିଦେଶର କେତେ ଜ୍ଞାନ ପ୍ରେମର ସମ୍ବାଦ ସାଧୁ ସାଧ୍ୱୀ ଭକ୍ତ ମହାତ୍ମାମାନଙ୍କର କେତେ ପୁଣ୍ୟୋଜ୍ଜ୍ୱଳ ଚରିତ୍ର, ଆତ୍ମୀୟ ସ୍ୱଜନ ବନ୍ଧୁବାନ୍ଧବଙ୍କର କେତେ ସ୍ନେହ ଦୟା ଦ୍ୱାରା ମୋର ଏ କ୍ଷୁଦ୍ର ଜୀବନକୁ ତୁମ୍ଭର ଶ୍ରେୟୋମାର୍ଗରେ ତୁମ୍ଭର ଆନନ୍ଦାମୃତଶାନ୍ତିଧାମକୁ ଯିବାପାଇଁ ଅନୁକ୍ଷଣ ଡାକୁଅଛ ।''

(ଅନ୍ୟତ୍ର) ''ହେ ପ୍ରାଣେଶ୍ୱର ! ଏ ଆତ୍ମାକୁ ସେହି ଦିବ୍ୟ ଭାବରେ ଅନୁପ୍ରାଣିତ କର, ଯଦ୍ୱାରା ଏ ଜୀବନ ଚରିତ୍ର ନବୀଭୂତ ହେବ । ଦିବ୍ୟ ଦୃଷ୍ଟି ପ୍ରତି ଅପାର୍ଥିବ ଆଶା ଜ୍ୱଳନ୍ତ ବିଶ୍ୱାସ ଐକାନ୍ତିକ ଉତ୍ସାହପୂର୍ଣ୍ଣ ଇଚ୍ଛା ଦିଅ । ହେ ପ୍ରଭୋ ! ହେ ନାଥ ! ତୁମ୍ଭରି ସୌନ୍ଦର୍ଯ୍ୟ ଓ ଶକ୍ତି ଏ ଜୀବନରେ ଅନୁପ୍ରବିଷ୍ଟ ହୋଇ ଏ ଆତ୍ମାକୁ ନବତର ଶୋଭା ଓ ଶକ୍ତିରେ ପୂର୍ଣ୍ଣ କରୁ ।''

''ନାଥ ! ଆଉ ସ୍ୱେଚ୍ଛାଚାରିତା ଭଲ ଲାଗୁନାହିଁ । ଏବେ ମୋତେ ତୁମ୍ଭ ଇଚ୍ଛାର କ୍ରୀତଦାସ କର ।''

ଭଗବାନଙ୍କଠାରେ ଆତ୍ମସମର୍ପଣ ହିଁ ଭକ୍ତର ଚରମ ଭକ୍ତି । ସାଧୁ ଭକ୍ତ ଯାହା କିଛି ସତ୍‌କ୍ରିୟା କରନ୍ତି, ସେ ସବୁ ଭଗବାନଙ୍କ ନାମରେ; ସେଥିରେ କିଛି ମାତ୍ର ଅହଂକାରିତା ଲକ୍ଷିତ ହୁଏନାହିଁ । 'ଅହଂ କରୋମୀତି ବୃଥାଭିମାନଃ' ବର୍ଜନ କରିବାରେ କ୍ରମଶଃ ଅଗ୍ରସର ହେଉଁ ହେଉଁ ସାଧକ ଯେତେବେଳେ ଆତ୍ମାର ସ୍ୱାତନ୍ତ୍ର୍ୟ ଏକାବେଳକେ ଭୁଲିଯାଏ ତେତେବେଳେ ତାହାର ସାଧନାର ଚରମୋତ୍କର୍ଷ । ତେତେବେଳେ ସେ ଦୃଢ଼ଜ୍ଞାନ ସହକାରେ ପ୍ରକାଶ କରେ—'ତ୍ୱୟା ହୃଷୀକେଶ ହୃଦି ସ୍ଥିତେନ ଯଥା ନିଯୁକ୍ତୋଽସ୍ମି କଥା କରୋମି ।' କିନ୍ତୁ ଅତ୍ୟନ୍ତ ଆକ୍ଷେପର ବିଷୟ ଯେ, ଏ ଯୁଗରେ ଏ ସତ୍ୟର ଯଥେଷ୍ଟ ଅପଳାପ ଦେଖାଯାଏ । ଆଜିକାଲି ଛୋଟ ମୁହଁରେ ବଡ଼ କଥା ବହୁତ ଶୁଣିବାକୁ ମିଳେ । ଘୋର ଦୁଷ୍କୃତି ମଧ୍ୟ ଆତ୍ମପକ୍ଷ ସମର୍ଥନ ଲାଗି ଭକ୍ତର ସେ ମହାବାଣୀ ଉଚ୍ଚାରଣ କରି

ସ୍ୱକୃତ ଦୁଷ୍କ୍ରିୟାରେ ପ୍ରଶ୍ରୟ ପାଏ । କିନ୍ତୁ ଏ ବାକ୍ୟର ପ୍ରକୃତ ଅଧିକାରୀ ସମାଜ ମଧ୍ୟରେ କେତେ ଜଣ ?

ମଧୁସୂଦନଙ୍କର ଆତିଥେୟତା ପ୍ରଶଂସନୀୟ ଥିଲା । ମାନ୍ଦ୍ରାଜ, ବୋମ୍ବାଇ, ଲାହୋର ଏବଂ ବଙ୍ଗଳାର ପ୍ରସିଦ୍ଧ ସ୍ଥାନମାନଙ୍କରୁ ନାନା ସମ୍ପ୍ରଦାୟର ବନ୍ଧୁ କାର୍ଯ୍ୟତଃ ବା ଭ୍ରମଣ ଉପଲକ୍ଷରେ ଆସି ତାହାଙ୍କ ଗୃହରେ ଆତିଥ୍ୟ ସ୍ୱୀକାର କରୁଥିଲେ । ବନ୍ଧୁଙ୍କ ଆଗମନ ସମ୍ବାଦ ପାଇଲାକ୍ଷଣି ସେ ସୁସ୍ଥ ଥିବାବେଳେ ନିଜେ ଷ୍ଟେସନକୁ ଯାଇ ବନ୍ଧୁଙ୍କୁ ପାଛୋଟି ଆଣୁଥିଲେ ଏବଂ ଗୃହରେ ତାଙ୍କର ତତ୍ତ୍ୱାବଧାନ ଭାର ଅନ୍ୟ ଉପରେ ନ ଦେଇ ନିଜେ ସବୁ ବୁଝୁଥିଲେ । ବନ୍ଧୁଙ୍କ ଅନେକ ବ୍ୟବହାର୍ଯ୍ୟ ଦ୍ରବ୍ୟ ଭୃତ୍ୟ ହସ୍ତରେ ନ ଅଣାଇ ନିଜେ ହାତରେ ଧରି ଉପସ୍ଥିତ ହେଉଥିଲେ । ଏହି ସେବାଗୁଣରେ ଅଭ୍ୟାଗତ ବନ୍ଧୁମାନେ ଏପରି ମୁଗ୍ଧ ହେଉଥିଲେ ଯେ, ଦିନେ ଦୁଇ ଦିନର ସେହି ମାୟାବନ୍ଧନକୁ ଅନାୟାସରେ ତୁଟି ପାରୁ ନ ଥିଲେ । ତାଙ୍କଠାରେ ସ୍ନେହଗୁଣଟା ଟିକିଏ ବିଶିଷ୍ଟ ମାତ୍ରାରେ ଥିଲା । ତେଣୁ ସେ ଆତ୍ମୀୟ ବନ୍ଧୁମାନଙ୍କର ଚିର ବିଚ୍ଛେଦଶଂସୀ ବିଦାୟ ସମୟରେ ହଠାତ୍ ଅଶ୍ରୁ ବିସର୍ଜନ କରି ପକାଉଥିଲେ । ସ୍ନେହାଧାର ପୁତ୍ରର ବିଦେଶ ଗମନ ଏବଂ କନ୍ୟାମାନଙ୍କ ଶ୍ୱଶୁରାଳୟ ଗମନ କାଳରେ ସେ ଯେତେ ଅଶ୍ରୁ ବିସର୍ଜନ କରିଥାନ୍ତି, ତାହା ଗର୍ଭଧାରିଣୀ ଜନନୀଙ୍କ ରୋଦନ ଅପେକ୍ଷା ବିରଳ ନୁହେ । ରୋଗଶଯ୍ୟାରେ ସେମାନଙ୍କ ସେବା ଶୁଶ୍ରୁଷାରେ ମଧ୍ୟ ସେ ଜନନୀ ଅପେକ୍ଷା କେବେହେଁ ଊଣା ନ ଥିଲେ । ସମସ୍ତ ରାତ୍ରି ଜାଗରଣ ପୂର୍ବକ ପଥ୍ୟ ଓ ଔଷଧ ପ୍ରଦାନରେ ସେ ଆପଣାକୁ ନିୟୋଜିତ କରୁଥିଲେ । ଆଶ୍ରିତ ଛାତ୍ରମାନଙ୍କ ପ୍ରତି ମଧ୍ୟ ଏହିପରି ବ୍ୟବହାର କରିଥିବାର ଦେଖାଯାଇଅଛି । କୁଟୁମ୍ବ ମଧ୍ୟରେ କାହାରି କାହାରି ସାଂଘାତିକ ପୀଡ଼ା ଏବଂ ଯାପ୍ୟ ରୋଗର ଚିକିତ୍ସାରେ ସେ ଏହିପରି କଷ୍ଟ ସହି ଆପଣାର ସ୍ୱାସ୍ଥ୍ୟ ମଧ୍ୟ ହରାଇଥିଲେ । ନିଜ ରୋଗର ଉପସର୍ଗ ଯେତେ ବଢୁ ପଛକେ, ସେଥିପାଇଁ ବିନ୍ଦୁ ବିସର୍ଗ ଭାବନା କରୁ ନ ଥିଲେ । କୌଣସି ବନ୍ଧୁ ରୁଗ୍‌ଣ ହେବାର ଶୁଣିଲେ ଆରୋଗ୍ୟଲାଭ ପର୍ଯ୍ୟନ୍ତ ସେ ପ୍ରାୟ ପ୍ରତିଦିନ ତାଙ୍କ ଘରକୁ ଯାଉଥିଲେ ଏବଂ ଚିକିତ୍ସା ବିଷୟରେ ପରାମର୍ଶ କରୁଥିଲେ । ଆତୁର ସେବା ତାଙ୍କର ଗୋଟିଏ ପ୍ରିୟ କାର୍ଯ୍ୟ ଥିଲା । ପ୍ରତିବାସୀ ଦରିଦ୍ର ଲୋକମାନଙ୍କୁ ରୋଗ ସମୟରେ ଔଷଧ ବିତରଣ କରିବା ଲାଗି ସେ ହୋମିଓପାଥିକ ଔଷଧମାନ କିଣି ପାଖରେ ସର୍ବଦା ରଖୁଥାନ୍ତି । ବିସୂଚିକା ସମୟରେ ସେ ଔଷଧ ବିତରଣ ସଙ୍ଗେ ହରିନାମର ପ୍ରଚାର କରାଉଥିଲେ । ମୁମୂର୍ଷୁ କଣ୍ଠରୁ 'ଦୟାମୟ ଶ୍ରୀହରି' ଉଚ୍ଚାରଣକୁ ସେ ପରମ ଆଶ୍ୱାସନା ମନେ କରୁଥିଲେ । ଦୁଃଖିର ଦୁଃଖ– ଦରିଦ୍ରର ଦାରିଦ୍ର୍ୟ ଦେଖି ତାଙ୍କର ହୃଦୟ ସ୍ୱତଃ ଦୟାପ୍ରବଣ ହୋଇଥାଏ ଏବଂ ତାହା ଯଥାଶକ୍ତି

ଦୂର କରିବା ଲାଗି ସେ ପ୍ରାଣରେ ବ୍ୟାକୁଳତା ଅନୁଭବ କରିଥାନ୍ତି । ଦରିଦ୍ରକୁ ସାହାଯ୍ୟ କରିବାରେ ତାଙ୍କ ହସ୍ତ କେବେ ସଙ୍କୁଚିତ ଥିବାର ଦେଖାଯାଇ ନାହିଁ । ନାନା ଶ୍ରେଣୀର ଲୋକ ତାଙ୍କ ନିକଟରେ ସାହାଯ୍ୟପ୍ରାର୍ଥୀ ହୋଇ ଉପସ୍ଥିତ ହେଉଥିଲେ । ଆଶ୍ରିତ, ତ୍ୟକ୍ତ ଅନୁଜୀବୀ ଏବଂ ପ୍ରତିବେଶୀ ଦରିଦ୍ରମାନଙ୍କ ମଧ୍ୟରୁ ଅନେକେ ତାହାଙ୍କଠାରୁ ନିୟମିତରୂପେ ସାହାଯ୍ୟ ପାଉଥିଲେ । ସେମାନଙ୍କୁ ଛାଡ଼ି ଅନେକ ଦୀନହୀନ ଅକର୍ମଣ୍ୟ ଚିର ରୋଗକ୍ଲିଷ୍ଟ ବ୍ୟକ୍ତି ମଧ୍ୟ ସାମୟିକ ସାହାଯ୍ୟ ପାଇ ଚଳୁଥିଲେ । ଏମାନଙ୍କ ପ୍ରତି ତାଙ୍କର ଏତେ ସ୍ନେହ ଥିଲା ଯେ, ମରଣମୁହୂର୍ତ୍ତରେ ସୁଦ୍ଧା ସେମାନଙ୍କ କଥା ବିସ୍ମରଣ କରି ନ ଥିଲେ । ଟ୍ରେନିଂ ସ୍କୁଲର ଅଧ୍ୟକ୍ଷ ଥିବା ସମୟରେ ଦରିଦ୍ର ଛାତ୍ରମାନଙ୍କର ସାହାଯ୍ୟ ନିମିତ୍ତ ସେ ଗୋଟିଏ ଦରିଦ୍ର ପାଣ୍ଠି [Poor Fund] ସ୍ଥାପନ କରି ପ୍ରଥମେ ୧୦୦ ଟଙ୍କା ପ୍ରଦାନ କରିଥିଲେ । ସେତେବେଳେ ତାଙ୍କର ମାସିକ ବେତନ ଦୁଇଶତ ଟଙ୍କା ମାତ୍ର । ସହଯୋଗୀ ଶିକ୍ଷକ ପ୍ରଭୃତିଙ୍କର ମାସିକ ଭେଦା ଏବଂ ବଦାନ୍ୟ ରାଜା ବା ଧନାଢ଼୍ୟ ବ୍ୟକ୍ତିଙ୍କ ଏକକାଳୀନ ଦାନରେ ଏହି ପାଣ୍ଠିକୁ ପୁଷ୍ଟ କରି ସେ ଅନେକ ଦରିଦ୍ର ଏବଂ ବୃତ୍ତିରୁ ବଞ୍ଚିତ ଛାତ୍ରମାନଙ୍କ ସାହାଯ୍ୟ ବିଧାନ କରିପାରୁଥିଲେ । ଏହା ବ୍ୟତୀତ ଏ ନଗରସ୍ଥ ବିଭିନ୍ନ ବିଦ୍ୟାଳୟର ଅନେକ ଛାତ୍ରଙ୍କୁ ସେ ସ୍ୱହସ୍ତରୁ ମାସିକ ସାହାଯ୍ୟ ପ୍ରଦାନ କରି ସେମାନଙ୍କ ଶିକ୍ଷାପଥ ସୁଗମ କରି ଦେଉଥିଲେ । ଅଧୀନସ୍ଥ ଭୃତ୍ୟମାନଙ୍କ ପ୍ରତି ତାଙ୍କର ଯେ ଦୟା ଥିଲା, ତାହା ଆଧୁନିକ ସମାଜରେ ଦୁର୍ଲଭ । କାର୍ଯ୍ୟକ୍ଷେତ୍ରରେ ଭୃତ୍ୟର ଦୋଷ ଦେଖି ସେ ମଧ୍ୟ ଅର୍ଥ ଦଣ୍ଡ ବିଧାନ କରୁଥିଲେ; କିନ୍ତୁ ବିଶେଷତ୍ୱ ଏହି ଯେ, ବେତନ ପାଇବା ବେଳେ ତାହାର ସେହି ଦେୟ ଅର୍ଥକୁ ସ୍ୱହସ୍ତରୁ ପ୍ରଦାନ କରୁଥିଲେ । ତାହାଛଡ଼ା କାହାକୁ ମାସରେ ଟଙ୍କାଏ, କାହାକୁ ଆଠ ଅଣା ଦିଆଯାଏ । କେବେ କ୍ରୋଧ ବା ବିରକ୍ତିରେ ଭୃତ୍ୟକୁ ତିରସ୍କାର କରିଥିଲେ ପରକ୍ଷଣରେ ପୁଣି ତାକୁ ଡାକି ଆପଣାର ଦୋଷ ସ୍ୱୀକାର କରୁଥିଲେ । ପରକ୍ଷଣରେ ସେ ଭୃତ୍ୟ ସକମ୍ପ କଳେବରରେ ଯେଉଁ ମୂର୍ତ୍ତି ଦେଖିଥାଏ, ତତ୍‌ପରକ୍ଷଣରେ ସେ ସସ୍ମିତ ମୁଖରେ ଶାନ୍ତମୂର୍ତ୍ତି ଦେଖି ଶୁଣି ପ୍ରସନ୍ନ ମନରେ ଚାଲିଯାଏ । କେବେ କେବେ ଭୃତ୍ୟ ପ୍ରତି କଟୁ ବ୍ୟବହାର କରିଥିଲେ ସେ ଏହିରୂପେ କ୍ଷମା ଭିକ୍ଷା ମଧ୍ୟ କରିଥାନ୍ତି । ''ଦେଖ ! ତୁମେ ମୋ ଠାରୁ ବୟସରେ ବଡ଼ । କାର୍ଯ୍ୟରେ ହେଳା କରିଥିବାରୁ ରାଗରେ ଗାଳି ଦେଲି, କିନ୍ତୁ ତୁମ ମନରେ ବଡ଼ କଷ୍ଟ ହୋଇଥିବ, ଅତଏବ ମୋତେ କ୍ଷମା ଦିଅ ।'' ଏଠାରେ ଗୋଟିଏ ଘଟନା ମନେ ପଡ଼ିଲା–ସେଥିରୁ ତାହାଙ୍କ ଭୃତ୍ୟ ବାତ୍ସଲ୍ୟର ସୁସ୍ପଷ୍ଟ ପରିଚୟ ମିଳିବ । ଏକ ସମୟରେ ମଫସଲର ଗୋଟିଏ ଲୋକ ତାଙ୍କ ପାଖରେ ଆସି ନୂଆ ଚାକିରି କଲା । କିଛି ଦିନ ପରେ ତାହାଙ୍କ ନିଜ କନ୍ୟାଙ୍କ ଗଳାରୁ ସୁନାର ହାରଟି

କିଏ କାଟି ନେବାରୁ ଚାରିଆଡ଼େ ଖୋଜା ପଡ଼ିଲା । ଅନେକେ ସେହି ନୂଆ ଚାକର ଉପରେ ସନ୍ଦେହ କଲେ । କିନ୍ତୁ ଗୃହକର୍ତ୍ତା ସମସ୍ତଙ୍କୁ ବାରଣ କରି କହିଲେ, କାହାର ପ୍ରତି ଆମ୍ଭର ସନ୍ଦେହ କରିବା ଉଚିତ୍ ନୁହେ ଏବଂ ଏ ସମ୍ବାଦ ପୁଲିସକୁ ମଧ୍ୟ ଦିଆଯିବ ନାହିଁ । କାରଣ ସେମାନେ କିଛି ନ ବୁଝି ଆଗେ ଭୃତ୍ୟମାନଙ୍କ ଉପରେ ଅତ୍ୟାଚାର କରନ୍ତି । କିନ୍ତୁ ଘଟନାକ୍ରମେ ପୁଲିସ କର୍ମଚାରୀ ଲୋକମୁଖରୁ ଶୁଣିପାରି ବାବୁ ସ୍କୁଲକୁ ବାହାରିବା ସମୟରେ ଆସି ଦ୍ୱାର ଦେଶରେ ଉପସ୍ଥିତ ହେଲେ । ତାଙ୍କୁ ଦେଖି ଗୃହସ୍ୱାମୀ କହିଲେ, ''ଆମ୍ଭ ଘରେ ଚୋରି ଯାଇଛି ସତ୍ୟ, ମାତ୍ର ଆମ୍ଭର କାହାରିଠାରେ ସନ୍ଦେହ ନାହିଁ । କିନ୍ତୁ କର୍ମଚାରୀ ଅନୁରୋଧ କଲେ, ମୁଁ ଖାଲି ସେ ଚାକରକୁ ଟିକିଏ ପଚାରି ଦେଇ ଛାଡ଼ିଦେବି । ଅତ୍ୟନ୍ତ ଅନିଚ୍ଛା ଏବଂ କଷ୍ଟରେ ସେ ସ୍ୱୀକୃତ ହୋଇ ଚାଲିଗଲେ । ଏଣେ କର୍ମଚାରୀ ସେ ଭୃତ୍ୟକୁ ଥାନାକୁ ନେଇ ଯଥାସମ୍ଭବ ତାଡ଼ନାରେ କିଛିମାତ୍ର ତ୍ରୁଟି କଲେନାହିଁ ଏବଂ ସେଠାରେ ପ୍ରହାରାଧ୍ୟାୟ ସମାପ୍ତ କରି ଚାରିଟା ବେଳକୁ ଛାଡ଼ିଦେଲେ । ମଧୁସୂଦନ କାର୍ଯ୍ୟରେ ଫେରି ଆସି ଘରେ ଦେଖିଲେ ଯେ, ଭୃତ୍ୟଟି ମା ବାପଙ୍କର ସ୍ମରଣ ସହ ରୋରୁଦ୍ୟମାନ—କଠୋର ପାଦୁକା ପ୍ରହାରରେ ତାହା ପିଠିରେ କେତୋଟି ନୂତନ ପଠା ଉଠିଅଛି । ପୁଲିସର ଏ ପ୍ରକାର ବ୍ୟବହାରରେ ସେ ଅତୀବ କ୍ଷୁର୍ଣ୍ଣ ହୋଇ ତତ୍କ୍ଷଣାତ୍ ଭୃତ୍ୟ ପାଖରେ ବସି ବେଦନା ସ୍ଥାନମାନ ଆଉଁଶି ଦେଇ କହିଲେ, ''ବାବୁରେ ! ମୋହର କିଛି ଦୋଷନାହିଁ—ମୁଁ ଏତେ ମନାକଲେ ସୁଦ୍ଧା ସେମାନେ ନ ମାନି ଘରୁ ଡାକିନେଇ ତୋତେ ଏପରି କଷ୍ଟ ଦେଲେ ! ତୁ ମୋହ ଉପରେ ବିରକ୍ତ ହେବୁ ନାହିଁ ।'' ଇତ୍ୟାଦି ପ୍ରକାରେ ନାନା ପ୍ରବୋଧ ଦେଲେ ସୁଦ୍ଧା, ଭୃତ୍ୟ ଆଉ ରହିବାକୁ ଇଚ୍ଛା କଲା ନାହିଁ । ତହୁଁ ସେ ନୂତନ ବସ୍ତ୍ର ଓ କିଛି ଟଙ୍କା ପୁରସ୍କାର ଦେଇ ସେ ଭୃତ୍ୟକୁ ସାଦରେ ବିଦାୟ ପ୍ରଦାନ କଲେ । ମଧୁସୂଦନଙ୍କର ଏହି ସ୍ନେହ ଦୟା ଗୁଣ ଏବଂ ଲୋକହିତୈଷଣା ଦେଖି ଅନେକେ ତାହାଙ୍କୁ ଉତ୍କଳରେ ଦୟାର ସାଗର ବିଦ୍ୟାସାଗରଙ୍କ ଆସନ ପ୍ରଦାନ କରିଅଛନ୍ତି । ବଙ୍ଗର ସୁପରିଚିତ ପଣ୍ଡିତ ଶିବନାଥ ଶାସ୍ତ୍ରୀଙ୍କ ପୂଜନୀୟ ପିତା ପଣ୍ଡିତ ହରାନନ୍ଦ ବିଦ୍ୟାସାଗର (ବିଦ୍ୟାସାଗରଙ୍କର ଜଣେ ଗୁଣାନୁରକ୍ତ ବନ୍ଧୁ) ଯେତେବେଳେ ଜଗନ୍ନାଥ ଦର୍ଶନ ଉପଲକ୍ଷରେ ଆସି ଏଠାରେ ମଧୁସୂଦନଙ୍କର ପ୍ରଥମ ପରିଚୟ ଲାଭ କରିଥିଲେ, ତେତେବେଳେ ସେ ଏହାଙ୍କ ଗୁଣରେ ମୁଗ୍ଧ ହୋଇ 'ଉତ୍କଳର ବିଦ୍ୟାସାଗର' ଆଖ୍ୟା ପ୍ରଦାନ କରିଥିଲେ ଏବଂ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କାଳରେ କଲିକତାଠାରେ ତାହାଙ୍କର ପୌତ୍ରବଧୂ ଶ୍ରୀମତୀ ଅବନ୍ତୀ ଦେବୀଙ୍କୁ ଡାକି କହିଥିଲେ, ''ମୁଁ ବଙ୍ଗ ଦେଶରେ ଜଣେ ବିଦ୍ୟାସାଗର ଦେଖିଥିଲି । ଏଥର ଉତ୍କଳର ବିଦ୍ୟାସାଗରଙ୍କୁ ଦେଖି ଆସିଲି । ମୁଁ ତୁମ୍ଭର ପିତାଙ୍କୁ ଦ୍ୱିତୀୟ ବିଦ୍ୟାସାଗର ଆଖ୍ୟା ପ୍ରଦାନ କରିଅଛି ।''

ମଧୁସୂଦନଙ୍କ ପରି ସାଧୁ, ସରଳ ଓ ମୁକ୍ତ ହୃଦୟ ବ୍ୟକ୍ତି କୋଟିକେ ଗୋଟିଏ ମିଳିବା କଷ୍ଟ । ତାହାଙ୍କ ହୃଦୟ ଅତି ପ୍ରଶସ୍ତ ଏବଂ ନିର୍ମଳ ଭାବରେ ପୂର୍ଣ୍ଣ ଥିଲା । କୌଣସି ପ୍ରକାର ସଂକୀର୍ଣ୍ଣତା ବା ବିଦ୍ୱେଷଭାବ ତାଙ୍କ ହୃଦୟରେ ସ୍ଥାନ ପାଉ ନ ଥିଲା । ହିନ୍ଦୁ ମୁସଲମାନ, ବ୍ରାହ୍ମ ଖ୍ରୀଷ୍ଟିୟାନ ବା ଓଡ଼ିଆ ବଙ୍ଗାଳୀ ଏପ୍ରକାର ଭେଦବୁଦ୍ଧି ସେ କଦାପି ପୋଷଣ କରି ନ ଥିଲେ ବରଂ ଏ ଭେଦବୁଦ୍ଧି ପରିହାର ଲାଗି ସୁବିଧା ପାଇଲେ ଶିଷ୍ୟମଣ୍ଡଳୀଙ୍କୁ ଉପଦେଶ ପ୍ରଦାନ କରୁଥିଲେ । ତେଣୁ ସେ ସର୍ବସମ୍ପ୍ରଦାୟର ଆଦର ଲାଭ କରିଥିଲେ । ସେ ହିନ୍ଦୁ ମଧ୍ୟରେ ହିନ୍ଦୁ, ମୁସଲମାନ ମଧ୍ୟରେ ମୁସଲମାନ, ବ୍ରାହ୍ମ ମଧ୍ୟରେ ବ୍ରାହ୍ମ, ଖ୍ରୀଷ୍ଟାନ ମଧ୍ୟରେ ଖ୍ରୀଷ୍ଟାନ ଥିଲେ । କୌଣସି ଧର୍ମ ପ୍ରତି ତାଙ୍କର ବିଦ୍ୱେଷ ଭାବ ନ ଥିଲା । ସେ ନିଜେ ନୈଷ୍ଠିକ ବ୍ରାହ୍ମ ହେଲେ ହେଁ ଅନ୍ୟ ଧର୍ମର ଯାହା କିଛି ସାରସତ୍ୟ ବା ନୂତନତ୍ତ୍ୱ ତାହାକୁ ଅତି ସମ୍ମାନ ସହକାରେ ହୃଦୟରେ ଧାରଣ କରୁଥିଲେ । ସତ୍ୟନିଷ୍ଠା ଏବଂ ଜ୍ୱଳନ୍ତ ବିଶ୍ୱାସ ତାହାଙ୍କ ପ୍ରାଣର ଉତ୍ସ ସ୍ୱରୂପ ଥିଲା । ଚିତା ତିଳକ କାଟିବା ଓ ପ୍ରତିମା ପୂଜିବା ଧର୍ମ ନୁହେଁ, ଏହା ତାଙ୍କର ଦୃଢ଼ ଧାରଣା ଥିଲେ ସୁଦ୍ଧା, ଯେଉଁମାନେ ଅଟଳ ବିଶ୍ୱାସ ସହକାରେ ଭକ୍ତିଭରେ ଶିବ ବିଷ୍ଣୁ ପ୍ରଭୃତି ଦେବତାଙ୍କର ପୂଜା କରନ୍ତି, ସେମାନଙ୍କୁ ସେ ଘୃଣା ନ କରି ବରଂ ସମ୍ମାନ କରୁଥିଲେ । ସେ ଅନେକ ସମୟରେ ସ୍ପଷ୍ଟ କହିଥାନ୍ତି–"ଯେଉଁ ଶିକ୍ଷିତମାନେ ଚିତା ତିଳକ କାଟିବା ପ୍ରଭୃତି ଧର୍ମ ନୁହେଁ ବୋଲି ବୁଝି ସୁଦ୍ଧା ସମାଜ ଡରରେ ଗତାନୁଗତିକ ଭାବରେ ଆଚରଣ କରନ୍ତି, ସେ କାପୁରୁଷମାନଙ୍କୁ ମୁଁ ଅତ୍ୟନ୍ତ ଘୃଣାକରେଁ, କିନ୍ତୁ ଯେଉଁ ଅଶିକ୍ଷିତମାନେ ତାହାକୁ ଧର୍ମ ବୁଝି ଅଟଳ ବିଶ୍ୱାସ ଓ ଗଭୀର ଭକ୍ତି ସହକାରେ ଦେବପୂଜାଦି କରନ୍ତି, ସେହିମାନଙ୍କୁ ମୁଁ ଅଧିକ ସମ୍ମାନାର୍ହ ଭାବେଁ । କାରଣ ପୂର୍ବୋକ୍ତ ଶ୍ରେଣୀର ଲୋକେ ସତ୍ୟର ଆଦର କରନ୍ତି ନାହିଁ–ଅଟଳ ଭକ୍ତି ଓ ବିଶ୍ୱାସର ସତ୍ତା ସେମାନଙ୍କ ଠାରେ ପ୍ରାୟ ଦେଖାଯାଏ ନାହିଁ । ସେମାନେ ସନ୍ତତ ଦୋଳାୟିତ ଚିତ୍ତ ଏବଂ ସ୍ୱେଚ୍ଛାଚାରୀ । ଲକ୍ଷ୍ୟଭ୍ରଷ୍ଟ ହୋଇ କିଏ କଣ କରିଯାଉଅଛି, ତାହାର ସ୍ଥିରତା ନାହିଁ । ଆମ୍ଭମାନଙ୍କର ଏ ବ୍ରାହ୍ମସମାଜରେ ମଧ୍ୟ ଅନେକ ଦୋଷ କୁସଂସ୍କାର ଅଛି ।" ମଧ୍ୟେ ମଧ୍ୟେ ଆଧୁନିକ ବ୍ରହ୍ମୋପାସନା ପଦ୍ଧତିକୁ ମଧ୍ୟ ସେ ନିନ୍ଦା କରିଥାନ୍ତି । କଥାପ୍ରସଙ୍ଗରେ କହୁ କହୁ ସେ ଆକ୍ଷେପ ସହକାରେ ପ୍ରକାଶ କରିଥାନ୍ତି, "ଆମ୍ଭମାନଙ୍କର ଏ ଉପାସନା ବେଳକୁବେଳ ପୋଷାକୀ ହୋଇ ପଡୁଅଛି ।" ଅର୍ଥାତ୍ ଗୋଟିଏ ମଧୁର ଭାଷାର ଆବରଣରେ ଆଚ୍ଛନ୍ନ ହୋଇ ସେ କ୍ରମଶଃ ତାହାର ଆଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ହରାଉଅଛି । ଆଧୁନିକ ବ୍ରାହ୍ମିକାମାନଙ୍କ ମଧ୍ୟରୁ ଅନେକଙ୍କର ସ୍ୱାଧୀନତାରେ କିମ୍ଭୂତ ସ୍ୱେଚ୍ଛାଚାରିତାର ବିକାଶ ଦେଖି ବେଳେ ବେଳେ ଅନ୍ତରରେ ତୀବ୍ର ବେଦନା ଅନୁଭବ

କରିବାର ମଧ୍ୟ ଦେଖା ଯାଇଅଛି । କିନ୍ତୁ ଯେଉଁଠାରେ ଟିକିଏ ଚରିତ୍ରର ମାଧୁରୀ ଦେଖନ୍ତି, ସେଠାରେ ଅତ୍ୟନ୍ତ ମୁଗ୍‌ଧ ଏବଂ ବଶମ୍ବଦ ହୋଇପଡ଼ନ୍ତି । ଶୁଦ୍ଧ ଚରିତ୍ର ହିଁ ତାହାଙ୍କ ଚକ୍ଷୁରେ ମଣି, ମାଣିକ୍ୟ ଠାରୁ ମୂଲ୍ୟବାନ ବସ୍ତୁ ଥିଲା । ତାହାଙ୍କର ନିର୍ମଳ ଜ୍ଞାନ ଓ ପାଣ୍ଡିତ୍ୟ ଅବଶ୍ୟ ଦେଶ ପକ୍ଷରେ ଗୌରବର ବିଷୟ; କିନ୍ତୁ ଚରିତ୍ର ମାହାତ୍ମ୍ୟରେ ସେ ଉତ୍କଳ ଭିନ୍ନ ଦେଶରେ ମଧ୍ୟ ପୂଜା ପାଇଥିଲେ । ବୋମ୍ବାଇ, ମାନ୍ଦ୍ରାଜ, ଏହ୍ଲାବାଦ, ପାଟନା ଓ ବିଶେଷତଃ ବଙ୍ଗଳାର ଅନେକ କୃତୀ ସନ୍ତାନ ତାହାଙ୍କର ଏହି ଗୁଣରେ ଆକୃଷ୍ଟ ହୋଇ ଯଥୋଚିତ ଶ୍ରଦ୍ଧା ଓ ସମ୍ମାନ ପ୍ରଦାନ କରିଥିଲେ । ବଙ୍ଗର ସୁଲେଖକ ସ୍ୱର୍ଗୀୟ ଦ୍ୱିଜେନ୍ଦ୍ରଲାଲ ରାୟ (D. L. Rai) ମଧୁସୂଦନଙ୍କର ଆଳାପ ପରିଚୟ ଲାଭରେ ଅତ୍ୟନ୍ତ ଆନନ୍ଦ ଅନୁଭବ କରିଥିଲେ ଏବଂ ତାହାଙ୍କ ଚାରିତ୍ର୍ୟ-ମହିମାରେ ମୁଗ୍‌ଧ ହୋଇ ତାହାଙ୍କୁ ''ବଙ୍ଗଳାର ଦ୍ୱିତୀୟ ରାମତନୁ ଲାହିଡୀ'' ଆଖ୍ୟା ପ୍ରଦାନ କରିଥିଲେ । କବୀନ୍ଦ୍ର ରବୀନ୍ଦ୍ରନାଥଙ୍କ ସହିତ ତାଙ୍କର ନାନା ପ୍ରସଙ୍ଗରେ ଆଲୋଚନା ହେଉଥିଲା ଏବଂ ଏ ଉଭୟେ ପରସ୍ପରଙ୍କୁ ଆନ୍ତରିକ ଶ୍ରଦ୍ଧା କରୁଥିଲେ । ରବିବାବୁ ମଧୁବାବୁଙ୍କ କବିତାର ମର୍ଯ୍ୟାଦା ବୁଝି ମୁକ୍ତ କଣ୍ଠରେ ପ୍ରଶଂସା କରୁଥିଲେ । ମୃତ୍ୟୁର ପୂର୍ବବର୍ଷ ମଧୁସୂଦନ ବୋଲପୁର ଆଶ୍ରମରେ ତାହାଙ୍କର ଅତିଥି ହୋଇଥିବାର ତଦୀୟ ଦୈନିକ ଲିପିରୁ ପ୍ରକାଶ ପାଉଅଛି ।

"Had a talk with Rabi Babu our host about Bengali Grammar and some literary and religious matters–Listened to some hymns of Rabi Babu's sung by Dinendra Babu. Rabi Babu is no mere poet and writer only. He has become a true saint (Rishi) also. His humility and faith, his single-hearted devotion to the work of ବ୍ରହ୍ମଚର୍ଯ୍ୟାଶ୍ରମ, his simple beautiful life impressed me as few lives have done."9.3.11.

କଲିକତାର ବ୍ରାହ୍ମବନ୍ଧୁମାନେ ତାହାଙ୍କର ଉପାସନାକୁ ମୁକ୍ତକଣ୍ଠରେ ପ୍ରଶଂସା କରିଥିଲେ ଏବଂ ସେଥିରୁ ତାହାଙ୍କୁ ଯଥାର୍ଥ ବ୍ରହ୍ମନିଷ୍ଠ ପୁରୁଷ ଜାଣି ସମ୍ମାନ ପ୍ରଦର୍ଶନ ନିମିତ୍ତ କଲିକତା ସାଧାରଣ ବ୍ରାହ୍ମ ସମାଜର ଗୋଟିଏ ବିଶେଷ ଅଧିବେଶନର ସଭାପତି ପଦରେ ବରଣ କରିଥିଲେ । ଏହି ସ୍ଥଳରେ ବଙ୍ଗର ବରପୁତ୍ର ଆନନ୍ଦମୋହନ ତାହାଙ୍କୁ 'ବ୍ରାହ୍ମସମାଜର ଗୋଟିଏ ମେରୁସ୍ତମ୍ଭ' (He is one of the pillars of the Brahma Samaj) ବୋଲି ପ୍ରକାଶ କରିଥିଲେ । ମାନ୍ଦ୍ରାଜର ଉକ୍ତ ସମାଜ ମଧ୍ୟ ତାହାଙ୍କୁ ''ଆନ୍ଧ୍ର-ଧର୍ମ ସମ୍ମିଳନୀ''ର (Andhra Theistic Conference) ସଭାପତିର ଆସନ ଗ୍ରହଣ କରିବାକୁ ଆମନ୍ତ୍ରଣ କରିଥିଲେ; କିନ୍ତୁ ସେ ଅସୁସ୍ଥ ହୋଇ ପଡ଼ିବାରୁ ସେଠାରେ ଉପସ୍ଥିତ ହୋଇପାରିଲେ ନାହିଁ । ବନାରସଠାରେ ଯେତେବେଳେ କଂଗ୍ରେସ ସଙ୍ଗେ All India Theistic

Conference (ଭାରତ ଧର୍ମ ମହାସମ୍ମିଳନୀ) ବସିବାର ପ୍ରସ୍ତାବ ହେଲା, ସେଥିରେ ମଧ ମଧୁବାବୁଙ୍କୁ ସଭାପତି ନିର୍ବାଚନ କରାଯାଇଥିଲା । ସେଥିପାଇଁ ସେ ନିଜକୁ ଅକ୍ଷମ ମଣିଥିଲେ ସୁଦ୍ଧା ଅଭିଭାଷଣର କିୟଦଂଶ ପ୍ରସ୍ତୁତ କରି ସାରିଥିଲେ; କିନ୍ତୁ ଦୁଃଖର କଥା ଯେ ପୂର୍ବୋକ୍ତ କାରଣରୁ ସେଠାକୁ ମଧ ଯାଇ ପାରିଲେ ନାହିଁ । କେବଳ ଏତିକି ନୁହେଁ, ଗତ ୧୯୧୨ ଖ୍ରୀଷ୍ଟାବ୍ଦରେ ବାଙ୍କିପୁରଠାରେ ଉକ୍ତ ସମ୍ମିଳନୀକୁ ମଧ ତାହାଙ୍କୁ ବରଣ କରାଯାଇଥିଲା ଏବଂ Sermon (ଧର୍ମାଭିଭାଷଣ) ପ୍ରସ୍ତୁତ କରିବାର ଭାର ତାଙ୍କ ଉପରେ ଅର୍ପିତ ହୋଇଥିଲା; କିନ୍ତୁ ଅଧିବେଶନ ହେବାର ୧୦ ଦିନ ପୂର୍ବେ ସେ ସଙ୍କଟ ରୋଗାକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେଲେ । ସେ ଅବସ୍ଥାରେ ସୁଦ୍ଧା ସେ ଉକ୍ତ ଅଧିବେଶନର ସଫଳତା କାମନା କରୁଥିଲେ । ମୃତ୍ୟୁର ଦୁଇଦିନ ପୂର୍ବେ ଉକ୍ତ ଅଧିବେଶନ ଦିବସ ସ୍ମରଣ କରି ସଭାକୁ ପୂର୍ଣ୍ଣ ସହାନୁଭୂତି ତାରଦ୍ୱାରା ଜଣାଇବା ପାଇଁ ଜଣେ ବନ୍ଧୁଙ୍କୁ ଆଦେଶ କରିଥିଲେ । ତିନୋଟି ମହାଯଜ୍ଞରେ ମଧୁସୂଦନଙ୍କର ରୋଗ ନିବନ୍ଧନ ଅନୁପସ୍ଥାନଦ୍ୱାରା ଉତ୍କଳର ଧର୍ମ ମର୍ଯ୍ୟାଦା ଓ ଗୌରବ କାହାଣୀ କୁତ୍ରାପି ଘୋଷିତ ହୋଇ ପାରିଲା ନାହିଁ । ଏ ଜାଗରଣ ଯୁଗରେ ଉତ୍କଳର କ୍ଷୀଣ ପ୍ରାଣରେ ସ୍ପନ୍ଦନ ହୋଇପାରିଲା ନାହିଁ । ଫଳତଃ ଉତ୍କଳ ଭାଗ୍ୟରେ ବର୍ତ୍ତମାନ ବିସର୍ଜନ ଛଡ଼ା ଆଉ ଆବାହନ କାହିଁ ? ପ୍ରତ୍ୟେକ ଉତ୍କଳପୁତ୍ରର ଏହି ଆବାହନ ଲାଗି ପ୍ରସ୍ତୁତ ହେବା ସର୍ବଥା ବାଞ୍ଛନୀୟ ।

## ୧୩

### ବ୍ରହ୍ମୋପାସନା

ବ୍ରହ୍ମୋପାସନା ମନୁଷ୍ୟ ପକ୍ଷରେ ଗୋଟିଏ ଅତି ଉଚ୍ଚ ଅଧିକାର । ଜ୍ୟୋତିର ଜ୍ୟୋତି ସେହି ଦେବାଧିଦେବ ପରମାତ୍ମାଙ୍କୁ ଅନ୍ତରରେ ଅନୁଭବ କରି ହୃଦବେଦୀରେ କୃତଜ୍ଞ ଚିତ୍ତରେ ଭକ୍ତିଭରେ ତାଙ୍କର ବନ୍ଦନା କରିବାହିଁ ମୁଖ୍ୟ ଉପାସନା । ଉପନିଷଦ୍‌କାର କହିଅଛନ୍ତି :—ସେହି ଆତ୍ମସ୍ଥିତ ଜ୍ଞେୟ ବସ୍ତୁ ବ୍ୟତୀତ ଜଗତରେ ଆଉ ଜ୍ଞାତବ୍ୟ ବସ୍ତୁ କିଛି ନାହିଁ ।

ଜ୍ୟୋତିଷାମପିତ ଜ୍ୟୋତିଃ ତମଃ ପାରେ ବ୍ୟବସ୍ଥିତଂ
ଜ୍ଞାନଂ ଜ୍ଞେୟଂ ଜ୍ଞାନଗମ୍ୟଂ ସର୍ବେଷାଂ ହୃଦି ସଂସ୍ଥିତଂ ।
ଏତଦ୍‌ଜ୍ଞେୟଂ ନିତ୍ୟମେବାତ୍ମସଂସ୍ଥଂ
ନାତଃପରଂ ବେଦିତବ୍ୟଂ ହି କିଞ୍ଚିତ୍ ।

(ଶ୍ୱେତାଶ୍ୱତର)

ସେହି ପରବ୍ରହ୍ମହିଁ ଜଗତ୍‌କର୍ତ୍ତା, ଜଗଦାଶ୍ରୟ, ସର୍ବାନ୍ତର୍ଯ୍ୟାମୀ, ଏକ ଏବଂ ଅଦ୍ୱିତୀୟ । ତାହାଙ୍କୁ "ସତ୍ୟଂ ଜ୍ଞାନମନନ୍ତଂ, ଆନନ୍ଦରୂପମମୃତଂ, ଶିବମଦ୍ୱୈତଂ, ଶୁଦ୍ଧମପାପବିଦ୍ଧଂ" ରୂପେ ପ୍ରଚାର କରିବା ବ୍ରାହ୍ମଧର୍ମର ମୁଖ୍ୟ କର୍ମ । ବ୍ରହ୍ମ କଣ, କିଂଭୂତ ବସ୍ତୁ, ତାହା ଧାରଣ କରିବା ସର୍ବକ୍ଷେତ୍ର ସୁଲଭ ନୁହେଁ । ଅବଶ୍ୟ ଜ୍ଞାନଯୋଗରୁ ସାଧନାଦ୍ୱାରା ସେହି ବ୍ରହ୍ମଦତ୍ତ ପ୍ରଜ୍ଞାରେ ପ୍ରତ୍ୟେକ ମନୁଷ୍ୟର ସେ ରୂପ-ଉପଲବ୍‌ଧିର ଅଧିକାର ଅଛି । କେବଳ ଏହି ବ୍ରହ୍ମସ୍ୱରୂପ ବର୍ଣ୍ଣନାରେ ବେଦ ବେଦାନ୍ତ ଦର୍ଶନ ଉପନିଷଦରେ ନାନା ପ୍ରମାଣ ବଚନମାନ ସ୍ଥାନ ପାଇଅଛି । ଏଠାରେ ପାଠକମାନଙ୍କର ସ୍ମରଣାର୍ଥ ଅଥବା ପ୍ରସଙ୍ଗର ସଙ୍ଗତି ନିମିତ୍ତ ଉପନିଷଦରୁ ବ୍ରହ୍ମଜ୍ଞାନ ଓ ସ୍ୱରୂପର କେତୋଟି ଶ୍ରେଷ୍ଠ ବଚନ ଉଦ୍ଧାର କରୁଅଛି । ଶ୍ୱେତାଶ୍ୱତର ଉପନିଷଦରେ :—

ଏକୋଦେବଃ ସର୍ବଭୂତେଷୁ ଗୂଢ଼ଃ
ସର୍ବବ୍ୟାପୀ ସର୍ବଭୂତାନ୍ତରାତ୍ମା ।
କର୍ମାଧକ୍ଷଃ ସର୍ବଭୂତାଧିବାସଃ
ସାକ୍ଷୀ ଚେତା କେବଳୋ ନିର୍ଗୁଣଶ୍ଚ । ୬।୧୧

ଅର୍ଥାତ୍, ସେହି ଏକ ପରମେଶ୍ୱର ସର୍ବଭୂତ ଦେହରେ ଗୂଢ଼ଭାବରେ ଅବସ୍ଥିତି କରୁଅଛନ୍ତି । ସେ ସର୍ବବ୍ୟାପୀ, ସର୍ବଭୂତର ଅନ୍ତରାତ୍ମା । ସେ ସର୍ବ କାର୍ଯ୍ୟର ଅଧକ୍ଷ, ସେ ସର୍ବଭୂତର ଆଶ୍ରୟ, ସେ ଜ୍ଞାନସ୍ୱରୂପ, ସମସ୍ତଙ୍କର ସାକ୍ଷୀ, ସଙ୍ଗରହିତ ଏବଂ ନିର୍ଗୁଣ ।

ବିଶ୍ୱତଶ୍ଚକ୍ଷୁରୁତ ବିଶ୍ୱତୋମୁଖଂ
ବିଶ୍ୱତୋବାହୁରୁତ ବିଶ୍ୱତଃପାତ୍ ।
ସଂ ବାହୁଭ୍ୟାଂ ଧମତି ସସମ୍ପତତ୍ରୈ—
ର୍ଦ୍ୟାବାଭୂମୀ ଜନୟନ୍ ଦେବ ଏକଃ । ୪।୩
ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସଭୂମିଂବିଶ୍ୱତୋବୃତ୍ୱାତ୍ୟତିଷ୍ଠତ୍ ଦଶାଙ୍ଗୁଳଂ ୩।୧୪

ଅର୍ଥାତ୍ ଯାହାଙ୍କର ଚକ୍ଷୁ, ମୁଖ, ବାହୁ ଏବଂ ପାଦ ସର୍ବତ୍ର, ସେହି ଏକ ଦେବତା ଏ ଆକାଶ ଓ ପୃଥିବୀକି ସୃଷ୍ଟି କରି ମନୁଷ୍ୟଙ୍କଠାରେ ବାହୁ ଏବଂ ପକ୍ଷୀ ପ୍ରଭୃତିଠାରେ ପକ୍ଷ ସଂଯୋଗ କରନ୍ତି ଏବଂ ତାଙ୍କର ସହସ୍ର ମସ୍ତକ, ସହସ୍ର ଚକ୍ଷୁ, ସହସ୍ର ପାଦ, ସେ ସମଗ୍ର ପୃଥିବୀକୁ ସୃଷ୍ଟି କରି (ନାଭିର) ଦଶାଙ୍ଗୁଳ ଉପରେ ଅର୍ଥାତ୍ ହୃଦୟରେ ଅବସ୍ଥାନ କରୁଅଛନ୍ତି ।

ଅପାଣିପାଦୋ ଜବନୋ ଗ୍ରହୀତା
ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା
ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତଂ । ୩।୧୯

ତାଙ୍କର ହସ୍ତ ପଦ ନାହିଁ, ତଥାପି ସେ ଗତିଶୀଳ ଏବଂ ଗ୍ରହୀତା । ଚକ୍ଷୁ ନାହିଁ, ସବୁ ଦେଖନ୍ତି, କର୍ଣ୍ଣ ନ ଥିଲେ ମଧ୍ୟ ଶୁଣନ୍ତି, ସେ ସମସ୍ତ ଜ୍ଞାତବ୍ୟ ବିଷୟ ଜାଣନ୍ତି । କିନ୍ତୁ ତାଙ୍କର କେହି ଜ୍ଞାତା ନାହିଁ । (ଯେଣୁ ସର୍ବଘଟରେ ସେ ଏକ ମାତ୍ର ଜ୍ଞାତା) ବ୍ରହ୍ମବିଦ୍‌ମାନେ ତାହାଙ୍କୁ ପ୍ରଥମ ଏବଂ ମହାନ୍ ପୁରୁଷ ବୋଲି ପ୍ରଖ୍ୟାପନ କରନ୍ତି ।

ଯାହାଙ୍କୁ ଲୋକ ବାକ୍ୟରେ ପ୍ରକାଶ କରିପାରେ ନାହିଁ, ମନରେ ଧାରଣା କରିପାରେ ନାହିଁ, ଚକ୍ଷୁରେ ଦେଖିପାରେ ନାହିଁ କିମ୍ବା କର୍ଣ୍ଣରେ ଶୁଣିପାରେ ନାହିଁ, କିନ୍ତୁ ଯାହାଙ୍କ ଯୋଗେ ବାକ୍ ଭାବ ପ୍ରକାଶର, ମନ ମନନର, ଚକ୍ଷୁ ଦର୍ଶନର ଏବଂ କର୍ଣ୍ଣ ଶ୍ରବଣର ବିଷୟ ହୁଏ, ସେହି ବ୍ରହ୍ମ । ଦେଶକାଳ ପରିଚ୍ଛିନ୍ନ ଅନ୍ୟ ଯାହାକୁ ଲୋକ ଉପାସନା କରେ, ତାହା ବ୍ରହ୍ମ ନୁହେଁ ।

ଯଦ୍ ବାଚା ନାଭ୍ୟୁଦିତଂ ଯେନ ବାଗଭ୍ୟୁଦ୍ୟତେ ।
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂ ଯଦିଦମୁପାସତେ ।
ଯନ୍ମନସା ନ ମନୁତେ ଯେନାହୁର୍ମନୋମତଂ ।
ଯତ୍‌ଚକ୍ଷଣା ନ ପଶ୍ୟତି ଯେନ ଚକ୍ଷୂଂଷି ପଶ୍ୟତି ।
ଯତ୍ ଶ୍ରୋତ୍ରେଣ ନ ଶୃଣୋତି
ଯେନ ଶ୍ରୋତ୍ରମିଦଂ ଶ୍ରୁତଂ ।
ତଦେବ ବ୍ରହ୍ମ ତ୍ୱଂ ବିଦ୍ଧି ନେଦଂଯଦିଦମୁପାସତେ ।

କେନୋପନିଷଦ୍ ।

ସେହି ବ୍ରହ୍ମ ଅରୂପ ହୋଇ ମଧ୍ୟ ଅନନ୍ତ ରୂପ, ସର୍ବହୃଦୟସ୍ଥ ହୋଇ ମଧ୍ୟ ନିର୍ଲିପ୍ତ । ଯେପରି ଅଗ୍ନି ଏବଂ ବାୟୁ ସଂସାରରେ ଆଧାରବସ୍ତୁ ଭେଦରେ ତତ୍ ତତ୍ ଭିନ୍ନ ରୂପ ଧାରଣ କରେ, ସର୍ବଭୂତର ସେହି ଅନ୍ତରାତ୍ମା ମଧ୍ୟ ସେହିପରି ନାନା ବସ୍ତୁ ଭେଦରେ ନାନା ରୂପ ଧାରଣ କରନ୍ତି । ସର୍ବଲୋକ ଚକ୍ଷୁ ସୂର୍ଯ୍ୟ ଯେପରି ଚାକ୍ଷୁଷ ଦୂଷିତ ଦ୍ରବ୍ୟଦୋଷରେ କଦାପି ଲିପ୍ତ ହୁଏ ନାହିଁ, ସେ ଆତ୍ମା ସେହିପରି ଲୋକମାନଙ୍କ ଦୁଃଖ ସହିତ ଲିପ୍ତ ହୁଅନ୍ତି ନାହିଁ । ଅପିଚ ସର୍ବଭୂତଙ୍କର ବାହାରେ ଅବସ୍ଥିତ ଥାନ୍ତି । କଠୋପନିଷଦର ବଚନ ଏହି :—

ଅଗ୍ନିର୍ଯଥୈକୋ ଭୂବନଂ ପ୍ରବିଷ୍ଟୋ
ରୂପଂ ରୂପଂ ପ୍ରତିରୂପୋ ବଭୁବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା
ରୂପଂ ରୂପଂ ପ୍ରତିରୂପୋ ବହିଷ୍ଚ । ୨।୯
ବାୟୁର୍ଯଥୈକୋ ଭୁବନଂ ପ୍ରବିଷ୍ଟୋ
ରୂପଂ ରୂପଂ ପ୍ରତିରୂପୋ ବଭୁବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା
ରୂପଂ ରୂପଂ ପ୍ରତିରୂପୋ ବହିଷ୍ଚ । ୨।୧୦
ସୂର୍ଯ୍ୟୋ ଯଥା ସର୍ବଲୋକସ୍ୟ ଚକ୍ଷୁ
ର୍ନଲିପ୍ୟତେ ଚାକ୍ଷୁଷୈର୍ବାହ୍ୟଦୋଷୈଃ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା
ନ ଲିପ୍ୟତେ ଲୋକଦୁଃଖେନ ବାହ୍ୟଃ । ୨।୧୧

ସେହି ଆତ୍ମା ଅନ୍ତରରେ ଏବଂ ବାହାରରେ, ଦୂରରେ ସେହି, ନିକଟରେ ସେହି, କବିଙ୍କ ଭାଷାରେ—

''ଦେଶକାଳାତୀତ ଦୃଶ୍ୟ କଳ୍ପନା-ଅତୀତ,
ଅଥଚ ଜ୍ୟୋତିର ଜ୍ୟୋତି ଚକ୍ଷୁ ଅଗ୍ରେ ସ୍ଥିତ ।
ଦୂରରୁ ସୁଦୂର, ଚିନ୍ତା-ବାକ୍ୟ-ଅଗୋଚର,
ନିକଟୁଁ ନିକଟ, ପ୍ରାଣ ସମଗ୍ର ପ୍ରାଣର ।
ଅଶବ୍ଦ ଅସ୍ପର୍ଶ ସେହି ଅରୂପ ଅରସ,
କିନ୍ତୁ ରେ ପରମସତ୍ୟ ମହାନନ୍ଦ-ରସ ।
ନିଜ ମହିମାରେ ସ୍ଥିତ ନିଜେ ନିରାଧାର,
ଅନନ୍ତ ଅଗମ୍ୟ ମହାବ୍ରହ୍ମାଣ୍ଡ-ଆଧାର ।
ସମ୍ମୁଖେ ପଶ୍ଚାତେ ସେହି, ନିମ୍ନେ ଉର୍ଦ୍ଧ୍ୱେ ସେହି,
ଦକ୍ଷିଣ ବାମରେ ସେହି ଅଥଚ ଅଦେହୀ ।''

ଅନିତ୍ୟ ଶରୀରେ ଅବସ୍ଥିତ ଏହି ଅଶରୀର ନିତ୍ୟ ମହାନ୍ ବ୍ରହ୍ମପୁରୁଷଙ୍କୁ ଜାଣି ତତ୍ତ୍ୱଜ୍ଞାନିମାନେ ରୋଗ ଶୋକରେ ଅଭିଭୂତ ହୁଅନ୍ତି ନାହିଁ ।

ଅଶରୀରଂ ଶରୀରେଷୁ ଅନବସ୍ଥେଷ୍ୱବସ୍ଥିତଂ ।

ମହାନ୍ତଂ ବିଭୁମାତ୍ମାନଂ ମତ୍ୱା ଧୀରୋ ନ ଶୋଚତି ।

ସେହି ଅନ୍ତରାତ୍ମା ସର୍ବଦା ଲୋକହୃଦରେ ସନ୍ନିବିଷ୍ଟ ଅଛନ୍ତି । ସେ ଜ୍ଞାନେଶ୍ୱର କେବଳ ହୃଦୟ ଓ ମନନଦ୍ୱାରା ପ୍ରକାଶିତ ହୋଇଥାନ୍ତି । ତାହାଙ୍କୁ ଯେଉଁମାନେ ଜାଣନ୍ତି,ସେମାନେ ଅମର ହୁଅନ୍ତି ।

ଅଙ୍ଗୁଷ୍ଠମାତ୍ରପୁରୁଷୋଽନ୍ତରାତ୍ମା ।

ସଦା ଜନାନାଂ ହୃଦୟେ ସନ୍ନିବିଷ୍ଟଃ ।

ହୃଦା ମନ୍ୱୀଶୋ ମନସାଭିକ୍ଲୃପ୍ତୋ

ଯ ଏତଦ୍‌ବିଦୁରମୃତାସ୍ତେ ଭବନ୍ତି । ଶ୍ୱେ ତ.

ଆହୁରି ମଧ

ବେଦାହମେତଂ ପୁରୁଷଂ ମହାନ୍ତଂ

ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ ।

ତମେବ ବିଦିତ୍ୱାତିମୃତ୍ୟୁମେତି ।

ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ । ଶ୍ୱେ ତ.

ଶ୍ରୋତ୍ରସ୍ୟ ଶ୍ରୋତ୍ରଂ ମନସୋ ମନୋଯଦ୍ ବାଚୋହ ବାଚଂ ସ ଉ ପ୍ରାଣସ୍ୟ ପ୍ରାଣଚକ୍ଷୁଷଃ ଚକ୍ଷୁରତିମୁଚ୍ୟଧୀରାଃ ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି । କେନ.

ନିତ୍ୟୋଽନିତ୍ୟାନାଂ ଚେତନଶ୍ଚେତନାନାଂ

ଏକୋ ବହୂନାଂ ଯୋ ବିଧଧାତି କାମାନ୍ ।

ତମାତ୍ମସ୍ଥଂ ଯେଽନୁପଶ୍ୟନ୍ତି ଧୀରାଃ

ତେଷାଂ ଶାନ୍ତିଃ ଶାଶ୍ୱତୀ ନେତରେଷାଂ । କଠ

ଅର୍ଥାତ୍ ଅଜ୍ଞାନତାମସାତୀତ ଜ୍ୟୋତିର୍ମୟ ସେହି ମହାପୁରୁଷଙ୍କୁ ଜାଣି ଲୋକ ମୃତ୍ୟୁ ଅତିକ୍ରମ କରେ । ଅମୃତତ୍ୱ ଲାଭର ଅନ୍ୟ ପଥ ଆଉ ନାହିଁ । ଯେ ଶ୍ରୋତ୍ରର ଶ୍ରୋତ୍ର, ମନର ମନ, ବାକ୍ୟର ବାକ, ପ୍ରାଣର ପ୍ରାଣ, ଚକ୍ଷୁର ଚକ୍ଷୁ, ତାଙ୍କୁ ଜାଣିଲେ ଲୋକ ଏ ଲୋକରୁ ଯାଇ ଅମୃତତ୍ୱ ଲାଭ କରେ । ଯେ ଅନିତ୍ୟ ମଧ୍ୟରେ ନିତ୍ୟ, ଚେତନର ଚେତନ

ଏବଂ ଏକ ହୋଇ ସୁଦ୍ଧା ଅନେକର କାମ୍ୟଫଳଦାତା, ତାହାଙ୍କୁ ଯେ ଆତ୍ମା ମଧ୍ୟରେ ଦର୍ଶନ କରନ୍ତି, ତାଙ୍କରି ନିତ୍ୟ ଶାନ୍ତି, ଅନ୍ୟ କାହାରି ହୁଏ ନାହିଁ ।

ନ ସନ୍ଦୃଶେ ତିଷ୍ଠତି ରୂପମସ୍ୟ
ନ ଚକ୍ଷୁଷା ପଶ୍ୟତି କଶ୍ଚିଦେନଂ
ନୈନମୂର୍ଦ୍ଧ୍ୱଂ ନ ତିର୍ଯ୍ୟଞ୍ଚ ନ ମଧ୍ୟେ ପରିଜଗ୍ରଭିତ୍
ନ ତସ୍ୟ ପ୍ରତିମା ଅସ୍ତି ଯସ୍ୟ ନାମ ମହଦ୍‌ଯଶଃ । ଶ୍ୱେ. ତ.

କୌଣସି ଦର୍ଶନ ଯୋଗ୍ୟ ପ୍ରଦେଶରେ ଏହାଙ୍କର ରୂପ ନାହିଁ । କେହି ଏହାଙ୍କୁ ଚକ୍ଷୁଦ୍ୱାରା ଦେଖିପାରେ ନାହିଁ । କେହି ଏହାଙ୍କୁ ଉପରେ ତଳେ ବା ମଧ୍ୟରେ ଧରିପାରେ ନାହିଁ । ଯାହାଙ୍କର ମହତ୍ ଯଶ, ତାହାଙ୍କର ପ୍ରତିମା ନାହିଁ । ଅତଏବ ଈଶ୍ୱର ଅପ୍ରତିମ ବା ଅରୂପ । ସେ ଇନ୍ଦ୍ରିୟାତୀତ ଓ ଅବ୍ୟକ୍ତ । ସାଧକ କେବଳ ଆରାଧନା କାଳରେ ଧ୍ୟାନର ପଥ ସୁଗମ କରିବା ପାଇଁ ତାଙ୍କର ବ୍ୟକ୍ତିତ୍ୱ କଳ୍ପନା କରେ । କେହି କେହି ସାଧକ ଉପାସ୍ୟ ଦେବତାଙ୍କୁ ଆପଣା ପରି ହସ୍ତପଦ ବିଶିଷ୍ଟ ସ୍ଥୂଳଦେହୀ କଳ୍ପନା କରି ପ୍ରାର୍ଥନା କରନ୍ତି ଏବଂ ଆପଣା ପରି କ୍ଷୁଧାତୃଷାଦିବୃତ୍ତିବିଶିଷ୍ଟ ଜାଣି ତାଙ୍କୁ ଭୋଜ୍ୟପାନାଦି ଉପହାର ପ୍ରଦାନ କରନ୍ତି । କେହି କେହି ଅଧମ ସାଧକ ମଧ୍ୟ ଆପଣାର ପ୍ରଭୁଙ୍କୁ ନିଜ ନୀଚ ମନର ଅନୁକୂଳ କଳ୍ପି ଅକାର୍ଯ୍ୟ ସାଧନ ଲାଗି ମଧ୍ୟ ପ୍ରାର୍ଥନା କରେ । ମାତ୍ର ଏ ସବୁ ଦୋଷ ବର୍ଜିତ ନୁହେଁ । ଈଶ୍ୱର ବ୍ୟକ୍ତି ସତ୍ୟ, କିନ୍ତୁ ମନୁଷ୍ୟ ପରି ବ୍ୟକ୍ତି ନୁହନ୍ତି । ତାଙ୍କର ଦୁଇଚକ୍ଷୁ, ଦୁଇ କାନ ବା ଦୁଇହସ୍ତ ପାଦ ନାହିଁ । ସବୁଆଡ଼େ ତାଙ୍କର ଚକ୍ଷୁ କର୍ଣ୍ଣ ହସ୍ତ ପାଦାଦି ଅନୁଭବ କରିବାହିଁ ଉତ୍ତମ ସାଧକର ଲକ୍ଷଣ । ବରଂ ତାଙ୍କର ଅଙ୍ଗାଦି ଏପରି କଳ୍ପନା କରାଯାଇ ପାରେ । ସେ ସତ୍ୟ ସର୍ବବ୍ୟାପୀ, ସୁତରାଂ ସତ୍ୟ ତାଙ୍କର ଦେହ । ଜ୍ଞାନ ସେହି ସତ୍ୟ ସ୍ୱରୂପ ଦେହର ଚକ୍ଷୁ । ଦେହରେ ଶକ୍ତିର ଆଶ୍ରୟ ବାହୁ, ତାଙ୍କର ଶକ୍ତି ଅନନ୍ତ, ଅତଏବ ତାଙ୍କର ବାହୁ ଅନନ୍ତ । ଅଦ୍ୱୈତ ତାଙ୍କର ପଦ ବା ଦେହାଶ୍ରୟ । ତାଙ୍କର ବର୍ଣ୍ଣ ପୁଣ୍ୟ । ସତ୍ୟ ବସ୍ତୁ ପୁଣ୍ୟର ବର୍ଣ୍ଣରେ ରଞ୍ଜିତ ହୋଇ ମନୋହର ହୁଏ । ଦେହରେ ପ୍ରେମ ବା ମଙ୍ଗଳ ଭାବର ଆଧାର ହୃଦୟ । ତେଣୁ ଶିବ ତାଙ୍କର ହୃଦୟ । ଆନନ୍ଦ ତାଙ୍କର ସର୍ବତ୍ର ସଞ୍ଚାରୀ ଲାବଣ୍ୟସ୍ୱରୂପ । ଅମୃତ ତାଙ୍କର ଦୃଷ୍ଟି । ବୃକ୍ଷର ପୁଷ୍ପଫଳାଦି ନୈବେଦ୍ୟ କରି ତାଙ୍କର ତୃପ୍ତିବିଧାନ କରାଯାଇ ନପାରେ । ଐକାନ୍ତିକ ପ୍ରେମ, ଅଚଳା ଭକ୍ତି, ଜ୍ୱଳନ୍ତ ବିଶ୍ୱାସ, ଅସାଧାରଣ ଧୈର୍ଯ୍ୟ ତ୍ୟାଗ ଆଦି ତାଙ୍କ ନିକଟରେ ଯଥାର୍ଥ ନୈବେଦ୍ୟ । ଯେଉଁ ସାଧକର ଜୀବନ ଏହିଭାବରେ ଅନୁପ୍ରାଣିତ ହୁଏ, ସେହି ଏ ସଂସାରରେ ଧନ୍ୟ । ଯାହାର ମନ

ସେହି ଅଭିଳଷିତ ବସ୍ତୁ ଲାଭକରି, ସେହି ପ୍ରେମ ସ୍ରୋତରେ ଭାସମାନ ହେଉଥାଏ, ସେହି ଧନ୍ୟ । ଯେ ହୃଦୟରେ ଈଶ୍ୱରଙ୍କ ବ୍ୟକ୍ତିତ୍ୱ ଉପଲବ୍ଧି କରି ସାକ୍ଷାତ୍‌ଭାବରେ ତାହାଙ୍କୁ ପ୍ରଭୁ, ପିତା, ମାତା, ଗୁରୁ, ସଖା, ସ୍ୱାମୀ ପ୍ରଭୃତିରୂପେ ଦେଖିବାର ସୁଯୋଗ ପାଏ, ସେହି ଧନ୍ୟ ଧନ୍ୟ । କେହି କେହି କହିଥାନ୍ତି, ସେ ବିଶ୍ୱବ୍ୟାପୀ, ମହତୋମହୀୟାନ୍, ତାଙ୍କୁ କିପରି ଏ କ୍ଷୁଦ୍ର ମାନବହୃଦୟରେ ଧାରଣ କରି ହେବ ? ଏପରି ପ୍ରଶ୍ନ ଉଠିବା ସ୍ୱାଭାବିକ । କିନ୍ତୁ ହୃଦୟର ସେପରି ଅଦ୍ଭୁତ ଅଚିନ୍ତ୍ୟ ଗୁଣ ଅଛି । ଅତ୍ୟୁନ୍ନତ ପର୍ବତ ବା ଅନ୍ୟ କୌଣସି ବିରାଟ ବସ୍ତୁ ଅତି କ୍ଷୁଦ୍ର ଦର୍ପଣରେ ସମ୍ପୂର୍ଣ୍ଣ ପ୍ରତିଫଳିତ ହୁଏ, ଏହା ଅବଶ୍ୟ କାଚର ଗୁଣ । ସେହିପରି ହୃଦୟର ଗୁଣରେସେ ମହାନ୍ ପୁରୁଷ ତହିଁରେ ପ୍ରକାଶିତ ହୋଇ ପାରନ୍ତି । ସାଧକ ତାହାଙ୍କୁ ହୃଦୟରେ ଅନୁଭବ କଲେ ଅପାର ସୁଖସାଗରରେ ପ୍ରବାହିତ ହୁଏ, ଆଉ ସେଥିରୁ ତିଳେହେଁ ଫେରିବାକୁ ମନ ବଳାଏ ନାହିଁ ।

ଯଥା ନଦ୍ୟଃ ସ୍ୟନ୍ଦମାନାଃ ସମୁଦ୍ରେଽସ୍ତଂ
ଗଚ୍ଛନ୍ତି ନାମରୂପେ ବିହାୟ
ତଥା ବିଦ୍ୱାନ୍ ନାମରୂପାଦ୍‌ବିମୁକ୍ତଃ
ପରାତ୍ପରଂ ପୁରୁଷମୁପୈତି ଦିବ୍ୟଂ । ମୁଣ୍ଡକ.

ନଦୀସ୍ରୋତ ଯେପରି ପ୍ରତିବନ୍ଧକ ଅତିକ୍ରମ କରି ଶେଷରେ ନିଜ ନାମ ରୂପ ଭୁଲିଯାଇ ସମୁଦ୍ରରେ ମିଶିଯାଏ, ସେହିପରି ଜ୍ଞାନୀ ବ୍ୟକ୍ତି ଜୀବନମାର୍ଗର ସମସ୍ତ ବାଧା ବିଘ୍ନ ଲଙ୍ଘି ଶେଷରେ ଆପଣାର ନାମରୂପଭେଦ ଭୁଲି ସେହି ଦିବ୍ୟପୁରୁଷଙ୍କ ସହିତ ମିଳିତ ହୁଅନ୍ତି । ସାଧକ ମଧୁସୂଦନଙ୍କର ଜୀବନସ୍ରୋତ କି ପ୍ରକାର ପ୍ରବାହିତ ହେଲାଥିଲା, ତତ୍‌କୃତ 'ନଦୀ ପ୍ରତି' କବିତାରୁ ତହିଁର ପ୍ରତିବିମ୍ବ ମିଳେନାହିଁ କି ? ତାଙ୍କର ପ୍ରାଣ ସମସ୍ତ 'ଭେଦ ଦୂରେ ଫିଙ୍ଗି' ସର୍ବଦା ସେହି ପ୍ରେମସ୍ରୋତରେ ଭାସିବାକୁ (ସତ୍ୟ ପଥେ ପ୍ରେମ ପଥେ ଘେନିଯାଅ ମୋତେ, ଭସାଅ ପରାଣ ମୋର ତବ ପ୍ରେମସ୍ରୋତେ) ବ୍ୟାକୁଳ ଥିଲା । ଆମ୍ଭେମାନେ ତାଙ୍କର ପ୍ରତି ଉପଦେଶ, ପ୍ରତି ସଙ୍ଗୀତ ଓ ପ୍ରତି କବିତାରେ ପ୍ରାର୍ଥନାର ପ୍ରତି ତରଙ୍ଗରେ ଏହି ପ୍ରକାର ବ୍ୟାକୁଳତା ଦେଖୁଁ । କେତେବେଳେ ତାଙ୍କର ପ୍ରାଣ କହେ, ''ହେ ପରମପିତା, ତୁମ୍ଭେ ମୋତେ ତୁମ୍ଭଙ୍କୁ ଜାଣିବାର ଅଧିକାର ଦେଇଅଛ । ମୁଁ ପାପୀ ହେଲେହେଁ, ତୁମ୍ଭେ ମୋ ନିକଟରେ ପ୍ରକାଶିତ ହୋଇ କହୁଅଛ, ବତ୍ସ ! ମୁଁ ତୋ ସଙ୍ଗେ ସଙ୍ଗେ ଅଛି । ହେ ପରମ ସଖା ! ମୋତେ ତୁମ୍ଭ ଦୟାର ସାକ୍ଷ ଦେବାପାଇଁ ସମର୍ଥ କର । ମୁଁ ତୁମ୍ଭର ପରମସୁନ୍ଦର ସ୍ୱରୂପରେ ବୁଡ଼ିଯାଇ ମୋର କ୍ଷୁଦ୍ର ନୀଚ ଅହନ୍ତାକୁ ଯେମ୍ଭେ ପାସୋରି ପକାଏଁ

ଏବଂ ତୁମ୍ଭ ସନ୍ତାନମାନଙ୍କର ସେବା କରି ଧନ୍ୟ ହୁଏଁ । କେତେବେଳେ ପୁଣି – ''ହେ ପ୍ରଭୋ, ଧର୍ମଯୁଦ୍ଧରେ ଧର୍ମନିଷ୍ଠ ଯୋଦ୍ଧାମାନେ ସମ୍ପୂର୍ଣ୍ଣରୂପେ ପ୍ରାଣ ଢ଼ାଳି ଦେଇଅଛନ୍ତି । ମୁଁ କାପୁରୁଷ ପରି ପୃଷ୍ଠଭଙ୍ଗ ଦେଇ ରିପୁମାନଙ୍କ ସଙ୍ଗେ ସନ୍ଧି କରିଅଛି ଓ କରୁଅଛି । ପ୍ରଭୋ ! ଏ ବିଶ୍ୱାସଘାତକତାର ଉଚିତ ଦଣ୍ଡବିଧାନ କରୁଅଛ, କର; କିନ୍ତୁ ପ୍ରଭୋ ! ବିଶ୍ୱାସଘାତକର ଦୁର୍ଗତି ଏକାବେଳକେ ବିନାଶ କରି ବିଶ୍ୱାସୀ ସନ୍ତାନର ସୁମତି ମୋତେ ଦିଅ ଏବଂ ବୀର ସନ୍ତାନର ବ୍ରତନିଷ୍ଠାରେ ମୋତେ ଦୀକ୍ଷିତ କର । ପାପ ପ୍ରଲୋଭନ ସଙ୍ଗେ ଯୁଝିବାର ବିକ୍ରମ ମୁଁ ହରାଇ ବସିଅଛି । ହେ ପ୍ରଭୋ ! ନବଜୀବନ ନବଶକ୍ତି ମୋ ଆତ୍ମାରେ ସଞ୍ଚାରିତ କର ।'' କେତେବେଳେ ବା– ''ହେ ଅନନ୍ତ ! କିଏ ତୁମ୍ଭର ନାମକରଣ କରିପାରେ ? ଅଥଚ କେଉଁ ବିଶ୍ୱାସୀ ତୁମ୍ଭର ନାମକରଣ ନ କରି ରହିପାରେ ? ହେ ପରାତ୍ପର ! ତୁମ୍ଭ ସଙ୍ଗେ ଘନିଷ୍ଠ ଯୋଗ ଉପଲବ୍ଧି କରି ଏ ପ୍ରାଣ ତୁମ୍ଭଙ୍କୁ ସହଜ ନାମ ଦେଇ ଜୀବନ୍ତ ଭାବରେ ଡାକି ଶିଖୁ ।'' ବ୍ୟାକୁଳ ପ୍ରାର୍ଥନାରେ ଏ ସଂସାରରେ ନିର୍ମମ ପାଷଣ୍ଡର ହୃଦୟ ସୁଦ୍ଧା ବିଗଳିତ ହୋଇଯାଏ । ଅତି ନିର୍ଦ୍ଦୟ ଘାତୁକର ହୃଦୟରେ ସୁଦ୍ଧା ଦୟାର ସଞ୍ଚାର ହୁଏ । ଯେ ଶୁଦ୍ଧ ସରଳପ୍ରାଣରେ ଦୟାମୟ ଭଗବାନଙ୍କୁ ବ୍ୟାକୁଳ ଭାବରେ ଡାକେ, ସେ ଅବଶ୍ୟ ଦିନେ ତାଙ୍କର କୃପା ଲାଭ କରିବ, ଏହା ବିଶ୍ୱାସନିର୍ଭର ସତ୍ୟ । ପୁରାଣାଦିରୁ ଜଣା ଯାଉଅଛି, ଭକ୍ତ ଯେତେବେଳେ ବ୍ୟାକୁଳତାର ଚରମ ସୀମାରେ ଉପସ୍ଥିତ ହୋଇଅଛି, ସେତେବେଳେ ଭଗବାନ କୃପାକରି ସ୍ୱରୂପପ୍ରଦର୍ଶନ ଦ୍ୱାରା ତାହାର ଉଦ୍ଧାର ବିଧାନ କରିଅଛନ୍ତି, ବିପଦର ଚରମ ମୁହୂର୍ତ୍ତରେ ଆର୍ତ୍ତଙ୍କୁ ପରିତ୍ରାଣ କରିଅଛନ୍ତି । ଯେ ଈଶ୍ୱର ବିଶ୍ୱାସୀ କୃତଜ୍ଞଚିତ୍ତରେ ପ୍ରାଣ ମଧ୍ୟରେ ତାହାଙ୍କୁ ନିତ୍ୟ ଡାକିବାକୁ ଶିଖିଅଛନ୍ତି, ସେ ଅବଶ୍ୟ ତାଙ୍କର କୃପାକଣିକା ଲାଭ କରିଅଛନ୍ତି ଏବଂ ତାହାଙ୍କ ସ୍ୱରୂପ ଜାଣିଅଛନ୍ତି । କାରଣ ଈଶ୍ୱର ମାନବାତ୍ମାରେ ଅଭିବ୍ୟକ୍ତ ରହିଅଛନ୍ତି । ତାଙ୍କର ପ୍ରକାଶ ଏବଂ ତାଙ୍କର ବାଣୀ ଶ୍ରବଣ ସ୍ୱାଭାବିକ ଏବଂ ସାର୍ବଲୌକିକ । କି ଜଡ଼ କି ଚେତନ ଉଭୟ ଜଗତରେ ତାଙ୍କର କ୍ରିୟା ପ୍ରତ୍ୟକ୍ଷ କରାଯାଏ । ଜଡ଼ଜଗତର ପ୍ରତି ରନ୍ଧ୍ର ପରି ହୃଦୟର ନିଭୃତ କନ୍ଦରରେ ତାଙ୍କର ମଙ୍ଗଳବାଣୀ ଉଦ୍‌ଗୀରିତ ହେଉଅଛି ଏବଂ ପ୍ରତି ପ୍ରାଣକୁ ଅନୁପ୍ରାଣିତ କରୁଅଛି । ପ୍ରତ୍ୟେକେ ଏହି ମଙ୍ଗଳବାଣୀ ଶ୍ରବଣର ଅଧିକାରୀ ।

ଉପାସନା ସଜନ-ନିର୍ଜନ ଓ ସରବ-ନୀରବ ଭେଦରେ ଦୁଇ ପ୍ରକାର ହୋଇଥାଏ । କୁଟୁମ୍ବର ଅଥବା ସମ୍ପ୍ରଦାୟର ସମସ୍ତଙ୍କ ସହିତ ମିଳିତ ହୋଇ ଯେଉଁ ଉପାସନା କରାଯାଏ, ତାହା ସଜନ ଉପାସନା । ଏହି ଉପାସନାରେ ଅନ୍ୟାନ୍ୟ

ଉପାସକମାନଙ୍କର ଅଭାବ ଏବଂ ବ୍ୟାକୁଳତା ଆପଣାର ପ୍ରାଣରେ ସ୍ପନ୍ଦିତ ହୋଇ ସମୟ ସମୟରେ ପ୍ରାଣକୁ ଉନ୍ନତ ଏବଂ ସରସ କରେ । ନିର୍ଜନରେ ଏକାକୀ ଈଶ୍ୱର ଚିନ୍ତା କରିବାର ନାମ ନିର୍ଜନ ଉପାସନା । ସଶବ୍ଦ ଉପାସନା ଦ୍ୱାରା ଅନ୍ୟ ଉପାସକର ନୀରବରେ ଯୋଗଦେବାର ସୁବିଧା ହୁଏ ଏବଂଶବ୍ଦ ଉଚ୍ଚାରଣ ସଙ୍ଗେ ସଙ୍ଗେ ଉପାସନାକାରୀର ମନ ବାହ୍ୟଚିନ୍ତାରୁ ନିବୃତ୍ତ ହୋଇ କ୍ରମେ ଏକାଗ୍ର ହୋଇଥାଏ । ପ୍ରଥମ ସାଧକ ପକ୍ଷରେ ଏପ୍ରକାର ଉପାସନା ଅବଶ୍ୟ ଚିତ୍ତ ଶୁଦ୍ଧିକଳ୍ପେ ନିରାପଦ । କିନ୍ତୁ ନିର୍ଜନରେ ନୀରବ ଭାବରେ ଈଶ୍ୱର ଚିନ୍ତା କରିବା ସର୍ବାପେକ୍ଷା ଉତ୍କୃଷ୍ଟ ଏବଂ ମଧୁର ବୋଲି ଉତ୍ତମ ସାଧକଗଣଙ୍କ ବଚନରୁ ପ୍ରକାଶ ପାଏ । ଏହି ପ୍ରକାର ମନନହିଁ ଯୋଗୀର ଯୋଗଧ୍ୟାନ ବା ସମାଧି; କିନ୍ତୁ ତାହା ଜାଣି ପାରିବା ଅନ୍ୟ ପକ୍ଷରେ ଅସମ୍ଭବ ଓ ଅଧିକାର ବହିର୍ଭୂତ । ସଜନ ଉପାସନା ବା ବିକଳ୍ପଗୁଣକୀର୍ତ୍ତନରୁ ଅନ୍ୟ ଲୋକଙ୍କର ଶିକ୍ଷା ଓ ଉପକାର ହୁଏ ।  ଆଚାର୍ଯ୍ୟ ମଧୁସୂଦନ ସଜନ ଉପାସନାରେ ଅତ୍ୟନ୍ତ ଅନୁରାଗ ପ୍ରଦର୍ଶନ କରୁଥିଲେ । କେତେବେଳେ କୁଟୁମ୍ବଙ୍କୁ ଘେନି, କେତେବେଳେ ବନ୍ଧୁ ବାନ୍ଧବଙ୍କୁ ଘେନି ସେ ଉପାସନାରେ ବସୁଥିଲେ । ତାହାଙ୍କ ଉପାସନାରେ ଶ୍ରୋତୃବୃନ୍ଦଙ୍କର ହୃଦୟ ଯେପରି ନିର୍ମଳ ଓ ପବିତ୍ରଭାବାପନ୍ନ ହୁଏ, ତାହା ଅନ୍ୟତ୍ର ବିରଳ । ତେଣୁ ଅନେକ ହିନ୍ଦୁ ପୁତମନରେ ତାଙ୍କ ଉପାସନାରେ ଯୋଗ ଦେଉଥିଲେ ଏବଂ କ୍ଷଣେ ହୃଦୟକୁ ଦିବ୍ୟ ରସରେ ସରସ କରି ଆସୁଥିଲେ । ତାଙ୍କର ଉପାସନାର ପ୍ରତ୍ୟେକ ବାଣୀ ହୃଦୟତନ୍ତ୍ରୀକୁ ଅପାର୍ଥିବ ଭାବରେ ଝଙ୍କାରିତ କରି ଦେଉଥିଲା, ପ୍ରତ୍ୟେକ ତରଙ୍ଗ ଆଶାର ବାଣୀ ଶୁଣାଉଥିଲା, ହୃଦୟକୁ ନବଜାଗରଣ ଆଣୁଥିଲା । ଆହା ! ''କି ଗମ୍ଭୀର ଉଦୀରଣେ ଋଷିକଣ୍ଠୁ ସ୍ବରେ – ଉତ୍ତିଷ୍ଠତ ଜାଗ୍ରତ ପ୍ରାପ୍ୟ ବରାନ୍ ନିବୋଧତା'' ତାଙ୍କର ସେହି ବିଶ୍ୱାସ-ବାଣୀର ଉଦୀରଣ, ଓଁ କାର,ଝଙ୍କାର, ଦିବ୍ୟ ତେଜରେ ଉଭାସିତ ମୁଖମଣ୍ଡଳ, ଅଶ୍ରୁବିଧୌତ ଗଣ୍ଡଯୁଗ ଏବଂ 'ଚୈତନ୍ୟର ଲୀଳାସ୍ଥଳ'ଉଜ୍ଜଳ-ଭାଲଫଳକ ଯେ ସୁଯୋଗକ୍ରମେ ଦେଖିଅଛି, ସେ କଦାପି ଭୁଲି ପାରିବ ନାହିଁ ଏବଂ ସେହି ମୂର୍ତ୍ତି ସ୍ମରଣରେ ହୃଦୟ ଶୁଦ୍ଧ ସରସ ହୋଇ ପାରିବ । ପ୍ରିୟ ବନ୍ଧୁ ନନ୍ଦକିଶୋର ବାବୁ ତାଙ୍କ ପ୍ରବନ୍ଧରେ ଯଥାର୍ଥ ଲେଖିଅଛନ୍ତି – ''ଆମ୍ଭେମାନେ ତାଙ୍କର ଅନେକ ରୂପ ଦେଖିଅଛୁଁ । କିନ୍ତୁ ଗୋଟିଏ ରୂପ ଚିରକାଳ ହୃଦୟରେ ଲାଖି ରହିଅଛି । ବ୍ରହ୍ମ ମନ୍ଦିର ନାନା ଲତାପୁଷ୍ପଦ୍ୱାରା ମଣ୍ଡିତ । ଲତାକୁଞ୍ଜ ମଧ୍ୟରେ ଋଷିପ୍ରତିମ ତେଜସ୍ୱୀ ଗମ୍ଭୀର ପୁଣ୍ୟାତ୍ମା ମଧୁସୂଦନ ବସି ଯେଉଁ ବ୍ରହ୍ମମନ୍ତ୍ର ପାଠ କରିଥିଲେ, ତାହା ହୃଦୟ ପବିତ୍ରକାରୀ –

''ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରା
ଯେ ଧାମାନି ବିଦ୍ୟାନି ଆତସ୍ଥୁଃ ।
ବଦାହମେତଂ ପୁରୁଷଂ ମହାନ୍ତ –
ମାଦିତ୍ୟ ବର୍ଣ୍ଣଂ ତମସଃ ପରସ୍ତାତ୍ ।
ତମେବ ବିଦିତ୍ୱାମୃତ୍ୟୁମେତି
ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ ।''

ଉପାସନା କାଳରେ ସାଧକ ମଧୁସୂଦନ ପ୍ରଥମେ ବ୍ରହ୍ମସଙ୍ଗୀତରେ ମନକୁ ଉଦ୍‌ବୋଧିତ କରି ଅର୍ଥାତ୍ ଈଶ୍ୱରଙ୍କ ଅଭିମୁଖରେ ଆକର୍ଷଣ କରି ଆରାଧନା କରୁକରୁ ଅଥବା ଈଶ୍ୱରଙ୍କ ସ୍ୱରୂପ ହୃଦୟରେ ଉପଲବ୍‌ଧି କରି କୀର୍ତ୍ତନ କରୁକରୁ ଯେତେବେଳେ ଧ୍ୟାନସ୍ଥ ହୋଇପଡ଼ନ୍ତି, ତେତେବେଳେ ତାଙ୍କର ମୁଖମଣ୍ଡଳ ଉଜ୍ଜ୍ୱଳତର ଦିଶେ, ଯେହ୍ନେ ତାହା ଏକ ଅପାର୍ଥିବ ତେଜରେ ଉଦ୍ଭାସିତ ହୋଇଯାଏ । ଦେଖୁ ଦେଖୁଁ ନିମୀଳିତ ନେତ୍ରଦ୍ୱୟର ଦୁଇଟି ପାବନ ଅଶ୍ରୁଧାର ଗଣ୍ଡଯୁଗଳରେ ଅବିରଳ ଝରିପଡ଼େ । ଦେଖିଲେ ମନେହୁଏ, କୌଣସି ଅପାର୍ଥିବ ମହାବସ୍ତୁ ତାହାଙ୍କ ହୃଦୟରାଜ୍ୟ ଅଧିକାର କରିଅଛି । ତେଣୁ ଅନ୍ତର୍ବାଷ୍ପରାଶି ଅଶ୍ରୁଜଳ ଆକାରରେ ଅସମ୍ଭାଳରେ ଉଚ୍ଛୁଳି ପଡୁଅଛି । ଆହା ! ସେ ଦୃଶ୍ୟ କି ଉଦାର ! ଭଗବାନଙ୍କର ପ୍ରେମମନ୍ଦାକିନୀ ଧାରାର ସେ ଯେହ୍ନେ ସ୍ଥୂଳ ପ୍ରତିଫଳନ ! ବ୍ରହ୍ମଜ୍ଞ ମଧୁସୂଦନ ସେତେବେଳେ ମହାଭାବରେ ଭୋଳ ହୋଇ ବାଞ୍ଛାକଳ୍ପତରୁଙ୍କ ନିକଟରେ ଆତ୍ମାର ପ୍ରିୟତମ ପ୍ରାର୍ଥନା କରନ୍ତି । ସେ ପ୍ରାର୍ଥନା କେଡ଼େ ଉଚ୍ଚ, କି ଅପାର୍ଥିବ ଏବଂ କିପରି ଅନନ୍ୟସାଧାରଣ, ତାହା ପାଠକମାନେ ତାଙ୍କର ଉଦ୍ଧୃତ ରଚନାବଳୀରୁ ଅନୁମାନ କରି ପାରୁଥିବେ । ସେତେବେଳେ ସେ ପ୍ରାଣଯନ୍ତ୍ର ଝଙ୍କାରିତ କରି ଓଁକାର ଉଚ୍ଚାରଣ କରନ୍ତି । ତାହା ସଙ୍ଗେ ସଙ୍ଗେ ସମସ୍ତ ଉପାସକ ଏବଂ ଶ୍ରୋତୃବର୍ଗଙ୍କ ହୃଦୟରୁ ସମସ୍ୱରରେ ନୀରବରେ ଓଁ ଉଦ୍‌ଗୀରିତ ହୁଏ । ପ୍ରତ୍ୟେକ ହୃଦୟ ସେଥିରେ ଆକୃଷ୍ଟ ହୋଇ ଯେହ୍ନେ ଏକାଭିମୁଖୀନ ହେଉଥାଏ । ବ୍ରାହ୍ମ ଉପାସନାରେ ଅନେକ କୃତ୍ରିମତା ଏବଂ ଆଡ଼ମ୍ବରର ସଂକ୍ରମଣ ଦେଖି ଅନେକ ଘୃଣା କରିଥାନ୍ତି; କିନ୍ତୁ ଏପରି ଉପାସନା ବିରଳ ଦେଖାଯାଏ । ବିଶ୍ୱନାଥ ବାବୁଙ୍କ ଭାଷାରେ ବର୍ତ୍ତମାନ ତାଙ୍କପରି ନବଯୁଗର ଦାଗରବାଣୀ ଉଦାତ୍ତସ୍ୱରରେ ଉଚ୍ଚାରଣ କରିବାକୁ ଏ ଦେଶରେ ଆଉ କେହି ନାହିଁ । ସେହି ଏକା ବ୍ରହ୍ମଙ୍କ ବିଜୟନିଶାଣ ସେପରି ଦୃଢ଼ମୁଷ୍ଟିରେ ଧାରଣ କରି ଅଚଳ ଅଟଳ ଭାବରେ ଦଣ୍ଡାୟମାନ ହୋଇଥିଲେ ।

# ୧୪

## ଅନ୍ତିମ କାଳ

ପୂର୍ବ ପ୍ରସଙ୍ଗରେ ମଧୁସୂଦନଙ୍କର ବ୍ରହ୍ମୋପାସନାର ପରିଚୟ ଦିଆହୋଇଅଛି । ସେଥିରୁ ପାଠକମାନେ ତାହାଙ୍କର ବ୍ରହ୍ମଜ୍ଞାନିତ୍ୱର ଆଭାସ ପାଇଅଛନ୍ତି । କିନ୍ତୁ ବିଶେଷ ଭାବରେ ମୃତ୍ୟୁ-ନିକଷରେ ମନୁଷ୍ୟର ସାରାସାରତା ଚିହ୍ନାଯାଏ । ତାଙ୍କର ଅନ୍ତିମ ମୁହୂର୍ତ୍ତରେ ବ୍ରହ୍ମଜ୍ଞାନର ଜ୍ୱଳନ୍ତ ନିଦର୍ଶନ ଏବଂ ଭକ୍ତ ଜୀବନର ସଫଳତା କିପରି ସୁସ୍ପଷ୍ଟ ଭାବରେ ପରିଲକ୍ଷିତ ହୋଇଥିଲା, ତାହା ଏ ପ୍ରସଙ୍ଗରେ ଆଲୋଚନା କରି ପ୍ରବନ୍ଧର ଉପସଂହାର କରିବୁଁ । ମଧୁସୂଦନ ଏ ଯୁଗର ଯେ ଜଣେ ଆଦର୍ଶ ଭକ୍ତ ଥିଲେ, ତହିଁର ଯଥେଷ୍ଟ ପରିଚୟ ଆମ୍ଭେମାନେ ପାଇଅଛୁଁ । ଅବଶ୍ୟ ସେ ଜଣେ ସଂସାରୀ ଥିଲେ, ଇତର ସଂସାରୀ ପରି ସଂସାର କାର୍ଯ୍ୟରେ ମଧ୍ୟ ଲିପ୍ତ ଥିଲେ ଏବଂ ମନପ୍ରାଣ ଢ଼ାଳିଦେଇ ଐହିକ କର୍ମମାନ ସମ୍ପାଦନ କରୁଥିଲେ; କିନ୍ତୁ ତଥାପି ଅଭ୍ୟନ୍ତରରେ ତାଙ୍କର ଲକ୍ଷ୍ୟ ଏକଆଡ଼େ ସ୍ଥିର ଥିଲା । ସେହି ସ୍ଥିରଲକ୍ଷ୍ୟତା ଯୋଗୁଁ ସେ ଅନ୍ୟଠାରୁ ପୃଥକ୍ ଏବଂ ବିଶିଷ୍ଟ ବୋଲି ଜଣା ପଡ଼ୁଥିଲେ ।

ବାଲ୍ୟକାଳ ମନୁଷ୍ୟଜୀବନରେ ପୁଣ୍ୟ ପ୍ରଭାତ । ପ୍ରଭାତ ପରି ଏହି ସମୟର ସମସ୍ତ ଭାବ ପବିତ୍ର ଏବଂ ସ୍ନିଗ୍ଧ-ସୁଗନ୍ଧ । ଯେ ସାଧନାବଳରେ ତାହାକୁ ନିଜ ଜୀବନରେ ସ୍ଥିରରଖିପାରେ, ତାହାର ସମଗ୍ର ଜୀବନ ସୌରଭମୟ ହୁଏ । ସର୍ବ ଦେଶର ସାଧୁମହାତ୍ମାମାନେ ବାଳକକୁ ସ୍ୱର୍ଗରାଜ୍ୟବାସୀ ଏବଂ ତାହାର ବୃତ୍ତିଚୟକୁ ମନୁଷ୍ୟର ଆଦର୍ଶବୃତ୍ତି ବୋଲି ଘୋଷଣା କରି ଯାଇଅଛନ୍ତି । ଯେଉଁ ବ୍ୟକ୍ତି କାୟିକ, ବାଚିକ ଏବଂ ମାନସିକ* ଏହି ତ୍ରିବିଧ ସାଧନା ବଳରେ ବାଳକଜୀବନର ସେହି ସରଳ ବିଶ୍ୱାସ, ନିର୍ବିକାରଭାବ, ପ୍ରସନ୍ନତା, ଅମାୟିକ ବ୍ୟବହାର, ଏକାଗ୍ରତା ଏବଂ ସତ୍ୟନିଷ୍ଠତା-ବୃତ୍ତିକୁ

* ଶ୍ରୀମଦ୍ ଭଗବଦ୍‌ଗୀତାର ସପ୍ତଦଶ ଅଧ୍ୟାୟରେ ଏହି ତ୍ରିବିଧ ତପର ଲକ୍ଷଣ ପ୍ରଦତ୍ତ ହୋଇଅଛି ।

୧ – ଦେବଦ୍ୱିଜଗୁରୁପ୍ରାଜ୍ଞପୂଜନଂ ଶୌଚ ମାର୍ଜ୍ଜବମ୍ । ବ୍ରହ୍ମଚର୍ଯ୍ୟମହିଂସା ଚ ଶାରୀରଂ ତପ ଉଚ୍ୟତେ ।

୨ – ଅନୁଦ୍‌ବେଗକରଂ ବାକ୍ୟଂ ସତ୍ୟଂ ପ୍ରିୟହିତଞ୍ଚଯତ୍ ସ୍ୱାଧ୍ୟାୟାର୍ଭ୍ୟସନ୍ଂ ଚୈବ ବାଙ୍ମୟଂ ତପ ଉଚ୍ୟତେ ।

୩ – ମନଃପ୍ରସାଦଃ ସୌମ୍ୟତ୍ୱଂ ମୌନମାତ୍ମବିନିଗ୍ରହଃ ଭାବସଂଶୁଦ୍ଧିରିତ୍ୟେତତ୍ ତପୋମାନସମୂଚ୍ୟତେ ।

ଉତ୍ତର ଜୀବନରେ ସୁସ୍ଥିର ରଖି ପାରନ୍ତି, ସେହି ଯଥାର୍ଥ ଭକ୍ତ ଏବଂ ଧର୍ମାତ୍ମା । ଯେଉଁମାନେ ମଧୁସୂଦନଙ୍କ ନିକଟରେ ବହୁକାଳ ଅବସ୍ଥାନ କରିଅଛନ୍ତି, ସେମାନେ ତାହାଙ୍କ ବାଳକ ସ୍ୱଭାବର ଯଥେଷ୍ଟ ଦୃଷ୍ଟାନ୍ତ ଦେଖିଅଛନ୍ତି । କେତେବେଳେ ଦେଖୁଁ, କଥା କଥାକେ ବାଳକ ପରି ହାସ ପରିହାସ, କଥାକେ ପୁଣି ଅଶ୍ରୁପାତ । ବାଳକ ତୁଲ୍ୟ କେତେବେଳେ ଖେଳ କୌତୁକରେ ମନ, ପରକ୍ଷଣରେପୁଣି ସବୁ ଛାଡ଼ି ମା ମା ବୋଲି ଏକ ଧ୍ୟାନ । ଅନେକେ ପ୍ରତ୍ୟକ୍ଷ କରିଥିବେ, ମଧୁସୂଦନ ବହୁକାଳ ପରେ ପରମ ଆତ୍ମୀୟକୁ ଦେଖିଲେ ବାଳକ ପରି ଆଲିଙ୍ଗନ କରିପକାଇ ଆନନ୍ଦାଶ୍ରୁ ବିସର୍ଜନ କରିଥାନ୍ତି, ସେହିପରି ବନ୍ଧୁର ବିଚ୍ଛେଦ ସମୟରେ ଅବିରଳ ଅଶ୍ରୁ ବର୍ଷଣ କରିପକାନ୍ତି । ସେ ଉତ୍କଟ ରୋଗଯନ୍ତ୍ରଣାରେ ଛଟପଟ ହେଉଥିଲେ ସୁଦ୍ଧା ବାଳକପ୍ରାୟ ମା' ନାମ ସ୍ମରଣରେ ସେ ସବୁ ଭୁଲିଯାଇ ସୁସ୍ଥବତ୍ ବନ୍ଧୁ ସହିତ ଆଳାପ କରି ବସୁଥିଲେ । ରୋଗଶଯ୍ୟାରେ ଥାନ୍ତୁ ଅଥବା କୌଣସି କାର୍ଯ୍ୟରେ ବ୍ୟାପୃତ ଥାନ୍ତୁ, ଭଗବାନଙ୍କ ନାମ ଶ୍ରବଣ ବା ସ୍ମରଣ କଲେ ତତ୍କ୍ଷଣାତ୍ ଭଗବଦ୍‌ଭାବରେ ଅନୁପ୍ରାଣିତ ହୋଇଯାନ୍ତି । ତେତେବେଳେ ତାଙ୍କର ଶରୀର ସ୍ଥିର, ମୁଖ ଗମ୍ଭୀର ଏବଂ ଚକ୍ଷୁଯୁଗଳ ଅଶ୍ରୁପୂର୍ଣ୍ଣ ହୋଇଯାଏ । ଅଶ୍ରୁ ସମସ୍ତଙ୍କଠାରେ ଅଛି, କିନ୍ତୁ ଏପରି ଅବିରଳ ପୁଣ୍ୟାଶ୍ରୁବର୍ଷଣ କେତେ ଜଣଙ୍କ ଚକ୍ଷୁରୁ ଦେଖାଯାଏ ? ଭୂମିଗର୍ଭରେ ସର୍ବତ୍ର ଜଳ ଅଛି ସତ୍ୟ, କିନ୍ତୁ ସ୍ୱଚ୍ଛ (ଅନାସକ୍ତ) ବାଲି ଭିତରେ ଅନାୟାସରେ ଯେଉଁ ନିର୍ମଳ ଜଳ ମିଳେ,ତାହା ବିରାଟ ମାଟି ଭିତରୁ କେବେ ସମ୍ଭବ କି ? ଯେଉଁଠାରେ ପଙ୍କିଳତା (ଆସକ୍ତି) ଯେତେ ଅଧିକ, ସେଠାରେ ଏହି ଜଳଶୂନ୍ୟତା ତେତେ ଅଧିକ । ବାଲିର ଉପରଟା ମୃତ୍ତିକାରସ ଶୁଖି ଯାଇଥିବାରୁ ଅତିଶୁଷ୍କ ବା ନିରସ ଥାଏ, କିନ୍ତୁ ଭିତରଟା ଅତି ସ୍ୱଚ୍ଛ ରସରେ ଭରା ଥାଏ; ସେହିପରି ବିଷୟରସ ଶୁଖିଗଲେ ମନୁଷ୍ୟର ଅଭ୍ୟନ୍ତର ଶୁଦ୍ଧ ଭାଗବତ ରସରେ ପୂର୍ଣ୍ଣ ହୁଏ । ମହାତ୍ମା ଶ୍ରୀ ରାମକୃଷ୍ଣ ପରମହଂସ ଉପଦେଶ ଛଳରେ କହିଅଛନ୍ତି– ''କେତେବେଳେ ଦେଖିବ, ଈଶ୍ୱରଙ୍କ ନାମ କହିଲାମାତ୍ରେ ଅଶ୍ରୁ ଏବଂ ପୁଲକ ହୁଏ, ତେତେବେଳେ ଜାଣିବ ଯେ କାମିନୀକାଞ୍ଚନରୁ ଆସକ୍ତି ଚାଲି ଯାଇଅଛି, ଈଶ୍ୱର ଲାଭ ହୋଇଅଛି । ଦିଆଶିଲାଇ ଶୁଖିଲା ଥିଲେ ଘଷିଦେଲାମାତ୍ରେ ଦପ୍‌କରି ଜଳିଉଠେ, ଓଦା ଥିଲେ ତାହାହୁଏନାହିଁ । ସେହିପରି ବିଷୟ ରସରେ ମଜ୍ଜିଥିଲେ, କାମିନୀକାଞ୍ଚନରେ ଆସକ୍ତ ଥିଲେ ଈଶ୍ୱରଙ୍କର ଉଦ୍ଦୀପନା ହୁଏନାହିଁ, ବିଷୟରସ ଶୁଖିଗଲେ ତତ୍କ୍ଷଣାତ୍ ଉଦ୍ଦୀପନା ହୁଏ ।'' *କେତେ ସାଧନାରେ ମନୁଷ୍ୟର ବାଲ୍ୟ ସୁଲଭ ସେ ଅଶ୍ରୁ

* ଶ୍ରୀ ଶ୍ରୀ ରାମକୃଷ୍ଣ ଉପଦେଶାମୃତ, ଦ୍ୱିତୀୟ ଭାଗ – ପ୍ରଥମ ଖଣ୍ଡ – ୪୩୪ ଉପଦେଶ

ନେତ୍ରପ୍ରାନ୍ତରେ ଏପରି ଦେଖାଦିଏ, ତାହା ପାଠକମାନେ ସାଧକଙ୍କ ଉଲ୍ଲିଖିତ ଉକ୍ତିରୁ ଅନୁମାନ କରନ୍ତୁ ।

ଜଣେ ଶ୍ରଦ୍ଧାସ୍ପଦ ବନ୍ଧୁଙ୍କ ମୁଖରୁ ସେ ଦିନ ଶୁଣିଥିଲୁଁ, ମଧୁସୂଦନ ବାଲ୍ୟକାଳରେ ଧୂଳିଖେଳର ଅତ୍ୟନ୍ତ ପ୍ରିୟ ଥିଲେ । ଯେତେବେଳେ ସେ ଧୂଳିଘର କରି ଖେଳୁଥିଲେ, ସେତେବେଳେ ସେ କ୍ଷୁଧା ତୃଷା ସବୁ ଭୁଲିଯାଇ ଏକମନରେ କେବଳ ସେଥିରେ ମାତୁଥିଲେ । କେହି ଯଦିବାଧା ଦିଏ, ସେ ପରମ ଶତ୍ରୁ । ସେହି ଧୂଳିଘରଟାକୁ ଭାଙ୍ଗିଦେଲେ ସେ ମନରେ କଷ୍ଟ ବହି ଭାବୁଥିଲେ ଯେହ୍ନେ ତାଙ୍କର ସୁନାଘରଟାକୁ କିଏ ଚୂନା କରି ପକାଇଲା । କିନ୍ତୁ ଏତେ ମାୟା ମମତା ଥାଇ ସୁଦ୍ଧା ପରକ୍ଷଣରେ ଯେତେବେଳେ ସ୍ନେହମୟୀ ମା ମନେ ପଡ଼ିଯାନ୍ତି, ତେତେବେଳେ ସେ ସବୁ ଭୁଲିଯାଇ ବ୍ୟାକୁଳ ଭାବରେ ମାଙ୍କ କୋଳକୁ ଲକ୍ଷ୍ୟ କରି ଚାଲିଯାନ୍ତି । ଶୈଶବରେ ତାହାଙ୍କର ଏପରି ତନ୍ମୟପ୍ରାଣତା ଏବଂ ମା ନାମରେ ବ୍ୟାକୁଳତା ଦେଖି ଦୟାମୟୀ ସେ ଆଦିଜନନୀ ତାଙ୍କ ପ୍ରତି ଅପାର ଦୟା ପ୍ରକାଶ କରି ଆପଣାର ଅଭୟ ଅଙ୍କ ପ୍ରଦାନ କରିବା ଆଶୟରେ ପଞ୍ଚମ ବର୍ଷରେସେ ଜନନୀଙ୍କି ହରଣ କରି ନେଇ ଯାଇଥିଲେ ଏବଂ ଆପଣାକୁ ଜାଣିବା ପାଇଁ ଦିବ୍ୟ ଦୃଷ୍ଟି ପ୍ରଦାନ କରିଥିଲେ ? 'ନାୟମାତ୍ମା ପ୍ରବଚନେନ ଲଭ୍ୟଃ ନ ମେଧୟା ନ ବହୁନା ଶ୍ରୁତେନ । ଯମେଷ ବୃଣୁତେ ତେନ ଲଭ୍ୟଃ ତସ୍ୟୈଷ ବୃଣୁତେ ତନୁଂ ସ୍ୱାଂ' ଉପନିଷଦର ଏହି ବାକ୍ୟ ଅନ୍ୟାନ୍ୟ ଭକ୍ତ ସାଧକ ପରି ତାହାଙ୍କ ଜୀବନରେ ମଧ ସତ୍ୟ ବୋଲି ପ୍ରମାଣିତ ହୋଇଛି । ସେହି ମୃତ୍ୟୁ ପୁଣି ବିଧାତାଙ୍କ ମଙ୍ଗଳମୟ ବିଧାନରେ ଅମୃତର ଦ୍ୱାର ଫିଟାଇଦେଲା । ମଧୁସୂଦନ ଗର୍ଭଧାରିଣୀ ଜନନୀଙ୍କି ହରାଇଲେ ସତ୍ୟ, କିନ୍ତୁ ବ୍ୟାକୁଳ ଭାବରେ 'ମା ମା' ବୋଲି ଡାକୁ ଡାକୁ ଖୋଜି ଖୋଜୁ ବିଶ୍ୱାସ ଦୃଷ୍ଟିରେ ସେହି ଜଗଜ୍ଜନନୀଙ୍କି ମାତୃରୂପରେ ଦେଖି ପାରିଲେ ଏବଂ ତାଙ୍କରି ଅଭୟ ଅଙ୍କର ଆଶ୍ରୟ ଲାଭ କରି ଧନ୍ୟ ହୋଇଥିଲେ । ଏହି ଭାବକୁ ମଧୁସୂଦନ ସମଗ୍ର ଜୀବନରେ ଦେଖାଇ ଯାଇଅଛନ୍ତି । ତାଙ୍କର ଦୈନନ୍ଦିନ ଘଟନାବଳୀ ଆଲୋଚନା କଲେ ଦେଖାଯାଏ ଯେ, ଦିନଯାକ ସାଂସାରିକ ନାନା କାର୍ଯ୍ୟରେ ଲିପ୍ତ ଥାନ୍ତି; କିନ୍ତୁ ମା ନାମ ସ୍ମରଣ କରିବାର ସମୟ (ସନ୍ଧ୍ୟା) ଆସିଲାକ୍ଷଣି ସେ ସବୁ ତଳେ ପକାଇ ଦେଇ ମାଙ୍କ ପାଖରେ ବସିବା (ଉପାସନା) ଲାଗି ବ୍ୟାକୁଳ ଭାବରେ ଚାଲି ଯାଉଥିଲେ ଏବଂ ସେ ଅଙ୍କାଶ୍ରୟ ଲାଭକରିବା ପାଇଁ ରଙ୍କ ପ୍ରାୟ ପ୍ରାର୍ଥନା କରୁଥିଲେ । ଜୀବନର ଶେଷ ମୁହୂର୍ତ୍ତରେ ମଧ ସେହି ଚିତ୍ର ଦେଖାଇ ଗଲେ । ସ୍ତ୍ରୀ ପୁତ୍ର କନ୍ୟା ଆଦି ବହୁ କୁଟୁମ୍ବଙ୍କର ସ୍ନେହ ମମତାରେ ଆଜୀବନ ଆବଦ୍ଧ ଥିଲେ ସୁଦ୍ଧା ଏବଂ ଆତ୍ମୀୟ

ବନ୍ଧୁବାନ୍ଧବଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସୁଦ୍ଧା ମାଙ୍କ କୋଳକୁ ଯିବାର ସମୟ ଆସିଲା କ୍ଷଣି ସେ ଚିରନ୍ତନ ମାୟାବନ୍ଧନକୁ ଏକାବେଳକେ ଭୁଲିଯାଇ ପ୍ରସନ୍ନ ମନରେ ପ୍ରସ୍ଥାନ କଲେ । ଏପରି ନିରାତଙ୍କ ଭାବରେ ମରଣକୁ ଆଲିଙ୍ଗନ କରିବା କଣ କଠୋର ସାଧନାର ଫଳ ନୁହେଁ ? ଏହି ମୁହୂର୍ତ୍ତରେ ଆତ୍ମାର ମହତ୍ତ୍ୱ ସିନା ଚିହ୍ନାଯାଏ । ଧର୍ମସାଧନ ତ କେବଳ ପରକାଳପାଇଁ ନୁହେଁ ବା ମୃତ୍ୟୁ ଉତ୍ତାରେ ସ୍ୱର୍ଗଭୋଗ କରିବାପାଇଁ ନୁହେଁ । କିନ୍ତୁ ସେ ପରୋକ୍ଷ ବିଷୟ ଅପେକ୍ଷା ପ୍ରତ୍ୟକ୍ଷୀଭୂତ ଘଟଣା ଯେ ସତ୍ୟ ଏବଂ ଅଧିକ ଶିକ୍ଷାପ୍ରଦ, ଏହା ସର୍ବସମ୍ମତ । ଅନ୍ତିମ ଶଯ୍ୟାରେ ମଧୁସୂଦନ ତାହାଙ୍କର ଅମୃତ ସନ୍ତାନତ୍ୱର ଉତ୍ତମ ପରିଚୟ ପ୍ରଦାନ କରିଅଛନ୍ତି । ସେ ସମୟରେ ତାଙ୍କର ପ୍ରତ୍ୟେକ କଥା ଶିକ୍ଷାପ୍ରଦ ଏବଂ ଅପାର୍ଥିବ ଭାବାପନ୍ନ । ତନ୍ମଧ୍ୟରୁ କେତୋଟି ଉଲ୍ଲେଖଯୋଗ୍ୟ ଘଟନା ପାଠକମାନଙ୍କ ସମକ୍ଷରେ ଆନୁପୂର୍ବିକ ପ୍ରକାଶ କରୁଅଛୁ ।

ବହୁକାଳରୁ ସେ ଅମ୍ଳଶୂଳ ରୋଗରେ ପୀଡ଼ିତ ଥିଲେ । ମଝେ ମଝେ ଏହି ଉତ୍କଟ ରୋଗର ଅସହ୍ୟ ଯନ୍ତ୍ରଣାରେ କିଛି ଦିନକୁ ସେ ଶଯ୍ୟାଶାୟୀ ହେଉଥିଲେ । ଅଧିକାଂଶ ସମୟ ଏହି ରୋଗ ଯନ୍ତ୍ରଣା ଭୋଗ କରୁଥିଲେହେଁ ସେ ତତ୍‌ପ୍ରତି ଭ୍ରୂକ୍ଷେପ ନକରି କଥଞ୍ଚିତ୍ ସ୍ୱକାର୍ଯ୍ୟ ସାଧନ କରି ଯାଉଥିଲେ । କିନ୍ତୁ ୧୯୧୨ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସରେ ଏହିରୋଗ ଏପରି ଭୀଷଣ ମୂର୍ତ୍ତି ଧାରଣ କରି ପ୍ରବଳଭାବରେ ଆକ୍ରମଣ କଲାଯେ, ଏଥର ସେହି ଆଶ୍ରୟଭୂତ ଦେହ ସଙ୍ଗେ ସଙ୍ଗେ ଆପେ ଲୟ ଭଜିଲା । ଉକ୍ତ ମାସର ୧୫ ତାରିଖରେ ବେଦନା ହଠାତ୍ ଅଦ୍ଭୁତ ଭାବରେ ବଢ଼ିଗଲା । ସେହିଦିନ କଟକ ଟାଉନ୍‌ହଲ୍‌ରେ ତାଙ୍କର ପରମସଖା ଏବଂ ଗୁରୁ ରାଧାନାଥଙ୍କର ପ୍ରତିମୂର୍ତ୍ତି– ଉନ୍ମୋଚନ ଅନୁଷ୍ଠିତ ହେବବୋଲି ପୂର୍ବରୁ ବିଜ୍ଞାପିତ ହୋଇଥିଲା । ମଧୁବାବୁ ସୁସ୍ଥ ଥିଲେ ଏ ଉତ୍ସବରେ ଉପଯୁକ୍ତ ପୁରୋଧା ରୂପେ ବରିତ ହୋଇ ପରମ ଆନନ୍ଦ ସହକାରେ ଉକ୍ତ କାର୍ଯ୍ୟ ସମ୍ପାଦନ କରିଥାନ୍ତେ; କିନ୍ତୁ ତାହା ସମ୍ପାଦନ କରିବା ଦୂରେ ଥାଉ, ସେ ଏପରି ପୀଡ଼ାଗ୍ରସ୍ତ ହୋଇ ପଡ଼ିଲେ ଯେ ସ୍ୱହସ୍ତରେ ଖଣ୍ଡିଏ ପତ୍ର ଲେଖିବା ସୁଦ୍ଧା ଅସମ୍ଭବ ହେଲା । ସଭାରେ ଉପସ୍ଥିତ ହୋଇ ନପାରି ସେ ରୋଗଶଯ୍ୟାରେ ଅତ୍ୟନ୍ତ ଦୁଃଖ ପ୍ରକାଶ କରିଥିଲେ । ସଭାସ୍ଥଳରେ ମଧ୍ୟ ସମସ୍ତ ବନ୍ଧୁମାନେ ତାହାଙ୍କର ଅଭାବ ବିଶେଷ ଭାବରେ ଅନୁଭବ କରି ଉତ୍କଟ ରୋଗାକ୍ରାନ୍ତ ଥିବା ଅନୁମାନ କରି ପାରିଥିଲେ । ରୋଗଶଯ୍ୟାରେ ଦୁଃସହ ଯନ୍ତ୍ରଣା ସତ୍ତ୍ୱେ ମଧୁସୂଦନ ସେଦିନ ସଭାର କଥା ଜାଣିବାକୁ ଏତେ ବ୍ୟାକୁଳ ଥିଲେ ଯେ ସେଠାରୁ ପ୍ରତ୍ୟାଗତ କୌଣସି ବିଶିଷ୍ଟ ବନ୍ଧୁଙ୍କୁ ଦେଖିଲାକ୍ଷଣି ଆପଣାର ଅନୁପସ୍ଥିତିଜନିତ ଦୁଃଖ

ଜଣାଇ ସଭାର ଆନୁପୂର୍ବିକ ସମସ୍ତ ବିବରଣୀ ବୁଝିଗଲେ । ରାଧାନାଥ ବାବୁଙ୍କ ସ୍ମୃତିସଭାରେ ଯୋଗ ନଦେବା ସେହି ତାଙ୍କର ପ୍ରଥମ ଏବଂସେହି ମଧ୍ୟ ଅନ୍ତିମ ହୋଇଥିଲା ।

ପୀଡ଼ା କ୍ରମଶଃ ବୃଦ୍ଧି ପାଇବାର ଦେଖି ଅନ୍ୟାନ୍ୟ ଡାକ୍ତରଙ୍କ ସହିତ ଡାକ୍ତର ସାହେବଙ୍କୁ ଆଣି ଚିକିତ୍ସାର ବ୍ୟବସ୍ଥା ହେଲା; କିନ୍ତୁ ସେଥିରେ ତାଙ୍କର ଆନ୍ତରିକ ଘୃଣା ପ୍ରକାଶ ପାଇବାର ଜଣା ଯାଉଥିଲା । ଔଷଧାଦି ଗ୍ରହଣ ସମୟରେ ସେ ଅନିଚ୍ଛା ପ୍ରକାଶ କରୁଥିଲେ । ପ୍ରତ୍ୟେକ ମହାପ୍ରାଣଙ୍କର ଏ ବିଷୟରେ ଐକ୍ୟ ଦେଖାଯାଏ । ଦିନେ ଜଣେ ବନ୍ଧୁ ଔଷଧ ଦେବାକୁ ଆସନ୍ତେ, ସେ କହିଲେ, ''ଦେଖୁନ୍, ଆଉ କି ଧରେ ରାଖା ଭାଲ ଦେଖାୟ ?'' ଡାକ୍ତର ସାହେବ ପ୍ରତିଦିନ ସକାଳେ ତାଙ୍କୁ ଦେଖିବାକୁ ଆସୁଥିଲେ । ଦିନେ ତାଙ୍କୁ ଦେଖି ସେ କ୍ଷୀଣସ୍ୱରରେ କହିଲେ – 'ବୋଧହୁଏ ମୋତେ ରକ୍ଷା କରିବା ଲାଗି ଈଶ୍ୱର ଆପଣଙ୍କୁ ପଠାଇ ଅଛନ୍ତି ।' ସାହେବ ବିଶ୍ରାମ କରିବାକୁ ଅନୁରୋଧ କରିବାରୁ ପ୍ରତ୍ୟୁତ୍ତରରେ କହିଲେ, "I am dying inch by inch and I will take rest in God." ଆଉ ଦିନେ କଥାପ୍ରସଙ୍ଗରେ ଜଣେ ଡାକ୍ତର ବନ୍ଧୁଙ୍କୁ କହିଲେ – 'ଏ ସଂସାରେ ସକଲାଇ ଅସ୍ଥିର ।' ଉପରକୁ ଅଙ୍ଗୁଳି ନିର୍ଦ୍ଦେଶ କରି 'କେବଲ ଉହାଇ ସ୍ଥିର ।' ମଧୁସୂଦନ ରୋଗ ଶଯ୍ୟାରେ ପୀଡ଼ାର କିଛି ଭୟ ନରଖି କେବଳ ଜନନୀଙ୍କ ନିକଟକୁ ଯିବାପାଇଁ ପ୍ରସ୍ତୁତ ହେଉଥିଲେ । ତେଣୁ ତୀବ୍ର ଯନ୍ତ୍ରଣାରେ ସୁଦ୍ଧା ତାଙ୍କ ମୁଖରୁ ପ୍ରସନ୍ନତା ଲୋପ ପାଇ ନଥିଲା । ଦର୍ଶନାର୍ଥୀ କୌଣସି ବନ୍ଧୁଙ୍କୁ ଦେଖିଲାକ୍ଷଣି ହସ୍ତ ସଙ୍କେତରେ ଶଯ୍ୟା ପାର୍ଶ୍ୱକୁ ଡାକି ଚିକିତ୍ସକମାନଙ୍କ ନିଷେଧ ନମାନି ସୁସ୍ଥବତ୍ କୁଶଳ ପ୍ରଶ୍ନ ଓ ଆଳାପ କରୁଥିଲେ ଏବଂ ସେଥି ମଧ୍ୟରେ କେତେ ଉତ୍ତେଜନା, କେତେ ବ୍ୟାକୁଳତା, କେତେ କଣ ଭାବାବେଶ ହେଉଥିଲା, ତାହାର ଇୟତ୍ତା ନାହିଁ । ତେତେବେଳେ ସୁଦ୍ଧାହାତ ଉଠାଇ ନମସ୍କାର ଏବଂ କାହାରି ମୁଣ୍ଡରେ ହାତ ବୁଲାଇ ଆଶୀର୍ବାଦ କରିବାରେ ସେ କିଛି ମାତ୍ର ତ୍ରୁଟି କରି ନଥିଲେ । କିଏ ଜାଣେ, ସେ ମୃତ୍ୟୁ ନିଶ୍ଚିତ ଜାଣି ବନ୍ଧୁମାନଙ୍କ ଠାରୁ ଏପ୍ରକାର ଶେଷ ବିଦାୟ ଗ୍ରହଣ କରୁଥିଲେ ! ୧୯ ତାରିଖର ଘଟଣା ଆହୁରି ଅଦ୍ଭୁତ । ଘରେ ବେଶି ଲୋକ ନଥିବାବେଳେ ଶୁଶ୍ରୂଷାକାରୀ କନିଷ୍ଠ ଜାମାତା ଶ୍ରୀମାନ୍ ପ୍ରଫୁଲ୍ଲଚନ୍ଦ୍ର ବସୁଙ୍କ କରତଳରେ ୨୮ (ଅଙ୍କ) ଲେଖି ଦେଲେ । ସେ ଅବାକ୍ ହୋଇ କିଛି ବୁଝି ନପାରିବାରୁ ମଧ୍ୟମ ପୁତ୍ର ଶ୍ରୀମାନ୍ ପ୍ରଶାନ୍ତଙ୍କ ହାତ ଟାଣିନେଇ ଅଙ୍ଗୁଳିରେ ସେହିପରି ଲେଖିଦେଲେ ଏବଂ ସେହି ତାରିଖ ମନେ ରଖିବାକୁ ସଙ୍କେତ କଲେ । ଅବଶ୍ୟ ତେତେବେଳେ କେହି ବୁଝିପାରି ନଥିଲେ । କିନ୍ତୁ ଦୁଇବର୍ଷ ପୂର୍ବର ସ୍ୱପ୍ନଦୃଷ୍ଟ ବୃତ୍ତାନ୍ତ ତାହାଙ୍କ ଜୀବନରେ ସଫଳ ହୋଇଥିଲା । ପାଠକମାନେ ଜାଣନ୍ତି

ଯେ ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ତାଙ୍କର ପ୍ରାଣର ପ୍ରିୟତମ ବନ୍ଧୁ ଥିଲେ । ବହୁ କାଳରୁ ସେ ପରଲୋକଗତ ହୋଇଥିଲେ ମଧ ଆଜୀବନ ତାହାଙ୍କୁ ସ୍ମରଣ କରୁଥିଲେ । ତାଙ୍କର ପ୍ରତ୍ୟେକ କଥା, ଏପରିକି ଦିନଦିନକର ଅତି ସାମାନ୍ୟ ଘଟନା ପର୍ଯ୍ୟନ୍ତ ମଧୁସୂଦନଙ୍କ ସ୍ମୃତିପଟରେ ଦୃଢ଼ ଭାବରେ ଅଙ୍କିତ ଥିଲା । ତାହାଙ୍କ କଥା ସେ ଅନେକ ସମୟରେ ଭାବୁଥିଲେ ଏବଂ ବନ୍ଧୁମାନଙ୍କ ନିକଟରେ କହୁ କହୁ ଅଶ୍ରୁ ବର୍ଷଣ କରି ପକାଉଥିଲେ । ୧୯୧୦ ଖ୍ରୀଷ୍ଟାବ୍ଦର ଡିସେମ୍ବର ମାସ ୨୮ ତାରିଖରେ ଅର୍ଥାତ୍ ପ୍ୟାରୀମୋହନଙ୍କ ଶ୍ରାଦ୍ଧଦିବସରେ ମଧୁସୂଦନ ସ୍ୱପ୍ନରେ ଦେଖିଲେ, ଉର୍ଦ୍ଧ୍ୱ ଦେଶରେ ତାଙ୍କର ପରମ ବନ୍ଧୁ ପ୍ୟାରୀମୋହନ ଓ ରାଧାନାଥ ଗୋଟିଏ ଶିଶୁକୁ ସଙ୍ଗରେ ଘେନି ତାଙ୍କ ଆଡ଼କୁ କଣ ସଙ୍କେତ କରୁଅଛନ୍ତି । ପ୍ୟାରୀମୋହନ ପଚାରିଲେ, ''ମଧୁ, ଆଜି ଡ଼ିସେମ୍ବର ୨୮ତାରିଖ, ମନେ ଅଛି ତ ?'' ତତ୍ପରେ ଶିଶୁଟିକି ଦେଖାଇ କହିଲେ, ''ଏହାକୁ ଚିହ୍ନି ପାରୁଅଛ ?'' ମଧୁସୂଦନ ତାହାକୁ ନିରୀକ୍ଷଣକରି ଚିହ୍ନି ପାରିଲେଯେ– ସେ ତାଙ୍କର ନବସ୍ୱର୍ଗପ୍ରବାସୀ ଶିଶୁ ପୌତ୍ର । ସ୍ୱପ୍ନରେ ତାଙ୍କର ଧର୍ମଜୀବନର ଉପକ୍ରମଣିକା ହୋଇଥିଲା, ସ୍ୱପ୍ନରେ ମଧ ତାଙ୍କ ଜୀବନର ଯବନିକାପାତ ହେଲା ।

ଯନ୍ତ୍ରଣାର ଟିକିଏ ଉପଶମ ଦେଖିଲେ ସେ ଶଯ୍ୟାରେ ନ ଶୋଇ ବସିବାକୁ ଭଲ ପାଉଥିଲେ ଏବଂ ଆଲୋକମୟ ପ୍ରଶସ୍ତ କକ୍ଷରେ ରହିବାକୁ ଇଚ୍ଛା ପ୍ରକାଶ କରୁଥିଲେ । ଦିନେ ଡାକ୍ତର ସାହେବଙ୍କ ଆଦେଶକ୍ରମେ ତାଙ୍କୁ ସେହିପରି ଗୋଟିଏ ବଡ଼ ଘରକୁ ଅଣାଗଲା । ସେ ଘରେ ପ୍ରବେଶମାତ୍ରେ ବିସ୍ତାରିତ ହୃଦୟରେ କହିଲେ, ''ଆହା, କି ସୁନ୍ଦର ଆଲୋକ !'' ବ୍ରହ୍ମସନ୍ତାନ ତତ୍କ୍ଷଣାତ୍ ଯେହ୍ନେ ସେହି ଆଲୋକରଶ୍ମି ଭିତରେ ଚିନ୍ମୟ ଜ୍ୟୋତିର ସତ୍ତା ଅନୁଭବ କଲେ* ଏବଂ ପଛେ ପଛେ ଭକ୍ତିଗଦ୍ ଗଦ ଚିତ୍ତରେ ସେହି ଜ୍ୟୋତିର୍ମୟ ଦେବଙ୍କୁ ଆରାଧନା କଲେ । ପ୍ରାର୍ଥନାନ୍ତେ ସେ ବ୍ରହ୍ମାନନ୍ଦ କେଶବଚନ୍ଦ୍ର ଓ ଡାକ୍ତର ମାର୍ଟିନୋ ପ୍ରଭୃତିଙ୍କ ଚିତ୍ରପଟ ଦେଖିବାକୁ ମାଗିଥିଲେ । ସେ ମୂର୍ତ୍ତିମାନ ନିରୀକ୍ଷଣ କରି କି ସଙ୍କେତ ଲାଭ କଲେ, ତାହା ସେହି ଜାଣିଥିବେ । ମଝିରେ କିଛି କାଳ ଏହିପରି ଭଲ ଥିବା ସମୟରେ ଦିନେ ଡାକ୍ତର ସାହେବ ଆସି କହିଲେ – "I see, you have much improved" କିନ୍ତୁ ମଧୁସୂଦନ ନିମ୍ନୋକ୍ତ ପ୍ରକାର ଅଦ୍ଭୁତ ଉତ୍ତରରେ ସାହେବଙ୍କର ଭ୍ରାନ୍ତି ଦୂର କରି ଦେଇଥିଲେ – "I am feeling well,but there is a proverb –

* ଗୀତାର ୧୫ଶ ଅଧ୍ୟାୟରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖରୁ ପ୍ରକାଶ ପାଇଅଛି ଯେ –

ଯଦାଦିତ୍ୟଗତଂ ତେଜୋ ଜଗଦ୍ଭାସୟତେଽଖିଳଂ ।
ଯଚ୍ଚନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ତେଜୋ ବିଦ୍ଧି ମାମକଂ । ୧୨ ।

frog says – 'frogling, the world is changing everymoment." (ବେଙ୍ଗ ବୋଲେ ବେଙ୍ଗୁଲି ଲୋ, ମହୀ କ୍ଷଣ କ୍ଷଣକେ ଆନ ।)

ଦିନେ ଯନ୍ତ୍ରଣାରେ ଛଟପଟ ହେଉଥିବାର ଦେଖି ତାଙ୍କର ଜ୍ୟେଷ୍ଠ ପୁତ୍ର ଡାକ୍ତର ଜୟନ୍ତ ରାଓ କହିଲେ, କ୍ଷଣକ ପରେ 'ଏନିମା' ଦେବି – ଯନ୍ତ୍ରଣାର ଉପଶମ ହେବ । ଉତ୍ତରରେ ପିତା ହସି ହସି ଧୀରସ୍ୱରରେ କହିଲେ, 'ଏନିମା ଜାନିନା, ଜାନି ସେଇ ଚିନିମା' (ଚିନ୍ମୟୀ ମା) । ଏହା କହି ଉନ୍ମୀଳିତ ନେତ୍ରରେ ଊର୍ଦ୍ଧ୍ୱଦେଶକୁ ସଙ୍କେତ କଲେ । ଏହି ସମୟରେ କେହି ବନ୍ଧୁ ଉପାସନା କରିବାକୁ ଜଣାଇଲେ ସେ ଆନନ୍ଦରେ ସମ୍ମତି ପ୍ରକାଶକରି ସେଥିରେ ଯୋଗ ଦେଉଥିଲେ । ଦିନେ ତାଙ୍କର ଗୁଣାନୁରକ୍ତ ବନ୍ଧୁ ମାନ୍ୟବର ମଧୁସୂଦନ ଦାସ ଆସି ତାଙ୍କ ଶଯ୍ୟା ପାର୍ଶ୍ୱରେ ପ୍ରାର୍ଥନା କରିବାକୁ ଅନୁମତି ମାଗନ୍ତେ ସେ ସମସ୍ତ ଯନ୍ତ୍ରଣା ଭୁଲିଯାଇ ଆନନ୍ଦରେ ତାହାଙ୍କ ପ୍ରାର୍ଥନାରେ ଯୋଗ ଦେଇଥିଲେ । ପ୍ରାର୍ଥନାନ୍ତେ ଦାସ ମହାଶୟ ପଚାରିଲେ, ଭାଇ, ବିଶେଷ କଷ୍ଟ ହେଉଅଛି କି ? କିନ୍ତୁ ଉତ୍ତର ପାଇଲେ – 'ନା, ମୋହର କିଛି କଷ୍ଟ ନାହିଁ ।' ଏହା କ'ଣ ଯଥାର୍ଥ ଯୋଗସାଧନାର ଫଳ ନୁହେଁ ? ଆତ୍ମପ୍ରସାଦ ଜନ୍ମିଲେ ସର୍ବ ପ୍ରକାର ଦୁଃଖର ଧ୍ୱଂସ ହୋଇଯାଏ । ଗୀତା ପାଠରୁ ଜଣାଯାଏ, ପ୍ରସନ୍ନଚିତ୍ତର ବୁଦ୍ଧି ଶୀଘ୍ର ଆତ୍ମାରେ ପ୍ରତିଷ୍ଠିତ ହୁଏ ।

ପ୍ରସାଦେ ସର୍ବଦୁଃଖାନାଂ ହାନିରସ୍ୟୋପଜାୟତେ ।
ପ୍ରସନ୍ନଚେତସୋହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ । ୨ୟ । ୭୫

ଶୌଚ ଧର୍ମର ଗୋଟିଏ ଅନ୍ୟତମ ନିଦର୍ଶନ । ମଧୁସୂଦନ ଆଜୀବନ ଏକାନ୍ତ ଶୌଚ ପରାୟଣ ଥିଲେ । କି ଆହାର୍ଯ୍ୟ କି ପରିଧେୟ କି ବକ୍ତବ୍ୟ କି ମନ୍ତବ୍ୟ ସବୁଥିରେ ସେ ଏହା ପାଳନ କରି ଆସୁଥିଲେ । ପରିଷ୍କୃତ ପରିଚ୍ଛନ୍ନ ନ ରହିଲେ ତାହାଙ୍କ ପ୍ରାଣରେ ଶାନ୍ତି ହେଉ ନଥିଲା । ରୋଗଶଯ୍ୟାରେ ଏପରି ଅଶକ୍ତ ଅବସ୍ଥାରେ ମଧ ତାଙ୍କର ସେ ଶୌଚ ପ୍ରତି ତୀକ୍ଷ୍ଣ ଦୃଷ୍ଟି ଥିଲା । ଗୋଟିଏ ସାମାନ୍ୟ ଦୃଷ୍ଟାନ୍ତ ଏହି – ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଦନ୍ତଧାବନ କ୍ରିୟାରୁ ମଧ ବିରତ ହୋଇ ନଥିଲେ ।

୨୬ ତାରିଖ ଦିନ ତାଙ୍କର ପ୍ରାଣାଧିକ କନିଷ୍ଠ ଶ୍ରୀଯୁକ୍ତ ଜଗନ୍ନାଥ ରାଓଙ୍କୁ ବିଶେଷ ପ୍ରୟୋଜନରେ କଲିକତା ଯିବାକୁ ପଡ଼ିଲା । ତହୁଁ ପିତୃସମ ଜ୍ୟେଷ୍ଠଙ୍କ ନିକଟରେ ଉପସ୍ଥିତ ହୋଇ ପ୍ରକାଶ କଲେ, ''ଦାଦା, ଯଦି ଅନୁମତି ଦେବ ତାହାହେଲେ ଦୁଇ ତିନି ଦିନ ମଧରେ କଲିକତାର କାର୍ଯ୍ୟ ସାରି ଫେରି ଆସିବି ।'' ସେଦିନ ତାଙ୍କର ନାଡ଼ୀର ଅବସ୍ଥା ଭଲ ନଥଲେହେଁ ସେ ବାରଣ ନକରି କହିଲେ – ''ବାବା, ଯାଅ, କିନ୍ତୁ ପରଦିନ

(୨୮ ତାରିଖ) ସକାଳେ ଯେପରି ଆସିବାକୁ ହେବ ।'' ଜଗନ୍ନାଥ ବାବୁ ସେଥିରେ ସ୍ୱୀକୃତ ହୋଇ କଲିକତା ପ୍ରସ୍ଥାନ କଲେ । ତତ୍‌ପରଦିନ ୨୭ ତାରିଖରେ ତାଙ୍କର ରୋଗଯନ୍ତ୍ରଣା ପ୍ରବଳତର ହୋଇପଡ଼ିଲା ଏବଂ ନାଡ଼ୀର ଅତି କ୍ଷୀଣ ଅବସ୍ଥା ଦେଖି ପରିବାରସ୍ଥ ସମସ୍ତେ ଶୋକାକୁଳ ହୋଇ ରୋଦନ କରିବାକୁ ଲାଗିଲେ । ରୋଦନ ବାରଣ କରି ସେ କହିଲେ, ''ମୋର ଯିବାକୁ ବିଳମ୍ବ ଅଛି । ତୁମ୍ଭେମାନେ ଏହିକ୍ଷଣି କାହିଁକି କାନ୍ଦୁଛ ? ଯାଅ, ଆହାରାଦି କର ।'' କିନ୍ତୁ ସେହି ଦିନ ସଂଜ୍ଞା ଲୋପ ପାଇ ନଥିଲେ ହେଁ କଥା ବଡ଼ ଅସ୍ପଷ୍ଟ ହୋଇ ପଡ଼ିଲା । ସମସ୍ତେ ବିଶୁଷ୍କ ହୃଦୟରେ ଅତି ଦୀନ କ୍ଷୀଣ ପ୍ରାଣରେ ଆସନ୍ନ ମରଣର ଆଶଙ୍କା କରି ଉଦ୍‌ବିଗ୍ନ ହୋଇ ପଡ଼ିଲେ । କେବଳ ସେହି ଏକା ନିରୁଦ୍‌ବେଗରେ ମରଣକୁ ବରଣ କରୁଥିଲେ । ଏହି ରୂପେ ଶୋକ ଦୁଃଖରେ ନିସ୍ତବ୍‌ଧ ଭାବରେ ସେ ଦିନଟି କଟିଗଲା । ସେହି ସାଙ୍କେତିକ ୨୮ ତାରିଖ ଆସି ଉପସ୍ଥିତ ହେଲା । ପ୍ରଭାତ ସମୟରେ ଜଗନ୍ନାଥବାବୁ କଲିକତାରୁ ଆସି ଉପସ୍ଥିତ ହେଲେ । ପ୍ରାଣପ୍ରିୟ କନିଷ୍ଠଙ୍କୁ ଦେଖିବା ଉତ୍ତାରେ ତାଙ୍କର ଶେଷଶ୍ୱାସ ପ୍ରବାହିତ ହେବାକୁ ଲାଗିଲା । କିଛିକ୍ଷଣ ହରିନାମ କୀର୍ତ୍ତନ ସହିତ ନୀରବରେ ରହି ବ୍ରହ୍ମସନ୍ତାନ ମଧୁସୂଦନ ବାହୁ ଟେକି ସେହି ଚିନ୍ମୟୀ ଜନନୀଙ୍କ କୋଳକୁ ଯିବାପାଇଁ ଯେହ୍ନେ ସଙ୍କେତ କଲେ । ଚାହୁଁ ଚାହୁଁ ତାଙ୍କର ଅମର ଆତ୍ମା କ୍ଷଣେ ଦେହକୁ ଦିବ୍ୟ ଜ୍ୟୋତିରେ ଉଦ୍ଭାସିତ କରିଦେଇ ପୁଣ୍ୟଧାମକୁ ପ୍ରୟାଣ କଲା । ଏହିରୂପେ ମଧୁସୂଦନଙ୍କର ଜୀବନନାଟିକାରେ ଯବନିକା ପତନ ହେଲା ।

ବିଧାତା ଯେଉଁ କାର୍ଯ୍ୟ ସମ୍ପାଦନ ନିମିତ୍ତ ମଧୁସୂଦନଙ୍କୁ ଏ ପୃଥିବୀକି ପ୍ରେରଣ କରିଥିଲେ, ତାହା ସୁସମ୍ପନ୍ନ ହୋଇଅଛି । ଏକନିଷ୍ଠଭାବରେ ଜନନୀରୂପିଣୀ ମାତୃଭୂମି ଏବଂ ମାତୃଭାଷାର ସେବା କରି ତାଙ୍କର ଜୀବନ ଧନ୍ୟ ହୋଇଅଛି । ତାଙ୍କର ମରଦେହ ଅନ୍ତର୍ହିତ ହୋଇଅଛି ସତ୍ୟ, କିନ୍ତୁ ଅମର ଆତ୍ମା ଏ ଭୂମିରେ ଯେପରି ପ୍ରଭାବ ବିସ୍ତାର କରିଅଛି ଏବଂ କରୁଅଛି, ତାହା କଦାପି ଅନ୍ତର୍ହିତ ହେବ ନାହିଁ । ତାହାଙ୍କର ସଦ୍‌ଜ୍ଞାନୋଜ୍ଜ୍ୱଳ ଜୀବନ ଶତ ଶତ ହୃଦୟରୁ ମୋହାନ୍ଧକାର କ୍ରମଶଃ ଦୂର କରୁଅଛି ଏବଂ କରିବ । ଆଶାର କଥା, ସେହି ମହାପ୍ରାଣକୁ ଆଦର୍ଶ ରଖି କେତେ କେତେ କ୍ଷୁଦ୍ର ମଧୁସୂଦନ ଦିନେ ଏ ଭୂମିରୁ ମସ୍ତକ ଉତ୍ତୋଳନ କରିବେ ଏବଂ ପରଲୋକରେ ତାହାଙ୍କର ଆତ୍ମା ଅନନ୍ତ ଉନ୍ନତି ପଥରେ ଅଗ୍ରସର ହେବ । ତାଙ୍କର ନୀତିଶୁଦ୍ଧ ସାହିତ୍ୟ– ମଣି ମାତୃଭାଷାର ସାହିତ୍ୟକୁ ପବିତ୍ର ଏବଂ ଗୌରବାନ୍ୱିତ କରିଅଛି । ଯେ ପର୍ଯ୍ୟନ୍ତ ଉତ୍କଳଭାଷାର ସତ୍ତା ଥିବ,ସେ କାଳଯାଏ ଏ ଗୌରବ କଦାପି ଲୋପ ପାଇବ ନାହିଁ, ଚରିତ୍ରର ବଳ ଏବଂ ଧର୍ମର

ଜ୍ୟୋତିରେ ସେ ଜନ୍ମଭୂମି ଉତ୍କଳର ଯେ ମହୋପକାର ସାଧନ କରିଅଛନ୍ତି, ସେଥିପାଇଁ ସେ ଚିରକାଳ ଉତ୍କଳସନ୍ତାନଙ୍କର ହୃଦୟାରାଧ୍ୟ ହୋଇ ରହିବେ ।

ଆମ୍ଭେମାନେ ଏତିକିରେ ମଧୁସୂଦନଙ୍କ ପୁଣ୍ୟ ଚରିତର ଉପସଂହାର କରୁଅଛୁଁ । ଏଥିରେ କେବଳ ତାଙ୍କର ଗୁଣାବଳୀର ପ୍ରଶଂସା ଦେଖି କାହାରିକୁ ଏପରି କହିବାର ଶୁଣିଅଛୁଁ ଯେ, ମଧୁବାବୁଙ୍କର କଣ କିଛି ଦୋଷ ନଥିଲା ? ପାଠକମାନେ କ୍ଷମା କରିବେ । ଏ ଦୀନ ଲେଖକ ତାଙ୍କର ଦୋଷଗୁଡ଼ିକ ଖୋଜି ଖୋଜି ସଂଗ୍ରହ କରି ସର୍ବସମକ୍ଷରେ ପ୍ରକାଶ କରିବାପାଇଁ ଲେଖନୀ ଧାରଣ କରିନାହିଁ । କୌଣସି ଜୀବନଚରିତଲେଖକ ମଧ ତାହା କରିପାରନ୍ତି ନାହିଁ । ମହାତ୍ମାମାନଙ୍କର ସଦ୍‌ଗୁଣର ଅନୁକରଣ ଲାଗି ତ ଲୋକେ ଜୀବନଚରିତ ପାଠ କରିଥାନ୍ତି । ସେଥିରେ ଦିଓଟି ଗୋଟିଏ ଦୋଷ ଟାଣି ଓଟାରି ଆଣି ଦେଖାଇଲେ କି ସୁଫଳ ହେବ, ବୁଝି ପାରିଲି ନାହିଁ । ମନୁଷ୍ୟମାତ୍ରେ ଭ୍ରମପ୍ରମାଦପୂର୍ଣ୍ଣ । ମାନବୋଚିତ ଭ୍ରମପ୍ରମାଦ ତାଙ୍କର ନ ଥିଲା, ଏହା ଆମ୍ଭେମାନେ କହି ନାହୁଁ । ତାଙ୍କର ସେ ଦୁର୍ବଳତା ଥିଲା, କିନ୍ତୁ ସେ ସବୁ ତ୍ରୁଟିକୁ ସାଧାରଣ ଧରିନେଲେ, ତାଙ୍କ ଜୀବନର ଯାହା ବିଶେଷତ୍ୱ ବା ଯାହା ମହତ୍ତ୍ୱ, ତାହାକୁ ଶିକ୍ଷାର୍ଥ ସାଧାରଣଙ୍କ ସମକ୍ଷରେ ଉପସ୍ଥାପିତ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ଥିଲା । ଲେଖକର ବିଶ୍ୱାସ, ଏତଦ୍ଵାରା ସତ୍ୟର ଅପଳାପ ହୋଇନାହିଁ । ଏ ପ୍ରବନ୍ଧରେ ମଧୁସୂଦନଙ୍କ ସାହିତ୍ୟ ସେବା ସମ୍ବନ୍ଧରେ କିଛି ଆଲୋଚନା କରିବାକୁ ଇଚ୍ଛା କରିଥିଲୁଁ, କିନ୍ତୁ ନାନା କାରଣରୁ ସେ ପ୍ରସଙ୍ଗ ଏହିକ୍ଷଣି ବର୍ଜନ କରି ସହୃଦୟ ପାଠକମାନଙ୍କଠାରୁ ବିଦାୟ ଗ୍ରହଣ କରୁଅଛୁଁ ।



# ପରିଶିଷ୍ଟ

## ସ୍ୱର୍ଗୀୟ ରାୟ ମଧୁସୂଦନ ରାଓ ବାହାଦୂରଙ୍କ ସଂକ୍ଷିପ୍ତ ଜୀବନ-ବୃତ୍ତାନ୍ତ

*ପଣ୍ଡିତ ମୃତ୍ୟୁଞ୍ଜୟ ରଥ*

(ଏହା ୧୯୧୫ ମସିହାରେ ମଧୁସୂଦନ ଗ୍ରନ୍ଥାବଳୀ'ରେ ମୁଖବନ୍ଧ ରୂପେ ସ୍ଥାନ ପାଇଥିଲା । ଲିଖନ କାଳ ୧/୧୧/୧୯୧୫)

୧୮୫୩ ଖ୍ରୀଷ୍ଟାବ୍ଦର ଜାନୁଆରୀ ମାସ ୨୯ ତାରିଖରେ ପୂଣ୍ୟମୟୀ ଶ୍ରୀପଞ୍ଚମୀ ଦିବସରେ ମଧୁସୂଦନ ପୁଣ୍ୟଧାମ ପୁରୀନଗରୀରେ ଜନ୍ମଗ୍ରହଣ କରିଥିଲେ । ଅଷ୍ଟାଦଶ ଶତାବ୍ଦୀରେ ଅଥବା ବ୍ରିଟିଶ ଆଗମନ ପୂର୍ବେ ଯେଉଁ ବ୍ରାତ୍ୟ ମରହଟ୍ଟା କ୍ଷତ୍ରିୟମାନେ ଏ ଦେଶକୁ ଆସି ବାସ ସ୍ଥାପନ କରିଥିଲେ, ତନ୍ମଧ୍ୟରେ ତାଙ୍କର ପିତାମହ ସଦାଶିବ ରାଓ ଜଣେ । ତାଙ୍କର ଏକମାତ୍ର ପୁତ୍ର ଏବଂ ମଧୁସୂଦନଙ୍କର ଜନକ ଭାଗୀରଥି ରାଓ ବାଲ୍ୟକାଳରେ ସାମାନ୍ୟ ଶିକ୍ଷାଲାଭ କରିଥିବାରୁ ପୋଲିସ୍ କାର୍ଯ୍ୟଦ୍ୱାରା ଯତ୍କିଞ୍ଚିତ୍ ଉପାର୍ଜନ କରିବାକୁ କ୍ଷମ ହୋଇଥିଲେ । ତାଙ୍କର ସହଧର୍ମିଣୀ ଅମ୍ବିକା ଦେବୀ ଯେପରି ପତିପ୍ରାଣା, ସେହିପରି ମଧ ପୁତ୍ରବତ୍ସଳା ଥିଲେ । ସର୍ବ ଗୁଣରେ, ବିଶେଷତଃ ସୁଶୀଳତା ଗୁଣରେ, ପ୍ରତିବାସିମାନଙ୍କର ଶ୍ରଦ୍ଧା ଓ ଅନୁରାଗ ଆକର୍ଷଣ କରିଥିଲେ । କିନ୍ତୁ ମଧୁସୂଦନ ଏପରି ଜନନୀଙ୍କ ହସ୍ତରେ ଲାଳନପାଳନର ସୌଭାଗ୍ୟ ଅଧିକକାଳ ପାଇ ନଥିଲେ । ଅମ୍ବିକା ଦେବୀ ତାଙ୍କର କନୀୟାନ୍ ଜଗନ୍ନାଥଙ୍କୁ ଜନ୍ମଦେଇ ଇହଧାମ ପରିତ୍ୟାଗ କରିଥିଲେ । ଫଳତଃ ମଧୁସୂଦନ ଅତି ଶୈଶବରେ ପଞ୍ଚମ ବର୍ଷରେ ଅମୂଲ୍ୟ ମାତୃସ୍ନେହରୁ ବଞ୍ଚିତ ହୋଇଥିଲେ । ତାଙ୍କର ଲାଳନପାଳନ ଓ ଶିକ୍ଷାବିଧାନ ଉଭୟ ଭାର ପିତାଙ୍କ ଉପରେ ପଡ଼ିଥିଲା । ବାଲ୍ୟକାଳରେ ସେ ପ୍ରଥମେ ପୁରୀଜିଲ୍ଲା ଅନ୍ତର୍ଗତ ଗୋପର ଗ୍ରାମ୍ୟ ପାଠଶାଳାରେ ଦେଶୀୟ ରୀତିରେ ଶିକ୍ଷା ଆରମ୍ଭ କଲେ । ପ୍ରାୟ ବର୍ଷକ ପରେ ଭୁବନେଶ୍ୱର

ତାହାଙ୍କ ପିତାଙ୍କର କାର୍ଯ୍ୟକ୍ଷେତ୍ର ହେବାରୁ ମଧୁସୂଦନ ସେଠାରେ ଗବର୍ଣ୍ଣମେଣ୍ଟ ପ୍ରତିଷ୍ଠିତ ମଧ୍ୟଶ୍ରେଣୀ ବିଦ୍ୟାଳୟରେ ଅଧ୍ୟୟନ କରିବାର ସୁବିଧା ଲାଭକଲେ । ତେତେବେଳେ ଏପ୍ରକାର ବିଦ୍ୟାଳୟମାନଙ୍କରେ ଓଡ଼ିଆ ଓ ବଙ୍ଗଳା ଉଭୟଭାଷାରେ ଶିକ୍ଷା ଦିଆଯାଉଥିଲା । ଏହିଠାରେ ସେ ନିଜ ପ୍ରତିଭାଗୁଣରେ ଶିକ୍ଷକ ଏବଂ ପରିଦର୍ଶକ ଉଚ୍ଚ କର୍ମଚାରୀମାନଙ୍କ ସୁଦୃଷ୍ଟିରେ ପଡ଼ିବାରୁ ତାହାରି ଫଳରେ ଅବସ୍ଥା ଅନୁକୂଳ ନଥିଲେହେଁ ଅଳ୍ପକାଳରେ ପୁରୀ ଜିଲ୍ଲା ସ୍କୁଲରେ ଭର୍ତ୍ତି ହେବାର ସୁବିଧା ପାଇଥିଲେ । ଜିଲ୍ଲା ସ୍କୁଲରେ ଅଧ୍ୟୟନ କରୁଥିବା ସମୟରେ ମଧୁସୂଦନ ପ୍ରତ୍ୟେକ ଶ୍ରେଣୀର ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରୁଥିଲେ ଏବଂ ସମସ୍ତ ପୁରସ୍କାର ଏକହାତିଆ କରି ନେଇଥିଲେ । ଏଥିଯୋଗୁଁ ସେ ପୁରସ୍କାରଦାତା ତଦାନୀନ୍ତନ ଗୁଣଗ୍ରାହୀ ମାଜିଷ୍ଟ୍ରେଟ୍ ଶ୍ରୀଯୁକ୍ତ ବକସ୍‌ଉଏଲ ସାହେବଙ୍କର ପ୍ରୀତିଭାଜନ ହୋଇଥିଲେ ।

ଏହିଠାରେ କବିବର ରାଧାନାଥଙ୍କ ସହିତ ମଧୁର ମିଳନ । ମଧୁସୂଦନ ଦ୍ୱିତୀୟ ଶ୍ରେଣୀରେ ଅଧ୍ୟୟନ କରୁଥିବା ସମୟରେ ରାଧାନାଥ ସେ ସ୍କୁଲର ଦ୍ୱିତୀୟ ଶିକ୍ଷକ ହୋଇ ଯାଇଥିଲେ । ସେଠାରେ ସେ ମଧୁସୂଦନଙ୍କ ମେଧାବିତା ଏବଂ ସୁଶୀଳତାଗୁଣରେ ଏତେ ମୁଗ୍ଧ ହୋଇଥିଲେ ଯେ, ତାହାଙ୍କୁ ସର୍ବଦା ବସାକୁ ଡାକିନେଇ ପରୀକ୍ଷାକୁ ପ୍ରସ୍ତୁତ ହେବା ଲାଗି ବିଭିନ୍ନ ବିଷୟରେ ଶିକ୍ଷା ଦେଉଥିଲେ । ଏ ପ୍ରିୟତମ ଶିଷ୍ୟଙ୍କ ସହିତ ନାନା ପ୍ରସଙ୍ଗରେ ଆଲୋଚନା କରି ସେ ଆନନ୍ଦ ଅନୁଭବ କରୁଥିଲେ ଏବଂ ତାଙ୍କୁ ସଙ୍ଗେ ସଙ୍ଗେ ଘେନି ଶ୍ମଶାନ, ସମୁଦ୍ରକୂଳ ପ୍ରଭୃତିରେ ମଧ୍ୟେ ମଧ୍ୟେ ଭ୍ରମଣ କରୁଥିଲେ । ଏହି ସମୟରେ ଏ ଉଭୟେ ସୁପ୍ରସିଦ୍ଧ ପଣ୍ଡିତ ହରିହର ଦାସଙ୍କ ନିକଟରେ ସଂସ୍କୃତଚର୍ଚ୍ଚା କରିବାର ସୁଯୋଗ ଲାଭ କରିଥିଲେ । ମଧୁସୂଦନ ବିଘ୍ନନିବନ୍ଧନ ତିନି ବର୍ଷ ପ୍ରଥମ ଶ୍ରେଣୀରେ ରହିଯାଇଥିଲେ । ପ୍ରଥମ ବର୍ଷ ରୋମହର୍ଷକ ଘୋର 'ନଅଙ୍କ ଦୁର୍ଭିକ୍ଷ' ପଡ଼ିବାରୁ ସେ ପରୀକ୍ଷା ଦେଇ ପାରି ନଥିଲେ । ଦ୍ୱିତୀୟ ବର୍ଷରେ ସେ ପରୀକ୍ଷା ସମୟକୁ ସଙ୍କଟ ପୀଡ଼ାଗ୍ରସ୍ତ ହୋଇପଡ଼ିଥିଲେ । ତୃତୀୟ ବର୍ଷ ଅର୍ଥାତ୍ ୧୮୬୯ ଖ୍ରୀଷ୍ଟାବ୍ଦରେ ସେ ପ୍ରବେଶିକା ପରୀକ୍ଷାରେ ପ୍ରଶଂସା ସହିତ ଉତ୍ତୀର୍ଣ୍ଣ ହୋଇ କନିଷ୍ଠ ସହୋଦରଙ୍କ ସହିତ ଉଚ୍ଚଶିକ୍ଷାର୍ଥ କଟକକୁ ଆସିଥିଲେ ଏବଂ କଟକ ହାଇସ୍କୁଲର ଏଫ.ଏ. ଶ୍ରେଣୀରେ ଅଧ୍ୟୟନ ଆରମ୍ଭ କରିଥିଲେ । ପୁରୀରେ ପଢୁଥିବା ବେଳେ ଏକାଦଶ ବର୍ଷ ବୟସରେ ତାହାଙ୍କର ପୁରୀବାସୀ ବଳରାଜଜୀଙ୍କ କନ୍ୟା ଶ୍ରୀମତୀ ପଦ୍ମାଦେବୀଙ୍କ ସହିତ ଶୁଭପରିଣୟବିଧି ସମ୍ପାଦିତ ହୋଇଯାଇଥିଲା ।

ବାଲ୍ୟକାଳରୁ ମଧୁସୂଦନଙ୍କ ହୃଦୟରେ ଦୟା ଓ ଧର୍ମର ଅଙ୍କୁର ସୁସ୍ପଷ୍ଟ ଦେଖାପଡ଼ିଥିଲା । ବାଳକ ମଧୁସୂଦନ ପ୍ରତିଦିନ ଶିବଦର୍ଶନ ନକଲେ ଜଳ ଗ୍ରହଣ କରୁନଥିଲେ । ସମୁଦ୍ରକୂଳରେ ଭ୍ରମଣ କରି ତାହାର ଓ ଆକାଶର ଅନନ୍ତ ନୀଳିମା ଦର୍ଶନରେ ସେ ମୁଗ୍ଧ ହେଉଥିଲେ । ସେଥିରେ ଯେହ୍ନେ ସେ ବିଶ୍ୱପତିଙ୍କର ଅନନ୍ତ ମହିମାର ଛାୟା ଉପଲବ୍ଧି କରୁଥିଲେ । ଦିନେ ସେ ଏକ ଅଦ୍ଭୁତ ସ୍ୱପ୍ନରେ ଦେଖିଲେ, ସମୁଦ୍ରକୂଳରୁ ଫେରିଲାବେଳେ ଏକ ବିରାଟ ପୁରୁଷ ଆଗେ ଆଗେ ଯାଉଅଛନ୍ତି ସେ ଓଁକାର ଉଚ୍ଚାରଣ କଲାବେଳେ ଚତୁର୍ଦିଗ ଜ୍ୟୋତିରେ ଉଦ୍ଭାସିତ ହୋଇଯାଉଅଛି । ସେହି ପୁରୁଷଙ୍କ ସଙ୍କେତରେ ମଧୁସୂଦନ କିଛିଦୂର ଅନୁସରଣ କଲେ । କିଛି କ୍ଷଣ ପରେ ସେ ନଗରୋପାନ୍ତରେ ଅନ୍ତର୍ହିତ ହୋଇଗଲେ । ଏହି ଅଦ୍ଭୁତ ବ୍ୟାପାର ଦର୍ଶନରେ ତାଙ୍କର ମନ ଅଦ୍ଭୁତଭାବରେ ଆନ୍ଦୋଳିତ ହେବାକୁ ଲାଗିଲା । ଏହି ସ୍ୱପ୍ନରୁହିଁ ତାହାଙ୍କର ଧର୍ମଜୀବନର ସୂତ୍ରପାତ ବୋଲିବାକୁ ହେବ । ୧୮୬୭ର ଦାରୁଣ ଦୁର୍ଭିକ୍ଷରେ ମଧୁସୂଦନଙ୍କ କୋମଳହୃଦୟ ସେ ରୋମହର୍ଷଣ କାଣ୍ଡ ଦର୍ଶନରେ ବିଶୁଷ୍କ ହେବାକୁ ଲାଗିଲା ଅନାହାରକ୍ଲିଷ୍ଟ ଲୋକମାନଙ୍କୁ ଚାଉଳ ବାଣ୍ଟିବାପାଇଁ ସୁଚରିତ୍ର ସ୍ୱେଚ୍ଛାସେବକ ଖୋଜାପଡ଼ିବାରୁ ଛାତ୍ର ମଧୁସୂଦନ ଅଗ୍ରେ ଯାଇ ଉପସ୍ଥିତ ହୋଇଥିଲେ ଏବଂ ସେ କାର୍ଯ୍ୟଭାର ପାଇ ଆପଣାକୁ କୃତାର୍ଥ ମଣିଥିଲେ ।

କଟକ କଲେଜରେ ଅଧ୍ୟୟନ କଲାବେଳେ ମଧୁସୂଦନ ଅଧ୍ୟାୟିମାନଙ୍କ ମଧ୍ୟରେ ଉନ୍ନତ ରୁଚି ଏବଂ ଉଚ୍ଚକଥାପ୍ରିୟ ବୋଲି ପ୍ରସିଦ୍ଧ ଲାଭ କରିଥିଲେ । ତାଙ୍କ ମୁଖରୁ କୌଣସି ନୀଚ କଥା ବା ଅଶ୍ଳୀଳ ବାକ୍ୟ କେବେ କେହି ବନ୍ଧୁ ଶୁଣି ନଥିଲେ । ବିଭିନ୍ନ ରୁଚି ସତ୍ତ୍ୱେ ସେ ଅଧ୍ୟାୟିବର୍ଗ ଏପରି ସୌହାର୍ଦ୍ଦରେ ଆବଦ୍ଧ ଥିଲେ ଯେ, କର୍ମକ୍ଷେତ୍ରରେ ପରସ୍ପରଠାରୁ ପୃଥକ୍ ଥିଲେ ସୁଦ୍ଧା ଆଜୀବନ କେହି କାହାରିକୁ ସୁଖମୟ ସ୍ମୃତିରୁ ଅନ୍ତର କରିନଥିଲେ । ଅଧ୍ୟାପକମାନେ ଛାତ୍ରମାନଙ୍କ ସହିତ ମଧୁର ବ୍ୟବହାର କରି ସେମାନଙ୍କ ଉନ୍ନତି କଳ୍ପେ ନିରନ୍ତର ଯତ୍ନ କରୁଥିଲେ । ଦର୍ଶନ ଅଧ୍ୟାପକ ବ୍ରାହ୍ମ ଶ୍ରୀ ହରନାଥ ଭଟ୍ଟାଚାର୍ଯ୍ୟ ଜଣେ ନିର୍ମଳଚରିତ୍ର ଓ ସୁପଣ୍ଡିତ ବ୍ୟକ୍ତି ଥିବାରୁ ତେତେବେଳେ ଛାତ୍ରସମାଜରେ ଅଧିକ ପ୍ରତିପତ୍ତି ଲାଭ କରିଥିଲେ । ତାହାଙ୍କର ଉପଦେଶ ଅଭିନିବିଷ୍ଟ ଛାତ୍ରମାନଙ୍କ ହୃଦୟରେ ଉର୍ବରାଭୂମିରେ ରୋପିତ ବୀଜ ପରି କାର୍ଯ୍ୟକାରୀ ହେଉଥିଲା । ତାହାଙ୍କ ଉପଦେଶ ପାଇ ଏବଂ ବକ୍ତୃତାଦି ଶ୍ରବଣ କରି ଯେଉଁ ଛାତ୍ରମାନେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରେ ମଧୁସୂଦନ ଓ ପ୍ୟାରୀମୋହନ ପ୍ରଧାନ । କଟକ ପ୍ୟାରୀମୋହନ ଏକାଡ଼େମୀର

ପ୍ରତିଷ୍ଠାତା ସ୍ୱାଧୀନଚେତା ଏହି ପ୍ୟାରୀମୋହନଙ୍କୁ ମଧୁସୂଦନ ପରମସୁହୃଦ୍ ଓ ଜ୍ୟେଷ୍ଠଭ୍ରାତା ତୁଲ୍ୟ ମନେକରି ଯୌବନକାଳରେ ତାହାଙ୍କ ସହିତ ଏକମନରେ କାର୍ଯ୍ୟ କରୁଥିଲେ ଏବଂ ତାହାଙ୍କ ପବିତ୍ର ସ୍ମୃତିକୁ ମୃତ୍ୟୁକାଳ ପର୍ଯ୍ୟନ୍ତ ହୃଦୟରେ ଧାରଣ କରିଥିଲେ ।

ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇ ମଧୁସୂଦନ ନବ୍ୟସମାଜର ଯଥାବିଧି ବ୍ରହ୍ମୋପାସନାର ସୁବିଧା ନିମିତ୍ତ ଗୋଟିଏ ସାଧାରଣ ମନ୍ଦିର ଲୋଡ଼ିଥିଲେ । ବର୍ତ୍ତମାନ ଗଙ୍ଗାମନ୍ଦିରସ୍ଥ ଯେଉଁ ଗୃହରେ ବ୍ରାହ୍ମ ଉପାସନା ହେଉଅଛି, ଗୃହାଧିକାରୀ ପେନ୍‌ସନ୍‌ପ୍ରାପ୍ତ ଡେପୁଟୀ-କଲେକ୍ଟର୍ ସ୍ୱର୍ଗୀୟ ଜଗନ୍ମୋହନ ରାୟ ଏହି ଧର୍ମପ୍ରାଣ ଯୁବକଙ୍କ ଅନୁରୋଧରେ ସେ ଗୃହଟିକୁ ଉକ୍ତ ଉଦ୍ଦେଶ୍ୟରେ ଛାଡ଼ିଦେଇଥିଲେ । ଶତ ଶତ ବାଧାବିଘ୍ନ, ସମାଜର ତୀବ୍ର କଶାଘାତ ସହି ସୁଦ୍ଧା ମନସ୍ୱୀ ମଧୁସୂଦନ ଏହି ନବସମାଜକୁ ଜୀବିତ ଏବଂ ଜାଗ୍ରତ କରିବା ଲାଗି ବଜ୍ରଦୃଢ଼ ହୃଦୟରେ ଦଣ୍ଡାୟମାନ ହୋଇଥିଲେ । ଏହି ସମାଜର ସମ୍ପାଦକଭାବରେ, କ୍ରମେ ସଭାପତି ଓ ଆଚାର୍ଯ୍ୟଭାବରେ ଅଥବା ମୂର୍ତ୍ତିମାନ୍ ଉତ୍ସାହରୂପରେ ସେ ୩୫ ବର୍ଷ କାଳ ଅତି ପ୍ରଶଂସିତଭାବରେ କାର୍ଯ୍ୟ ନିର୍ବାହ କରି ଧର୍ମମାର୍ଗ ବା ଈଶ୍ୱରସେବାର ଏକ ଉଜ୍ଜ୍ୱଳ ନବୀନ ଆଦର୍ଶ ପ୍ରଦର୍ଶନ କରିଯାଇଅଛନ୍ତି ।

୧୮୭୧ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ଏଫ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ବି.ଏ ପଢ଼ିବା ଲାଗି କଲିକତା ଯିବାପାଇଁ ତାହାଙ୍କର ଆନ୍ତରିକ ଇଚ୍ଛା ଥିଲା, ମାତ୍ର ତାଙ୍କର ପିତା ଦୂରଦେଶକୁ ଏକାକୀ ଛାଡ଼ିଦେବାକୁ ଅସମ୍ମତ ହେବାରୁ ସେ ବିଶ୍ୱବିଦ୍ୟାଳୟ-ଶିକ୍ଷାରେ ଆଉ ଅଧିକ ଅଗ୍ରସର ହୋଇ ପାରିଲେ ନାହିଁ । କଲେଜରେ ପଢୁଥିବାବେଳେ ମଧୁସୂଦନ ବଙ୍ଗଳାର 'ମେଘନାଦବଧ' ପ୍ରଭୃତି କାବ୍ୟ ଏବଂ ଓଡ଼ିଆର ତାଳପତ୍ର ପୋଥିରୁ ବୈଦେହୀଶ-ବିଳାସ କାବ୍ୟ ଆଲୋଚନା କରୁଥିଲେ । ମଧ୍ୟେ ମଧ୍ୟେ ଗୋଟିଏ ଗୋଟିଏ ଉତ୍କୃଷ୍ଟ ଇଂରାଜୀ କବିତାର ଉତ୍କଳପଦ୍ୟାନୁବାଦ କରିବାକୁ ଅଭ୍ୟାସ କରୁଥିଲେ । ବର୍ତ୍ତମାନ ପେନ୍‌ସନ୍‌ପ୍ରାପ୍ତ ଡେପୁଟୀ-କଲେକ୍ଟର, ବାଳବୋଧ ରାମାୟଣ ପ୍ରଭୃତି ଗ୍ରନ୍ଥର ପ୍ରଣେତା, ଶ୍ରୀ ବଳରାମ ଦାସ ତାହାଙ୍କ ସାହିତ୍ୟଚର୍ଚ୍ଚାର ସହଚର ଥିଲେ । ଶିକ୍ଷାକ୍ଷେତ୍ରରୁ ବିଦାୟ ଘେନି ମଧୁସୂଦନ ଶିକ୍ଷାବିଭାଗରେ ପ୍ରବିଷ୍ଟ ହେବାକୁ ମନ ବଳାଇଥିଲେ ଏବଂ ଆମରଣ ଏହି ବିଭାଗରେ ମନପ୍ରାଣ ଢାଳିଦେଇ ଦେଶର ଦୁରାବସ୍ଥା କିୟଦ୍ ପରିମାଣରେ ଦୂର କରିଯାଇଅଛନ୍ତି । ସେ ସର୍ବପ୍ରଥମେ ଯାଜପୁର ମଧ୍ୟ ଇଂରାଜୀ ସ୍କୁଲର ହେଡ୍‌ମାଷ୍ଟର ପଦରେ ମାସିକ ୪୫ଟଙ୍କା ବେତନରେ ନିଯୁକ୍ତ ହୋଇଗଲେ । ୧୮ ବର୍ଷ ବୟସରେ ମଧୁସୂଦନ ଏଠାରେ ସସ୍ତ୍ରୀକ ପ୍ରଥମ ଅବସ୍ଥାନ କଲେ । ଏହିଠାରେ ଉତ୍କଳର ନିଷ୍ଠାପର

ସାହିତ୍ୟସେବକ ଉପନ୍ୟାସବିଧାତା ବ୍ୟାସ ଶ୍ରୀ ଫକୀରମୋହନଙ୍କ ସହିତ ତାହାଙ୍କର ପ୍ରଥମ ପରିଚୟ ଓ ପ୍ରଣୟ ହେଲା । ଏହି ସମୟରୁ ପ୍ରାୟ ୪୦ବର୍ଷ କାଳ ମଧୁସୂଦନ ତାହାଙ୍କ ସୌହାର୍ଦ୍ଦରେ ଆବଦ୍ଧ ଥିଲେ । ଏତେକାଳ ପରମ ବନ୍ଧୁ ଥାଇ ଫକୀରମୋହନ ତାହାଙ୍କୁ ଯେପରି ଚିହ୍ନିପାରିଥିଲେ, ତାହା ତାଙ୍କର ମରଣାନ୍ତ ପ୍ରକାଶିତ ନିମ୍ନୋଦ୍ଧୃତ କବିତାଟିରୁ ପ୍ରକାଶ ପାଉଅଛି –

କେତେ ତପସ୍ୟାର ଫଳେ ଉତ୍କଳଜନନୀ
ଲଭିଥିଲେ ଏକମାତ୍ର ପୁତ୍ର ଗୁଣମଣି ।

ଉତ୍କଳରେ ଯାହା ନାମ ଖ୍ୟାତ ଗ୍ରାମେ ଗ୍ରାମେ,
ସେ ମଧୁସୂଦନ ବର୍ତ୍ତମାନ ସ୍ୱର୍ଗଧାମେ ।

ଚାଳିଶ ବରଷ କାଳ ତାହାଙ୍କୁ ମୁଁ ଜାଣେ,
କରିଛି କିଞ୍ଚିତ୍ ଗୁଣ ଅନୁଭବ ପ୍ରାଣେ ।

ଦିନେ ହେଲେ ମଧୁ କହି ନାହିଁ ମିଥ୍ୟା କଥା,
କେତେବେଳେ କାହା ମନେଦେଇ ନାହିଁ ବ୍ୟଥା ।

ପର ଉପକାରପାଇଁ ସତାଂହି ଜୀବନ –
ବାକ୍ୟର ଦୃଷ୍ଟାନ୍ତ ତହିଁ ଶ୍ରୀମଧୁସୂଦନ ।

ନ୍ୟାୟର କାଠିନ୍ୟ ପ୍ରେମସ୍ନିଗ୍ଧ ମଧୁରିମା–
ସାରଲ୍ୟ ସୌଜନ୍ୟ ଲଭିଥିଲେ ଶେଷସୀମା ।

ଉତ୍କଳଆକାଶେ ପୂର୍ଣ୍ଣଚନ୍ଦ୍ର ଥିଲା ଉଇଁ,
କଳଙ୍କ କାଳିମା ତାକୁ ନଥିଲା ତ ଛୁଇଁ ।

ଏକପତ୍ନୀ ବ୍ରତେ କିମ୍ବା ସନ୍ତାନବାତ୍ସଲ୍ୟେ–
ସର୍ବତ୍ୟାଗୀ ହେବା ପର ଉପକାର ସ୍ଥଳେ–

ପ୍ରଗାଢ଼ ଶାସ୍ତ୍ରୀୟ ଜ୍ଞାନେ ପରସେବା ବ୍ରତେ–
ଦେଶ ଉପକାରେ ଲାଗି ରହିବା ସନ୍ତତେ–
ଏକାନ୍ତ ଈଶ୍ୱରନିଷ୍ଠା ଧର୍ମ ଆଚରଣେ
ସେ ମଧୁ ସମାନ ଆଉ ଦେଖି ନାହିଁ ଜଣେ ।

ଶରୀର ଗଠିତ ସତ୍ୟ ମାନବ ଆକାରେ,
ସମସ୍ତ ଦେବତା ଧର୍ମ ଥିଲା ତାହାଠାରେ ।

ଯାବତଜ୍ଜୀବନବ୍ୟାପୀ ଅର୍ଥ ଉପାର୍ଜନ
ପରହିତ ବ୍ରତେ କରିଛନ୍ତି ସମର୍ପଣ ।

ଅତିଥି ସେବାରେ ମଧୁ ବଂଶ ପ୍ରତି ଜଣେ
ଆନନ୍ଦରେ ଯତ୍ନ କରିଥାନ୍ତି ପ୍ରାଣପଣେ ।

ମଧୁ ଧର୍ମପତ୍ନୀ ପତିପରାୟଣା ସତୀ,
ଦେବପୁତ୍ରକନ୍ୟା ତୁଲ୍ୟ ସନ୍ତାନ ସନ୍ତତି ।

ଉତ୍କଳେ ସମସ୍ତ ବ୍ରାହ୍ମ ସମାଜ ମଧ୍ୟରେ
ସେ ମଧୁସୂଦନ ଥିଲେ କେନ୍ଦ୍ରସ୍ୱରୂପରେ ।

ମଧୁର ଆବାସଗୃହ ମହର୍ଷି-ଆଶ୍ରମ,
ପ୍ରକୃତରେ ଥିଲେ ମଧୁ ମହାଋଷିସମ ।

ଜନ୍ମିବେ ଉତ୍କଳେ ସାଧୁ ଦୟାଳୁ ବିଦ୍ୱାନ
ପରସେବାବ୍ରତଧାରୀ ଧାର୍ମିକ ପ୍ରଧାନ ।

ସର୍ବ ସାଧୁଗୁଣ ସମାବେଶ ଏକାଧାରେ
କଦାଚିତ ଜଗତରେ ଆସେ ଦେଖିବାରେ ।

ମଧୁର ସ୍ୱଭାବ ଯେହ୍ନେ କବିର କଳ୍ପନା,
ଅଭାବ ମାନବ ଲୋକେ ଦେବାକୁ ତୁଳନା ।

ଉତ୍କଳର ଇତିହାସେ ସୁବର୍ଣ୍ଣ ଅକ୍ଷରେ
ଚିତ୍ରିତ ରହିବ ମଧୁ ନାମ ନିଶ୍ଚୟରେ ।

ମଧୁସ୍ଥାନ ପୂର୍ଣ୍ଣ ହେବା କେବେ ସମ୍ଭାବନା
କେତେ ଯୁଗ ଯୁଗାନ୍ତରେ ଈଶ୍ୱରଙ୍କୁ ଜଣା ।

ଦରିଦ୍ର ଉତ୍କଳଭାଷା ମଧୁଠାରେ ଋଣୀ ।
ଏକ କଥା, ଥିଲେ ମଧୁ ସର୍ବଗୁଣେ ଗୁଣୀ ।

ମୋହର ହୃଦୟବନ୍ଧୁ ଶ୍ରୀ ମଧୁସୂଦନ,
ତାହା ବିନା ମତେ ଏବେ ଅସାର ଜୀବନ ।

ଦୟାମୟ ଜଗଦୀଶ ହେ ଭୂତଭାବନ !
ମଧୁ ପରିବାରେ ଶାନ୍ତି କରନ୍ତୁ ସ୍ଥାପନ ।

ଯାଜପୁରରେ ପ୍ରାୟ ଦେଢ଼ ବର୍ଷ କାର୍ଯ୍ୟ କରି ମଧୁସୂଦନ ବାଲେଶ୍ୱର ଜିଲ୍ଲା ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦରେ ନିଯୁକ୍ତ ହୋଇଗଲେ । ୧୮୭୩ ଖ୍ରୀଷ୍ଟାବ୍ଦର ଅକ୍ଟୋବର ୨୯ ତାରିଖରେ ତାହାଙ୍କର ସରକାରୀ କର୍ମରେ ପ୍ରଥମ ପ୍ରବେଶ । ଏତେବେଳେ ରାଧାନାଥ ବାଲେଶ୍ୱରର ଡେପୁଟୀ ଇନ୍ସପେକ୍ଟର, ଫକୀରମୋହନ ସମ୍ବାଦବାହିକାର ସମ୍ପାଦକ । ଯଥାର୍ଥ ମଣିକାଞ୍ଚନ ସଂଯୋଗ ଏହିଠାରେ ହେବାରୁ ବାଲେଶ୍ୱର ନଗରୀ ସର୍ବ ପ୍ରଥମେ ଆଧୁନିକ ସାହିତ୍ୟଚର୍ଚ୍ଚାର କେନ୍ଦ୍ରସ୍ଥଳୀ ହୋଇ ଉଠିଲା । କୁମାର ବୈକୁଣ୍ଠ ନାଥଙ୍କୁ (ସ୍ୱର୍ଗୀୟ ମହାରାଜା ବୈକୁଣ୍ଠନାଥ ଦେ ବାହାଦୂର) ଏତେବେଳେ ସଙ୍ଗରେ ପାଇବାରୁ ତାହାଙ୍କ ସାହାଯ୍ୟରେ ଏମାନଙ୍କ ଯତ୍ନରେ 'ଉତ୍କଳଦର୍ପଣ' ନାମକ ମାସିକ ପତ୍ରିକା ବାଲେଶ୍ୱରରୁ ବାହାରିଲା । ଏହି ପତ୍ରିକା ତଦାନୀନ୍ତନ ସାହିତ୍ୟଚର୍ଚ୍ଚାର ଯଥାର୍ଥ ଦର୍ପଣପ୍ରାୟ ଥିଲା କହିଲେ ଚଳେ । ଏଥିକି ଲେଖା ଯୋଗାଇବା ଲାଗି ରାଧାନାଥ ଓ ମଧୁସୂଦନ ଇଂରାଜୀ ଓ ସଂସ୍କୃତରୁ ନାନା ପଦ୍ୟ ଓ ଗଦ୍ୟ ପ୍ରବନ୍ଧର ଅନୁବାଦ ଆରମ୍ଭ କଲେ । ରାଧାନାଥଙ୍କ 'ମେଘଦୂତ' ଏବଂ ଏହାର 'ଅଯୋଧ୍ୟା ପ୍ରତ୍ୟାଗମନ'ର ପଦ୍ୟାନୁବାଦ ପ୍ରାୟ ଏକସମୟରେ ସେଥିରେ ପ୍ରକାଶିତ । ରାଧାନାଥଙ୍କ 'ଇଟାଲୀୟ ଯୁବା' ଶୀର୍ଷକ ଉପନ୍ୟାସର ଅନୁବାଦ ସଙ୍ଗକୁ ମଧୁସୂଦନଙ୍କ 'ପ୍ରଣୟର ଅଦ୍ଭୁତ ପରିଣାମ' ଓ 'ଚନ୍ଦ୍ରତାରା' ଗଳ୍ପର ଅନୁବାଦ ପ୍ରକାଶିତ ହୋଇଥିଲା । ଏହାପରେ ମଧୁସୂଦନଙ୍କର 'ନିଶୀଥ ଚିନ୍ତା', 'ନିର୍ଜ୍ଜନ ଦ୍ୱୀପରେ ନିର୍ବାସିତର ବିଳାପ' ଓ 'ଶ୍ମଶାନ' କବିତା ଏବଂ ସୂର୍ଯ୍ୟ, ଉଲ୍‌କାପିଣ୍ଡ, ଆଗ୍ନେୟଗିରି, ଶାସନପ୍ରଣାଳୀ, ବୁଦ୍ଧଦେବ, ଏହି କେତୋଟି ପ୍ରବନ୍ଧ ମଧ୍ୟ ସେଥିରେ ପ୍ରକାଶିତ ହୋଇଥିଲା । ଏହି ସମୟରେ ଓଡ଼ିଆରେ ପାଠ୍ୟପୁସ୍ତକମାନ ଲେଖିବାପାଇଁ ପୁରସ୍କାର ଘୋଷିତ ହେବାରୁ ଏହି କୃତୀପୁରୁଷଗଣଙ୍କ କର୍ତ୍ତୃକ ଅନେକ ପାଠ୍ୟପୁସ୍ତକ ବାଲେଶ୍ୱରରୁ ପ୍ରକାଶିତ ହେଲା । ମଧୁସୂଦନ ଉକ୍ତ ପ୍ରକାଶିତ ପ୍ରବନ୍ଧଗୁଡ଼ିକ ସହିତ ଆଉ କେତୋଟି ଯୋଗକରି 'ପ୍ରବନ୍ଧମାଳା' ପ୍ରକାଶ କଲେ । ରାଧାନାଥ ଓ ମଧୁସୂଦନଙ୍କର ପତ୍ରିକାରେ ପ୍ରକାଶିତ ଓ ଅପ୍ରକାଶିତ କେତୋଟି କବିତା ଘେନି ଦୁଇଖଣ୍ଡ କବିତାବଳୀ ମଧ୍ୟ ପ୍ରକାଶିତ ହେଲା । ସେ କାଳର ତାହାଙ୍କ ଲେଖାର ଭାଷା ଓ ବର୍ତ୍ତମାନ ଲେଖାର ଭାଷା ମଧ୍ୟରେ କିଛି ପାର୍ଥକ୍ୟ ଦେଖାଯାଏ ନାହିଁ —ଏହା ଅତ୍ୟନ୍ତ ପ୍ରଶଂସାର ବିଷୟ । ତେଣୁ ମଧୁସୂଦନଙ୍କ ଗଦ୍ୟର ଭାଷା ଆଧୁନିକ ସାହିତ୍ୟପୀଠରେ ସୁଚିହ୍ନିତ ହୋଇ ତାହାର ସ୍ୱାତନ୍ତ୍ର୍ୟ ରକ୍ଷା କରିପାରିଅଛି । ପ୍ରାୟ ଦୁଇ ବର୍ଷ ପରେ ସେ କଟକ ହାଇସ୍କୁଲର ଅତିରିକ୍ତ ଶିକ୍ଷକ ପଦରେ ନିଯୁକ୍ତ ହୋଇ ବାଲେଶ୍ୱରବାସିଙ୍କଠାରୁ ଦୁଃଖରେ ବିଦାୟ ଘେନି କଟକ ଆସିଲେ । ବର୍ଷକ କାର୍ଯ୍ୟ ପରେ ଉକ୍ତ ସ୍କୁଲର ଦ୍ୱିତୀୟ ଶିକ୍ଷକ ପଦ ଶୂନ୍ୟ ହେବାରୁ ଉପାଧିଧାରୀ ପ୍ରତିଦ୍ୱନ୍ଦୀ ସତ୍ତ୍ୱେ ସେ

ସ୍ୱୀୟ ଯୋଗ୍ୟତାଗୁଣରେ ଉକ୍ତ ପଦ ଲାଭ କରିଥିଲେ । ଉକ୍ତ ବର୍ଷରେ ଅର୍ଥାତ୍ ୧୮୭୬ ଖ୍ରୀଷ୍ଟାବ୍ଦରେ ଦୁଇ ତିନି ବର୍ଷର ଆନ୍ଦୋଳନ ଫଳରେ ରେଭେନ୍ସା କଲେଜ ନୂତନ ସ୍ଥାପିତ ହେବାରୁ ଉକ୍ତ ସ୍କୁଲ ରେଭେନ୍ସା କଲେଜିଏଟ୍ ନାମ ଧାରଣ କରି କଲେଜ ଅଧ୍ୟକ୍ଷଙ୍କ ଅଧୀନରେ ରହିଲା । ଏହି ସ୍କୁଲରେ ପ୍ରାୟ ତିନି ବର୍ଷକାଳ ପ୍ରଶଂସିତ ଭାବରେ ଶିକ୍ଷକତା କର୍ମ ସମ୍ପାଦନ କରି ମଧୁସୂଦନ ଏକଶତ ଟଙ୍କା ବେତନରେ କଟକ ଜିଲ୍ଲା ସ୍କୁଲସମୂହର ଡେପୁଟୀଇନ୍‌ସ୍ପେକ୍ଟର ପଦରେ ନିଯୁକ୍ତ ହୋଇଗଲେ ।

ଡେପୁଟୀ-ଇନ୍‌ସ୍ପେକ୍ଟର ଥିବା ସମୟରେ ମଧୁସୂଦନ ପ୍ରାଥମିକ ବିଦ୍ୟାଳୟମାନଙ୍କର ଉନ୍ନତିକଳ୍ପେ ଉପଯୁକ୍ତ ଶିକ୍ଷକ ଗଠନ, ପ୍ରଚଳିତ ଶିକ୍ଷାଦାନ ପ୍ରଣାଳୀର ପରିବର୍ତ୍ତନ ଏବଂ ସୁରୁଚିର ପୁସ୍ତକ ପ୍ରଚାର ଉଦ୍ଦେଶ୍ୟରେ କେବଳ ଏ ନଗରରେ ବର୍ଷକୁ ବର୍ଷ ଶିକ୍ଷକମାନଙ୍କର ସମ୍ମିଳନ, 'ଶିକ୍ଷାବନ୍ଧୁ' ନାମକ ମାସିକ ପତ୍ରର ପ୍ରଚାର ଏବଂ 'ଅବଧାନବନ୍ଧୁ' ନାମକ ପୁସ୍ତକ ରଚନା କରାଇ ନିଶ୍ଚିନ୍ତ ଥିଲେ, ତାହା ନୁହେଁ; ପରିଦର୍ଶନ କାଳରେ ପ୍ରତି ବିଦ୍ୟାଳୟରେ ଆଦର୍ଶ ଅଧ୍ୟାପନା ରୀତି ଦେଖାଇ ଦେଇ ଶିକ୍ଷକମାନଙ୍କୁ ଉପଦେଶ ଦେଉଥିଲେ ଏବଂ ଉପଯୁକ୍ତ ପାଠ୍ୟପୁସ୍ତକର ଅଭାବ ଦେଖି ଖଣ୍ଡେ ଖଣ୍ଡେ ନିମ୍ନଶ୍ରେଣୀର ପାଠ୍ୟପୁସ୍ତକ ପ୍ରଣୟନ କରିଥିଲେ । ତନ୍ମଧ୍ୟରେ 'ଛାନ୍ଦମାଳା'ର ନାମ ଉଲ୍ଲେଖଯୋଗ୍ୟ । ଏହା କିଛିକାଳ ଉତ୍କଳର ଘରେ ଘରେ ପରିଚିତ ହୋଇଥିଲା । ଗୁଣଗ୍ରାହୀ ରାଧାନାଥ ତେତେବେଳେ ଜଏଣ୍ଟ ଇନ୍‌ସ୍ପେକ୍ଟର ଥିବାରୁ ତାଙ୍କର ମତ ପ୍ରାୟ ସର୍ବତ୍ର ପ୍ରବର୍ତ୍ତିତ ହୋଇ ପାରୁଥିଲା । ପ୍ରାୟ ବାରବର୍ଷକାଳ ଏହି କାର୍ଯ୍ୟ ନିପୁଣ ଭାବରେ ଚଳାଇ ମଧୁସୂଦନ ୧୮୯୧ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରେ କଟକ ରେଭେନ୍ସା କଲେଜିଏଟ୍ ସ୍କୁଲର ହେଡ୍‌ମାଷ୍ଟର ପଦରେ ମାସିକ ୧୫୦ ଟଙ୍କା ବେତନରେ ନିଯୁକ୍ତ ହେଲେ । ମଧୁସୂଦନ ଏଠାରେ ପ୍ରଥମ ଓଡ଼ିଆ ହେଡ୍‌ମାଷ୍ଟର ହୋଇ ଦକ୍ଷତାସହକାରେ କାର୍ଯ୍ୟ ଚଳାଇଥିଲେ । ମାତ୍ର ଅଧ୍ୟକ୍ଷଙ୍କ ସହିତ ମନାନୈକ୍ୟ ଘଟିବାରୁ ପ୍ରାୟ ଦୁଇବର୍ଷ ପରେ ବାଲେଶ୍ୱର ଜିଲ୍ଲାର ଡେପୁଟୀ ଇନ୍‌ସ୍ପେକ୍ଟର ପଦକୁ ବଦଳି ହେଲେ । ସେଠାରେ ପ୍ରାୟ ଛ'ମାସ ରହି ୧୮୯୩ ଖ୍ରୀଷ୍ଟାବ୍ଦର ଅକ୍ଟୋବର ମାସରେ କଟକ ଟ୍ରେନିଂସ୍କୁଲର ହେଡ୍‌ମାଷ୍ଟର ନିଯୁକ୍ତ ହୋଇ ପୁଣି କଟକକୁ ଆସିଲେ । ଏହିଦିନଠାରୁ ମୃତ୍ୟୁକାଳ ପର୍ଯ୍ୟନ୍ତ ତାଙ୍କର କଟକରେ ଅବସ୍ଥିତି । ଉପଯୁକ୍ତ ଶିକ୍ଷକ ଗଠନ ଓ ଉତ୍କୃଷ୍ଟ ଅଧ୍ୟାପନା ରୀତି ପ୍ରବର୍ତ୍ତନ ଯାହାକୁ ଏଥିପୂର୍ବେ ମଧୁସୂଦନ ସର୍ବଦା ଜପୁଥିଲେ, ଭଗବତ୍‌କୃପାରୁ ଏବେ ତାହାହିଁ ତାଙ୍କ ଉପରେ ପଡ଼ିଲା । ଏ ସ୍କୁଲରେ ପ୍ରାୟ ୧୨ବର୍ଷ କାଳ କାର୍ଯ୍ୟ କରି ସେ ଯେ କେବଳ ଉକ୍ତ ସ୍କୁଲର ସର୍ବାଙ୍ଗୀନ ଉନ୍ନତିରେ

ନିରନ୍ତର ଯତ୍ନଶୀଳ ଥିଲେ ତାହାନୁହେଁ; ଏ ନଗରର ସର୍ବପ୍ରକାର ସଦନୁଷ୍ଠାନରେ ସାହାଯ୍ୟ ପ୍ରଦାନ ଏବଂ ଧର୍ମନୀତି ଓ ସାହିତ୍ୟବିଷୟକ ସଭାସମିତିର ସ୍ଥାପନ ଓ ପରିଚାଳନଦ୍ୱାରା ଧର୍ମନୀତି ଓ ସାହିତ୍ୟର ଶ୍ରୀବୃଦ୍ଧି ସାଧନ କରୁଥିଲେ । ଏହି ସମୟ ମଧ୍ୟରେ ସେ ଅନେକ କବିତା ଓ ପ୍ରବନ୍ଧ ଲେଖିଥିଲେ । ତତ୍‌ପ୍ରଣୀତ ପୁସ୍ତକମାନ ଭିନ୍ନ ଭିନ୍ନ ସମୟରେ ମୁଦ୍ରିତ ହୋଇଥିଲେହେଁ ତଦନ୍ତର୍ଗତ କେତେକ କବିତା ବା ପ୍ରବନ୍ଧ ବହୁପୂର୍ବରୁ ଲିଖିତ । ଏଥିପାଇଁ ତାଙ୍କ ପୁସ୍ତକାବଳୀର ନିର୍ଦ୍ଦିଷ୍ଟ ସମୟ କହିବା କଷ୍ଟକର । ତଥାପି ସେମାନଙ୍କର ରଚନା ଓ ମୁଦ୍ରଣ ସମୟର ଗୋଟିଏ ତାଲିକା ସର୍ବନିମ୍ନରେ ପ୍ରକାଶ କରିବୁଁ ।

୧୯୦୧ ଖ୍ରୀଷ୍ଟାବ୍ଦର ନଭେମ୍ବର ମାସରେ ସେ ପ୍ରାଦେଶିକ ଶିକ୍ଷାବିଭାଗର ସପ୍ତମ ଶ୍ରେଣୀକୁ (୨୫୦ ଟଙ୍କା) ଉନ୍ନତିପ୍ରାପ୍ତ ହୋଇ ୧୯୦୫ରେ ପୁଣି ଷଷ୍ଠ ଶ୍ରେଣୀକୁ (୩୫୦ ଟଙ୍କା) ଉଠିଲେ । ୧୯୦୬ର ଏପ୍ରିଲ ମାସଠାରୁ ସେ ଓଡ଼ିଶାର ଇନ୍‌ସ୍ପେକ୍ଟର ପଦରେ ଅସ୍ଥାୟୀ ଭାବରେ ନିଯୁକ୍ତ ହୋଇଗଲେ । ୧୯୦୭ ଅକ୍ଟୋବର ମାସରେ ସେ ଉକ୍ତ ବିଭାଗର ପଞ୍ଚମ ଶ୍ରେଣୀକୁ ଉନ୍ନତି ପାଇ ଚାରିଶତ ଟଙ୍କା ବେତନ ପ୍ରାପ୍ତ ହେଲେ ଏବଂ ଏହି ଦିନଠାରୁ ୧୯୦୮ ମାର୍ଚ୍ଚ ପର୍ଯ୍ୟନ୍ତ ଭାରତୀୟ ଶିକ୍ଷା ବିଭାଗରେ (Indian Educational Service) ସ୍ଥାନ ପାଇଥିବାରୁ ମାସିକ ଏକଶତ ଟଙ୍କା ଅଧିକ ପାଉଥିଲେ । ୧୯୦୮ ମାର୍ଚ୍ଚ ମାସଠାରୁ ୧୯୦୯ର ଜୁଲାଇ ପର୍ଯ୍ୟନ୍ତ ମଧୁସୂଦନ ଓଡ଼ିଶାର ଅତିରିକ୍ତ ଇନ୍‌ସ୍ପେକ୍ଟର ପଦରେ ନିଯୁକ୍ତ ଥାଇ ଉଭୟ ପଦର କାର୍ଯ୍ୟ ଏକାକୀ ଦକ୍ଷତାସହକାରେ ଚଳାଇଥିଲେ । ଜରାଜୀର୍ଣ୍ଣ ରୋଗକ୍ଲିଷ୍ଟ ଦେହରେ ସେ ଏପରି ଦାୟିତ୍ୱପୂର୍ଣ୍ଣ ଦୁଇଜଣର କାର୍ଯ୍ୟ ଯେପରି ଚଳାଇଥିଲେ, ତାହା ଅନନ୍ୟସାଧାରଣ ବୋଲିବାକୁ ହେବ । ୧୯୦୭ ଖ୍ରୀଷ୍ଟାବ୍ଦରେ ଗଭର୍ଣ୍ଣମେଣ୍ଟ ମଧୁସୂଦନଙ୍କୁ ବିଶ୍ୱସ୍ତଭାବରେ ରାଜକର୍ମ ପରିଚାଳନ ଓ ସାଧାରଣ ସାହିତ୍ୟ ପ୍ରଚାର ଲାଗି ସମ୍ମାନସୂଚକ 'ରାୟ ବାହାଦୂର' ଉପାଧି ପ୍ରଦାନ କରିଥିଲେ । ୧୯୦୯ ଖ୍ରୀଷ୍ଟାବ୍ଦର ଜୁଲାଇ ମାସରେ ସେ ରାଜକାର୍ଯ୍ୟରୁ ଅବସର ନେଇ ସ୍ୱପ୍ରତିଷ୍ଠିତ ଭିକ୍ଟୋରିଆ ସ୍କୁଲର ସ୍ଥାୟିତ୍ୱ ବିଷୟରେ ମନପ୍ରାଣ ଢାଳିଦଲେ ଏବଂ ଦ୍ୱାରେ ଦ୍ୱାରେ ବୁଲି ଭେଦା ସଂଗ୍ରହପୂର୍ବକ ତାହାର ଗୃହ ନିର୍ମାଣାଦିରେ ଅନବରତ ବ୍ୟାପୃତ ରହିଲେ । ଏସବୁ କଠିନ ପରିଶ୍ରମରେ ତାଙ୍କର ରୁଗ୍‌ଣଦେହ କ୍ରମଶଃ ଜୀର୍ଣ୍ଣରୁ ଜୀର୍ଣ୍ଣତର ହେବାକୁ ବସିଲା । ୧୯୧୨ ଖ୍ରୀଷ୍ଟାବ୍ଦର ଡିସେମ୍ବର ୨୮ ତାରିଖରେ **ବ୍ରହ୍ମଜ୍ଞ ମଧୁସୂଦନ** ଏହି ଜୀର୍ଣ୍ଣଦେହ ପରିତ୍ୟାଗ କରି ସେହି ପରମପିତା ପରଂବ୍ରହ୍ମଙ୍କ ଅଙ୍କଦେଶରେ ଆଶ୍ରୟ ନେଲେ ।

ତାଙ୍କର ସମଗ୍ର ଜୀବନ ଶିକ୍ଷକତା, ଶିକ୍ଷାଦାନ, ଧର୍ମନୀତି ପ୍ରଚାର ଏବଂ ପାଠ୍ୟପୁସ୍ତକ ରଚନାରେ କଟିଯାଇଅଛି । କଟକରେ ଅବସ୍ଥାନ କାଳରେ ଅନେକ ପତ୍ରିକା ପ୍ରଚାର ଏବଂ ସଭାସମିତି ସ୍ଥାପନରେ ତାଙ୍କର ହସ୍ତ ଥିଲା । 'ଶିକ୍ଷାବନ୍ଧୁ' ପରେ 'ନବସମ୍ବାଦ', 'ଆଶା' ଏବଂ 'ବ୍ରାହ୍ମ' ତାଙ୍କରି ଉଦ୍ୟମରେ ବାହାରି ଥିଲା । ବର୍ତ୍ତମାନ ସୁପ୍ରତିଷ୍ଠ 'ଉତ୍କଳ-ସାହିତ୍ୟ' ତାଙ୍କରି ପ୍ରବର୍ତ୍ତନାରେ ପ୍ରଥମେ ପ୍ରକାଶିତ ହୋଇଅଛି । ୧୮୯୪ ଖ୍ରୀଷ୍ଟାବ୍ଦରେ ପ୍ରଥମେ ସେ ଏ ନଗରରେ ଟ୍ରେନିଙ୍ଗ୍ ସ୍କୁଲ ଛାତ୍ରମାନଙ୍କ ଉନ୍ନତି ଆଶ୍ରୟରେ ''ଆଲୋଚନା ସଭା'' ସ୍ଥାପନ କରିଥିଲେ । ତାହା ପୁଣି ତାଙ୍କର ଯତ୍ନ ଏବଂ ନେତୃତ୍ୱାଧୀନରେ ୧୯୦୩ରେ 'ଉତ୍କଳ-ସାହିତ୍ୟ ସମାଜ' ନାମ ଧାରଣ କରି ପ୍ରଶସ୍ତତର ଭିତ୍ତିରେ ସ୍ଥାପିତ ହେଲା । ଆମରଣ ଏ ସଭାର ଅଧିନାୟକ ଥାଇ ସେ ଆମ୍ଭମାନଙ୍କର ସାହିତ୍ୟିକ ରୁଚିକି ଅନେକ ଉଚ୍ଚକୁ ଉଠାଇବାକୁ ଚେଷ୍ଟା କରି ଯାଇଅଛନ୍ତି । ଏ ନଗରର ଭିକ୍ଟୋରିଆ-ସ୍କୁଲ ତାଙ୍କର ଗୋଟିଏ କୀର୍ତ୍ତିସ୍ତମ୍ଭ । ୧୮୮୧ ଖ୍ରୀଷ୍ଟାବ୍ଦରେ ସେ ପ୍ରଥମେ 'ଟାଉନ ସ୍କୁଲ' ନାମରେ ଗୋଟିଏ ମଧ୍ୟ ଇଂରାଜୀ ସ୍କୁଲ ବସାଇଥିଲେ । ମଧ୍ୟରେକିଛିଦିନ ତାହା ହାଇସ୍କୁଲରେ ପରିଣତ ହୋଇଥିଲା । ୧୯୦୧ ଖ୍ରୀଷ୍ଟାବ୍ଦରେ ପୁଣ୍ୟଶ୍ଳୋକା ମହାରାଣୀ ଭିକ୍ଟୋରିୟାଙ୍କ ସ୍ୱର୍ଗାରୋହଣ ପରେ ଏହାକୁ ସେ ତାଙ୍କ ନାମରେ ଆଖ୍ୟାତ କରି ହାଇସ୍କୁଲରେ ପରିଣତ କରାଇଥିଲେ । ତାଙ୍କରି ନିରନ୍ତର ଯତ୍ନରେ ତାହା ସରକାରଙ୍କ ବିନା ସାହାଯ୍ୟରେ ଉତ୍ତରୋତ୍ତର ଉନ୍ନତି ଲାଭ କରି ଆସୁଅଛି ।

କବିବର ରାଧାନାଥ ତାହାଙ୍କର ବାଲ୍ୟଗୁରୁ, ପରମସୁହୃଦ୍ ଏବଂ କର୍ମକ୍ଷେତ୍ରରେ ପ୍ରଧାନ ସହାୟ ଥିଲେ । ଦେଶର ଶିକ୍ଷା ଓ ସାହିତ୍ୟ ବିଷୟରେ ଅନେକ କାର୍ଯ୍ୟ ଏ ଉଭୟେ ମିଳିମିଶି କରୁଥିଲେ । ମଧୁସୂଦନ ତାହାଙ୍କୁ ଆଦର୍ଶ କରି ଜୀବନରେ ଓ ଅନେକ ବିଷୟରେ ସାନ୍ନିଧଲାଭ କରିଥିଲେ, ମରଣାନ୍ତେ ପୁଣି ତାଙ୍କର ସମାଧିସାନ୍ନିଧ ଲାଭକଲେ ।

ସାଧୁ ମଧୁସୂଦନଙ୍କର ଚରିତ୍ର ଓ ଧର୍ମବିଶ୍ୱାସ ବିଷୟରେ ଯାହା ବକ୍ତବ୍ୟ, ତାହା ପ୍ରାୟ ତାଙ୍କର ଚରିସୁହୃଦ୍ କବି ଫକୀରମୋହନଙ୍କ ଉକ୍ତିରେ ପ୍ରକାଶ ପାଇଅଛି । ତେବେ ଗୋଟିଏ କଥାରେଏତିକି ବୋଲାଯାଇପାରେ ଯେ, ଉତ୍କଳକ୍ଷେତ୍ରରେ ନୀତିବୀଜ ବପନ କରିବାପାଇଁ ଭଗବାନ୍ ଯେପରି ମଧୁସୂଦନଙ୍କୁ ପ୍ରେରଣ କରିଥିଲେ । ଆଧୁନିକ ଉତ୍କଳ-ସାହିତ୍ୟ ଓ ଯୁବସମାଜର ପ୍ରାଣରେ ଯଦି କିଛି ନୀତିର ପୁଣ୍ୟଶ୍ରୀ ଦେଖାଯାଉଥାଏ, ତେବେ ନିଶ୍ଚୟ ମଧୁସୂଦନ ତାହା ମୂଳରେ ଅଛନ୍ତି । ତାଙ୍କର ଆଦର୍ଶ ଚରିତ୍ରର ଦୃଷ୍ଟାନ୍ତଦ୍ୱାରା ଉତ୍କଳଦେଶର କି ଉପକାର ହୋଇଅଛି ବା ହେଉଅଛି, ତାହା ଅନେକ ବର୍ତ୍ତମାନ ବୁଝିପାରିଅଛନ୍ତି ଏବଂ କ୍ରମେ ବୁଝିବେ । ତାଙ୍କ ପରି ଧର୍ମପ୍ରାଣ ଏବଂ ଦୟାଳୁ ଲୋକ

ବର୍ତ୍ତମାନ ସମାଜ ମଧ୍ୟରେ ଅତି ବିରଳ । ମଧୁସୂଦନଙ୍କ ପରି ବ୍ରହ୍ମନିଷ୍ଠ ପୁରୁଷ କୋଟିକେ ଗୋଟିଏ ମିଳିବା ଦୁଷ୍କର । ସମଗ୍ର ଜୀବନ ତାଙ୍କର ବ୍ରହ୍ମନାମାମୃତ ପାନ ଏବଂ ବ୍ରହ୍ମସଙ୍କୀର୍ତ୍ତନରେ ସରସ ହୋଇଅଛି । ସ୍ୱର୍ଗାରୋହଣକାଳରେ ମଧ୍ୟ ତାଙ୍କର ସେହି ବ୍ରହ୍ମଜ୍ଞତାର ସୁସ୍ପଷ୍ଟ ପରିଚୟ ମିଳିଅଛି ।

ମଧୁସୂଦନ ଅତ୍ୟନ୍ତ ସତ୍ୟନିଷ୍ଠ ଓ ନ୍ୟାୟପରାୟଣ ଥିଲେ । କାହାରିଠାରେ କିଛି ମିଥ୍ୟା, ଦୋଷ ବା ଅନ୍ୟାୟ ଦେଖିଲେ ସେ ଅତ୍ୟନ୍ତ ବିରକ୍ତ ହେଉଥିଲେ, ମାତ୍ର ତାଙ୍କର କୋପ କ୍ଷଣିକ ଥିଲା । ଦେଶରେ ସୁନୀତିର ପ୍ରଚାର ବା କୌଣସିପ୍ରକାର ସଦନୁଷ୍ଠାନର ସୁସମ୍ୱାଦ ଶୁଣିଲେ ସେ ଅତ୍ୟନ୍ତ ଆନନ୍ଦ ପ୍ରକାଶ କରୁଥିଲେ । ଅତିଥିସେବା ତାଙ୍କର ଗୋଟିଏ ପ୍ରିୟ କାର୍ଯ୍ୟ ଥିଲା । ସେ ଅତ୍ୟନ୍ତ ମାତୃଭକ୍ତ ଥିଲେ । ପଞ୍ଚମ ବର୍ଷରୁ ମାତାଙ୍କୁ ହରାଇଥିଲେ ସୁଦ୍ଧା ଆମରଣ ମାତୃସ୍ମରଣ କରିଥିବାର ଦେଖାଯାଇଅଛି । ସେ ଯେପରି ମାତୃ-ପିତୃଭକ୍ତ ପୁତ୍ର,ସେହିପରି ମଧ୍ୟ ସନ୍ତାନବତ୍ସଳ ପିତା ଥିଲେ । ପୁଣି ସେ ଯାହାଙ୍କଠାରେ ସାମାନ୍ୟ ଉପକୃତ ତାଙ୍କ ଗୁଣ କୀର୍ତ୍ତନରେ ଆନନ୍ଦ ଓ ଶାନ୍ତି ଅନୁଭବ କରୁଥିଲେ ।

ମଧୁସୂଦନ ଉତ୍କଳର ଜଣେ ନିଷ୍ଠାପର ସାହିତ୍ୟସେବୀ ଥିଲେ । ତାଙ୍କର ପ୍ରତ୍ୟେକ କବିତା ଓ ପ୍ରବନ୍ଧ ପୁଣ୍ୟଶ୍ରୀମଣ୍ଡିତ ଏବଂ ମାର୍ଜିତରୁଚିସମ୍ପନ୍ନ । ମଧୁସୂଦନ ଶୁଦ୍ଧଭାବରାଜ୍ୟର ପ୍ରଧାନ କବି । ଇଂଲଣ୍ଡର କବି ଟେନିସନ୍‌ଙ୍କ ପରି ତାଙ୍କର ସ୍ଥାନ ଅନ୍ୟ କବିଦ୍ୱାରା ପୂର୍ଣ୍ଣ ହେବାର ନୁହେଁ । ତଦୀୟ କବିତାର ପ୍ରତ୍ୟେକ ପଂକ୍ତି ପୁଣ୍ୟଶ୍ରୀରେ ମୁକ୍ତା ପ୍ରାୟ ବିବେଚିତ ହୁଏ । ତାଙ୍କର ଅନେକ ରଚନା ବଙ୍ଗଦେଶର ଅନେକ ପ୍ରଖ୍ୟାତନାମା ଲେଖକଙ୍କ ମୁଖରେ ବହୁଶଃ ପ୍ରଶଂସିତ ହୋଇଅଛି । ତାଙ୍କ ପାଣ୍ଡିତ୍ୟ ଦର୍ଶନରେ ମଧ୍ୟ ଅନେକ ବୈଦେଶିକ ମନୀଷୀ ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଏ ଦେଶରେ ମାର୍ଜିତ ରୁଚିର ସଙ୍ଗୀତସାହିତ୍ୟ ଓ ସ୍ତ୍ରୀଶିକ୍ଷାର ଶୋଚନୀୟ ଅବସ୍ଥା ଦେଖି ସେ ଏ ଉଭୟର ଶ୍ରୀବୃଦ୍ଧି ସମ୍ପାଦନରେ ଯତ୍ନଶୀଳ ଥିଲେ ଏବଂ ନିଜର ପ୍ରିୟଜନଙ୍କୁ ଏଥିରେ ଅନୁରାଗୀ ହେବାର ଦେଖିଲେ ଅତ୍ୟନ୍ତ ଆନନ୍ଦ ପ୍ରକାଶ କରୁଥିଲେ ।

ମଧୁସୂଦନଙ୍କର ଗଦ୍ୟ ସାହିତ୍ୟକୁ ବିଦ୍ୟାଳୟର ଛାତ୍ରମାନେ ପ୍ରତ୍ୟହ ଅଧ୍ୟୟନ କରୁଅଛନ୍ତି । ପଦ୍ୟ ସାହିତ୍ୟ ଅଳ୍ପାଧିକ ପରିମାଣରେ ପାଠକସମାଜଙ୍କ ନିକଟରେ ପରିଚିତ । ଏ ସ୍ଥାନ ତାହାର ସମାଲୋଚନାର ଯୋଗ୍ୟ ନୁହେଁ । ତେଣୁ ଏଠାରେ କେବଳ ତତ୍‌ପ୍ରଣୀତ ପୁସ୍ତକାବଳୀର ନାମ ତାଲିକା ସଙ୍ଗେ ରଚନାର କାଳକ୍ରମ ମାତ୍ର ନିର୍ଦ୍ଦେଶ କରି ଏ ସଂକ୍ଷିପ୍ତ କଥାର ଉପସଂହାର କରୁଅଛୁ ।

## କବିତା ବା ପ୍ରବନ୍ଧମାନଙ୍କର ନାମ ଓ ରଚନାର ସମୟ –

୧ । **ଛାନ୍ଦମାଳା–** ପ୍ରଥମଖଣ୍ଡ – ୧୮୮୦-୮୧ ମଧ୍ୟରେ ଲିଖିତ ।

୨ । **ଛାନ୍ଦମାଳା–** ଦ୍ୱିତୀୟଖଣ୍ଡ – ୧୮୯୫-୯୬ରେ ଲିଖିତ ଓ ପ୍ରକାଶିତ ।

୩ । **ବାଳରାମାୟଣ–** (ଅସମ୍ପୂର୍ଣ୍ଣ) ୧୯୦୧ ଖ୍ରୀଷ୍ଟାବ୍ଦରେ ଲିଖିତ ।

୪ । **କବିତାବଳୀ–** ପ୍ରଥମଭାଗ ।

୫ । **କବିତାବଳୀ–** ଦ୍ୱିତୀୟଭାଗ – ୧୮୭୩-୭୪ରେ ଲିଖିତ ।

୬ । **ବିବିଧ କବିତା–** ୧୯୦୮ରୁ ୧୯୧୨ ମଧ୍ୟରେ ଲିଖିତ ।

୭ । **କୁସୁମାଞ୍ଜଳି–** ୧୯୦୩ ଖ୍ରୀଷ୍ଟାବ୍ଦରେ ପ୍ରକାଶିତ । ମାତ୍ର ଏତଦନ୍ତର୍ଗତ 'ଋଷିପ୍ରାଣେ ଦେବାବତରଣ' ୧୮୯୪ରେ, 'ଆଶା' ୧୮୯୨ରେ ଏବଂ 'ମହାଦେବୀ ଭିକ୍ଟୋରିୟା' ୧୯୦୧ରେ ଲିଖିତ ।

୮ । **ବସନ୍ତଗାଥା–** ୧୯୦୧ରେ ପ୍ରକାଶିତ । ଏଥିରେ ଅନେକ କବିତା ପ୍ରକାଶର ବହୁପୂର୍ବେ ଭିନ୍ନ ଭିନ୍ନ ସମୟରେ ଲିଖିତ ।

୯ । **ଉତ୍କଳଗାଥା–** ୧୯୦୮ ଖ୍ରୀଷ୍ଟାବ୍ଦରେ ଲିଖିତ ।

୧୦ । **ହିମାଚଳେ ଉଦୟଉତ୍ସବ–** ୧୯୧୨ ଖ୍ରୀଷ୍ଟାବ୍ଦରେ ଲିଖିତ ।

୧୧ । **ଶୋକଶ୍ଳୋକ–** ୧୯୧୨ ଖ୍ରୀଷ୍ଟାବ୍ଦରେ ଲିଖିତ ।

୧୨ । **ମହର୍ଷି ଦେବେନ୍ଦ୍ରନାଥ ଠାକୁର–** ୧୯୦୮ ଖ୍ରୀଷ୍ଟାବ୍ଦରେ ଲିଖିତ ।

୧୩ । **ବାମଣ୍ଡା ରାଜ-ପ୍ରଶସ୍ତି–** ୧୯୧୨ଖ୍ରୀଷ୍ଟାବ୍ଦରେ ଲିଖିତ ।

୧୪ । **ସଙ୍ଗୀତମାଳା–** ୧୮୯୪-୯୫ରେପ୍ରକାଶିତ, କେତୋଟି ସଙ୍ଗୀତ ପରେ ଯୋଗକରାଯାଇଅଛି ।

୧୫ । **ଉତ୍ତରରାମଚରିତ (ନାଟକ)–** ଖ୍ରୀଷ୍ଟାବ୍ଦ ୧୯୦୭ରୁ ୧୯୦୮ ମଧ୍ୟରେ କ୍ରମଶଃ ଲିଖିତ । ଚତୁର୍ଥ ଅଙ୍କ ଶେଷ କରି ପଞ୍ଚମରୁ କିଛି ଅଂଶ ଅନୁବାଦ କରିଥିଲେ ।

୧୬ । **ପ୍ରଣୟର ଅଦ୍ଭୁତପରିଣାମ (ଗଳ୍ପ)–** ୧୮୭୩ ଖ୍ରୀଷ୍ଟାବ୍ଦରେ ଲିଖିତ ।

୧୭ । **ହେମମାଳା–** ୧୮୯୭ ଖ୍ରୀଷ୍ଟାବ୍ଦରେ ଲିଖିତ ।

●

# ସମକାଳୀନ ପତ୍ରିକାରେ ମଧୁସୂଦନଙ୍କ ଉଦ୍ୟମରେ ପ୍ରକାଶିତ ପତ୍ରିକାର ସ୍ୱରୂପ ନିରୂପଣ ।

## ସଂସ୍କାରକ ସମ୍ପର୍କରେ

(ଦୀପିକା - ୪/୧୦/୧୮୮୪- ପୃ.୩୦୭)

ସେବକ ଏଥର ପରିବର୍ତ୍ତିତ ହୋଇ 'ସଂସ୍କାରକ' ଓ ସେବକ, ନାମରେ ବାହାରିଅଛି । ଏବଂ ଆମ୍ଭେମାନେ ତହିଁର ପ୍ରଥମ ସଂଖ୍ୟା ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ।

## ନବସମ୍ବାଦ ସମ୍ପର୍କରେ

(ଦୀପିକା -୨୯/୧୧/୧୮୮୭, ୨୨/ ୫ : ପୃ. ୩୩)

ଶିକ୍ଷାବନ୍ଧୁ ପରିବର୍ତ୍ତରେ ନବସମ୍ବାଦ ନାମକ ଯେଉଁ ସାପ୍ତାହିକ ସମ୍ବାଦ ବାହାରିବାର କଥାଥିଲା । ଗତ ରବିବାର ତହିଁର ପ୍ରଥମ ସଂଖ୍ୟା ବାହାରିଅଛି ଏବଂ ତାହା ପ୍ରାପ୍ତ ହେବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏହାର କଳେବର ଉତ୍କଳ ଦୀପିକାର ଅଧେ ଅର୍ଥାତ୍ ଏହି ଆକୃତିର ଚାରିପୃଷ୍ଠା ଓ ଅଗ୍ରିମ ବାର୍ଷିକ ମୂଲ୍ୟ ଦେଢ଼ଟଙ୍କା ଅଥବା ଡାକଯୋଗେ ପଠାଗଲେ ଦୁଇ ଟଙ୍କା । ଉତ୍କଳରେ ଏଡ଼େ ଶସ୍ତା ମୂଲ୍ୟର ସମ୍ବାଦପତ୍ର ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ନଥିଲା । ଯେଉଁମାନେ ସଙ୍ଗତି ଅଭାବରୁ ସମ୍ବାଦପତ୍ର ପଢ଼ିବାକୁ ଅକ୍ଷମ ସେମାନଙ୍କ ପକ୍ଷରେ ଏହା ବଡ଼ ସୁବିଧାଜନକ ହୋଇଅଛି । ଏଥିର ରଚନା ଉତ୍ତମ ଏବଂ ଧର୍ମନୀତି, ରାଜନୀତି, ସମାଜନୀତି, ସାହିତ୍ୟ, ଦର୍ଶନ, ବିଜ୍ଞାନାଦି ବିଷୟ ଆଲୋଚିତ ହେବାର ସଙ୍କଳ୍ପ ଥିବାରୁ ସକଳଶ୍ରେଣୀର ପାଠକଙ୍କର ରୁଚିକର ହୋଇପାରିବ । ବାବୁ ଭୂପତିନାଥ ବସୁ ଏଥିର ସମ୍ପାଦକ ଏବଂ ବ୍ରାହ୍ମଧର୍ମ ପ୍ରଚାର ଏଥିର ପ୍ରଧାନ ଉଦ୍ଦେଶ୍ୟବୋଲି ଜଣାଯାଉଅଛି । ନବସମ୍ବାଦ ଦୀର୍ଘଜୀବୀ ହେଉ ଆମ୍ଭମାନଙ୍କର ଏହା କାମନା

## ଆଶା ସମ୍ପର୍କରେ

(ଦୀପିକା ୬/୧୦/୧୮୮୮ – ପୃ. ୩/୪)

'ଆଶା' ନାମରେ ପୁଣି ଖଣ୍ଡିଏ କ୍ଷୁଦ୍ରମାସିକ ପତ୍ରିକା ଏଠା ଭିକ୍ଟୋରିଯା ଯନ୍ତ୍ରାଳୟରେ ମୁଦ୍ରିତ ହୋଇ ବାହରିବାର ଆରମ୍ଭ ହୋଇଅଛି ଏବଂ ଆମ୍ଭେମାନେ ତହିଁର ପ୍ରଥମସଂଖ୍ୟା ପାଇଥିବାର କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ । ଏଥିରେ ପ୍ରକାଶକ ପୂର୍ବ ନବସମ୍ବାଦର ସମ୍ପାଦକ ବାବୁ ସାଧୁଚରଣ ରାୟ ଅଟନ୍ତି । ସୁତରାଂ ରଚନାବିଷୟରେ ଅଧିକ କିଛି ବୋଲିବାର ଆବଶ୍ୟକ ନାହିଁ ଏବଂ ବିଷୟ ବିଚାରରେ ଏହାକୁ ସାମ୍ୟବାଦିର ସ୍ଥାନ ଅଧିକାର କରିବାର ବୋଲା ଯାଇପାରେ । ମୂଲ୍ୟଅଗ୍ରିମ ବାର୍ଷିକ ୦୧ ଧାର୍ଯ୍ୟ ହୋଇଅଛି ଅତଏବ ସୁଲଭ ବୋଲିବାକୁ ହେବ । ଉତ୍କଳରେ ସାମୟିକ ପତ୍ରିକା ଚଳାଇବାର ଚେଷ୍ଟା ପୁନଃ ୨ ବିଫଳ ହେବାର ଦେଖି ଯେ ବ୍ୟକ୍ତି ହତାଶା ନହୋଇ ଆଶା ଲଗାଇ ରଖଇ ସେ ଅବଶ୍ୟ ସାଧୁ ଏଥିରେ ସନ୍ଦେହ ନାହିଁ । ଏହି ଆଶା ଏଥର ସଫଳ ହେଲେ ଆମ୍ଭେମାନେ ବଡ଼ ଆନନ୍ଦିତ ହେବୁଁ ଏବଂ ଅନ୍ତଃକରଣ ସହିତ ତାହାଇ କାମନା କରୁଅଛୁଁ ।

## ଶିକ୍ଷାବନ୍ଧୁ ସମ୍ପର୍କରେ

(ବାହିକା-୦୫।୦୨।୧୮୮୫, ପୃ. ୨୨)

କୃତଜ୍ଞତା ସହିତ ସ୍ୱୀକାର କରୁଅଛୁଁ ଯେ, ଶିକ୍ଷାବନ୍ଧୁ ନାମରେ ଖଣ୍ଡିଏ ମାସିକ ପତ୍ରିକା ଉପହାର ପାଇଅଛୁଁ । ଶିକ୍ଷାବନ୍ଧୁର କଳେବର ରଏଲ ଆଠପେଜିରେ ଏକଫର୍ମା, (ବାହିକାର କଳେବର ତୁଲ୍ୟ) ବାର୍ଷିକ ମୂଲ୍ୟ ଡାକମାସୁଲ ସହିତ ଟଙ୍କାଏ । ଏଥିରେ ଶିକ୍ଷା ସମ୍ବନ୍ଧୀୟ ବିଷୟ ବିବୃତ ହେବ ବୋଲି ସୂଚିତ ହୋଇଅଛି । ଏହି ପତ୍ରିକାର ଗ୍ରାହକ ଅଧିକ ହେବାର ସମ୍ଭବ; ଯେହେତୁ ଆରମ୍ଭରୁ ରାଧାନାଥବାବୁଙ୍କ କାର୍ଯ୍ୟାବଳୀର ସମାଲୋଚକ ଦୀପିକା ଏବଂ ବାହିକାର ନିନ୍ଦା କରାଯାଇଅଛି । ବିଶେଷରେ କଳେକୌଶଳେ ଶିକ୍ଷା ବିଭାଗର ଅନେକ କର୍ମଚାରୀ ଏଥିରେ ଗ୍ରାହକ ହେବେ ନୋହିଲେ ଚାରା ନାହିଁ । ଶିକ୍ଷାବନ୍ଧୁ ପାଠମାଳାର ପ୍ରଶଂସା କରୁଁ କରୁଁ ପୁରୁଣା କଥାକୁ ମାଜିବାର କ୍ଷିଅ ବାହାର କରିଅଛନ୍ତି; ସେଥିର ଉତ୍ତର ପରେ ଦେବୁଁ, ଶିକ୍ଷାବନ୍ଧୁର ଦୋଷଗୁଣ ବିଷୟରେ ଏତେବେଳେ କିଛି କହିବୁଁ ।

ଶିକ୍ଷାବନ୍ଧୁର ଭାଷା ମନ୍ଦ ନୋହେ, ତେବେ ଅନେକ ସ୍ଥଳରେ ଭାଷା ଦୋଷ ଦେଖିଲୁଁ, କଟକରେ ପ୍ରକାଶିତ ପତ୍ରିକାରେ ଦେଙ୍କ ପ୍ରେସରେ ମୁଦ୍ରିତ ପୁସ୍ତକର ଭାଷା ତୁଲ୍ୟ ଦୋଷ ରହିବା ଅବଶ୍ୟ ଦୁଃଖର ବିଷୟ । ଶିକ୍ଷାବନ୍ଧୁର ଲେଖକ ମହାଶୟମାନେ ମାନନ୍ତୁ ବା ନମାନନ୍ତୁ, ଓଡ଼ିଆ ପୁଅଙ୍କ ମାନିବା ନିମନ୍ତେ କେତେକ ଦୋଷ ଦେଖାଇଦେଉଅଛୁ ।

ପ୍ରଥମ ପ୍ରସ୍ତାବ ମଧ୍ୟରେ ''ତାହାଙ୍କର ଶିକ୍ଷାଗତ''ସ୍ଥଳରେ ''ତାଙ୍କ ଶିକ୍ଷାଦାନ ପ୍ରତି'' ଏହିପରି ଲେଖିଥିଲେ ସ୍ପଷ୍ଟ ଓ ସୁବୋଧ ହୋଇଥାନ୍ତା । ଉକ୍ତ ପୃଷ୍ଠାରେ **''ସମ୍ୟକରୂପେ''** ଏସ୍ଥଳରେ **''ସମ୍ୟକରୂପେ ଅଥବା ସମ୍ୟଗ୍ରୂପେ''** ହେବା ଉଚିତ୍ । **କ୍ଷୁଦ୍ର** ଜିନିସ(ଷ) ପ୍ରବନ୍ଧ ମଧ୍ୟରେ – ''ଯେଉଁମାନେ ପୃଥିବୀରେ ବଡ଼ଲୋକ **ହୋଇଅଛନ୍ତି** ସେମାନଙ୍କ ଜୀବନଚରିତ ବେଳେ ଅଧ୍ୟୟନ କଲେ ସ୍ପଷ୍ଟପ୍ରତୀୟମାନ ହେବ ଯେ, ସେମାନେ କିପରି ପ୍ରତ୍ୟେକ ସାମାନ୍ୟ ବିଷୟ ପ୍ରତି ବିଶେଷ ଯତ୍ନ **କରନ୍ତି** । ପୁଣି କୌଣସି ବିଷୟ ଯେତେ ସାମାନ୍ୟ ହେଉନା କାହିଁକି ତାହା ପ୍ରତି ଅନାଦର ଭାବ ପ୍ରକାଶ **କରନ୍ତି ନାହିଁ''** । ରେଖାରଢ଼ କ୍ରିୟାମାନଙ୍କରେ ବିଶେଷ ଭୁଲଅଛି । **''ହୋଇଅଛନ୍ତି ସ୍ଥଳେ ହୋଇଥିଲେ, କରନ୍ତି ସ୍ଥଳେ କରୁଥିଲେ ଏବଂ କରନ୍ତି ନାହିଁ ସ୍ଥଳେ କରୁନଥିଲେ''** ଏହିପରି ହେବା ଅବଶ୍ୟ ଉଚିତ୍ । ସମାଜ ଛଡ଼ା ପ୍ରଥମ ପରିଚ୍ଛେଦ ମଧ୍ୟରେ **''ତାହାପ୍ରତି''** ସ୍ଥଳରେ ସେଥିପ୍ରତି ଅବା ତହିଁ ପ୍ରତି ହେବା ଉଚିତ୍ । ୨ୟ ପରିଚ୍ଛେଦରେ **''ମନେ କରିନାହିଁ''** ବାଜେ ଖରଚ କରନ୍ତି, ନଷ୍ଟ କରି ଅଛନ୍ତି; ତୃତୀୟ ପରିଚ୍ଛେଦରେ **''ଜାଣୁନାହିଁ''** ଏ ସ୍ଥଳେ ରେଖାରଢ଼ କ୍ରିୟାମାନଙ୍କ ବଦଳରେ **କରେଁ ନାହିଁ. କରିବେ, କରିଥିବେ, ଜାଣୁନୋହୁଁ** ଏହିପରି କ୍ରିୟା ହେବା ବିଧେୟ ।

## ସଂସ୍କାରକ ଓ ସେବକ

**(ବାହିକା - ୧୬/୧୦/୧୮୮୪- ପୃ.୧୫୯)**

ଆମ୍ଭେମାନେ ଆନନ୍ଦର ସହିତ ପ୍ରକାଶ କରୁଅଛୁଁ ଯେ, 'ସଂସ୍କାରକ ଓ ସେବକ' ନାମରେ ଖଣ୍ଡିଏ ମାସିକ ଓଡ଼ିଆ ପତ୍ରିକା ପ୍ରତିବଦଳ ନିମନ୍ତେ ପାଇଅଛୁଁ । ସଂସ୍କାରକ ଓ ସେବକ, ଶ୍ରୀଭାବଗ୍ରାହୀ ଦାସଙ୍କ ଦ୍ୱାରା ସମ୍ପାଦିତ, କଟକ ପ୍ରିଣ୍ଟିଂ କୋମ୍ପାନୀଙ୍କ ଯନ୍ତ୍ରାଳୟରେ ମୁଦ୍ରିତ, କଳେବର ଡିମାଇ ଚାରିପେଜ ଫର୍ମାରେ ଦୁଇଫର୍ମା, ଅଗ୍ରିମ ବାର୍ଷିକ ମୂଲ୍ୟ ଟ ୩୍ୟ ସେଥିସଙ୍ଗରେ ''ସେବକ'' ନାମରେ ଆଉ ଖଣ୍ଡିଏ ପତ୍ରିକା ପାଇଅଛୁଁ; ସେଥିର କଳେବର ଡିମାଇ ଫର୍ମାରେ ଚାରିପୃଷ୍ଠା । ଫଳକଥା ଏହି, ପୂର୍ବ ପ୍ରକାଶିତ ସେବକ ଉକ୍ତ ଦିଓଟି ଆକାର ଧାରଣ କରିଅଛି । ସଂସ୍କାରକରେ ନାନା ବିଷୟ, ସେବକରେ କେବଳ ଧର୍ମ ବିଷୟ ପ୍ରକଟିତ ହୋଇଅଛି ।

## ନବସମ୍ବାଦ

**(ବାହିକା - ୨୭/୦୧/୧୮୮୭- ପୃ.୧୪)**

ଆମ୍ଭେମାନେ ଆନନ୍ଦର ସହିତ ପ୍ରକାଶ କରୁଅଛୁଁ ଯେ, ''ନବସମ୍ବାଦ'' ନାମକ ସାପ୍ତାହିକ ପତ୍ରିକାର ପ୍ରଥମ ସଂଖ୍ୟାରୁ ଖଣ୍ଡିଏ ପାଇଅଛୁଁ । ନବସମ୍ବାଦ କଟକ ନଗରସ୍ଥ

ଭିକ୍ଟୋରିଆ ପ୍ରେସ୍‌ରେ ମୁଦ୍ରିତ । ବାବୁ ଭୂପତି ନାଥ ବସୁ ଏହି ପତ୍ରିକାର ସମ୍ପାଦକ । ପତ୍ରିକାର କଳେବର ରଏଲ ଫର୍ମାରେ ୪ପୃଷ୍ଠା, ଅର୍ଥାତ୍ ଅତିରିକ୍ତ ଛଡ଼ା ବାହିକାର କଳେବରର ସମାନ । ମୂଲ୍ୟ ବାର୍ଷିକ ଅଗ୍ରିମ ଟ ୧୍ୟ, ମୋଫସଲ ନିମନ୍ତେ ଟ୨/-; ଶଂସିତ ପତ୍ରିକା ପ୍ରତି ରବିବାରରେ ପ୍ରକାଶିତ ହେବ । ଗତ ରବିବାର ଦିନ ପ୍ରଥମେ ପ୍ରକାଶିତ ହୋଇଅଛି ।

ଶଂସିତ ପତ୍ରିକାର ଉଦ୍ଦେଶ୍ୟ ମହତ୍, ଲେଖା ଉତ୍ତମ, ପତ୍ରିକାର ପ୍ରଥମ ସ୍ତମ୍ଭରେ ଯେଉଁ ସୂଚନା ଲେଖାଯାଇଅଛି, ସେଥିରେ ନମ୍ରତାର ଅଭାବ ଦେଖି ଦୁଃଖିତ ହେଲୁଁ । କରିବା ପୂର୍ବରୁ ସଦର୍ପରେକହିବା ଆମ୍ଭମାନଙ୍କୁ ଭଲ ଲାଗିଲା ନାହିଁ । ତେବେ କହଣିକୁ କହଣିରେ ପରିଣତ କଲେ ଭଲ ଦିଶିବ । ଏତେ ବେଳେ ଆମ୍ଭେମାନେ କାମନା କରୁଅଛୁଁ ଯେ, ନବସମ୍ବାଦ ଦୀର୍ଘଜୀବୀ ହେଉ ଏବଂ ଦମୟ (ଦୟାମୟ) ଶ୍ରୀହରିଙ୍କ କୃପାରୁ ଉତ୍କଳବାସିଙ୍କ ସ୍ନେହ ଆକର୍ଷଣ କରୁ ।

## ଆଶା

**(ଓଡ଼ିଆ ଓ ନବସମ୍ବାଦ - ୩୧/୧୦/୧୮୮୮ ପୃ.୨-୩)**

ଆମ୍ଭେମାନେ ''ଆଶା'' ଏହି ନାମର ଖଣ୍ଡିଏ ମାସିକ ପତ୍ରିକାର ୧ମ ଖଣ୍ଡର ପ୍ରଥମ ସଂଖ୍ୟା ପ୍ରାପ୍ତ ହୋଇଅଛୁଁ । 'ଆଶା, କଟକ ଭିକ୍ଟୋରିୟା ପ୍ରେସରେ ମୁଦ୍ରିତ । ନବସମ୍ବାଦର ଭୂତପୂର୍ବ ସମ୍ପାଦକ ବାବୁ ସାଧୁଚରଣ ରାୟଙ୍କ ଦ୍ୱାରା ପ୍ରକାଶିତ । ଉତ୍କଳରେ ଆଜି ପର୍ଯ୍ୟନ୍ତ ମାସିକ ପତ୍ରିକା ଯେତେଖଣ୍ଡ ପ୍ରକାଶିତ ହୋଇଅଛି; ସେଥିମଧ୍ୟରୁ କାହାରି ଅସ୍ତିତ୍ୱ ଆଜି ପର୍ଯ୍ୟନ୍ତ ସ୍ଥାୟୀ ହୋଇ ପାରିନାହିଁ । ଉତ୍କଳ ସାହିତ୍ୟ ସଂସାର ଘୋରତର ଦୁର୍ଦ୍ଦିନ ନଘୁଞ୍ଚିଲେ; ଓ ଶିକ୍ଷିତ ଲୋକ ବିତସ୍ପୃହ ନହେଲେ ଓ ଗ୍ରାହକମାନଙ୍କ ବିଡ଼ମ୍ବନା ଭୋଗ କରିବାକୁ ନହେଲେ, ଆଜି ଉତ୍କଳ ସାହିତ୍ୟର ଅନେକ ହିତସାଧିତ ହୋଇ ପାରିଥାନ୍ତି(ନ୍ତା) । ଏହି ବିଷୟରେ ''ଆଶା'' ସମ୍ପାଦକ ଆଶାର କଥାରେ ଯାହା ଲେଖି ଅଛନ୍ତି ତାହାହିଁ ଯଥେଷ୍ଟ ହୋଇ ଅଛି । ଆଶାର ଅଗ୍ରିମ ବାର୍ଷିକ ମୂଲ୍ୟ ସହରରେ ଟ ୦୍ୟ ଅଣା ବିଦେଶ ପାଇଁ ଡାକମାସୁଲ ସହିତ ଟ୦.୭୫ ଏଣୁ ଏହା ସୁଲଭ । ଆମ୍ଭେମାନେ ଆଶା କରୁଁ ଶିକ୍ଷିତ ବ୍ୟକ୍ତିମାନେ ଆଶାକୁ ଦୀର୍ଘଜୀବି ରଖି ଉତ୍କଳର ପୂର୍ବ କଳଙ୍କ ଦୂର କରିବେ । ପ୍ରଥମ ସଂଖ୍ୟା ଦେଖି ଆମ୍ଭେମାନେ ବିଶେଷ କୌଣସି ମତଦେଇ ପାରିଲୁଁ ନାହିଁ । ବିଶେଷରେ ଆମ୍ଭେମାନେ ଜଗଦୀଶ୍ୱରଙ୍କଠାରେ ପ୍ରାର୍ଥନା କରୁଅଛୁଁ ଯେ, ଯେମନ୍ତ ଆଶା ଦୀର୍ଘଜୀବି ହୋଇ ଉତ୍କଳ ସାହିତ୍ୟର ମୁଖକୁ ଉଜ୍ଜ୍ୱଳ କରନ୍ତି ।



# ଭକ୍ତକବି ମଧୁସୂଦନଙ୍କ ରଚନାର କାଳ-ନିର୍ଣ୍ଣୟ

**ନଟବର ସାମନ୍ତରାୟ**

ଉତ୍କଳ ସାହିତ୍ୟ ୧୯।୪ (*=ଜୁଲାଇ ୧୯୧୫*)ର *'ସାହିତ୍ୟ ସମ୍ବାଦ'*ରେ ଅଛି, *'ମଧୁସୂଦନ ଗ୍ରନ୍ଥାବଳୀ ବର୍ଷାଧିକ ହେଲା ଯନ୍ତ୍ରସ୍ଥ । ଆଗାମୀ ଦୁର୍ଗାପୂଜା ପୂର୍ବରୁ ପ୍ରକାଶିତ ହେବା ପାଇଁ ବିଶେଷ ଚେଷ୍ଟା ହେଉଅଛି ।'* ପୃ. ୧୯୪ । ଉତ୍କଳ ସାହିତ୍ୟ ୧୯।୯ (=ଡିସେମ୍ବର ୧୯୧୫)ରେ ଅଛି, *''ଭକ୍ତକବି ରାୟ ମଧୁସୂଦନ ରାଓ ବାହାଦୁରଙ୍କ ସମସ୍ତ ପ୍ରକାଶିତ ଓ ଅପ୍ରକାଶିତ କବିତା, ଉତ୍ତର ରାମଚରିତ ନାଟକ ଓ ଦିଓଟି ମନୋହର ଗଳ୍ପ ଏକ ପୁସ୍ତକାକାରରେ ପ୍ରକାଶିତ ହେଉଅଛି ।''* ଉତ୍କଳ ସାହିତ୍ୟ ୧୯।୧୦ (=ଜାନୁୟାରୀ ୧୯୧୬)ର *'ସାହିତ୍ୟ ସଂବାଦ'*ରେ ଅଛି, *''ମଧୁସୂଦନ ଗ୍ରନ୍ଥାବଳୀ ଦୁଇମାସ ହେଲା ପ୍ରକାଶିତ ହୋଇଅଛି ।''* ଦୀର୍ଘ ୩୪ ବର୍ଷ ପରେ ଅର୍ଥାତ୍ ୧୯୪୯ ସାଲରେ ଏ ଗ୍ରନ୍ଥାବଳୀର ଦ୍ୱିତୀୟ ସଂସ୍କରଣ ଆତ୍ମପ୍ରକାଶ କରେ । ପ୍ରକାଶକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ବ୍ରହ୍ମପୁର : କଟକ : ସମ୍ବଲପୁର । ଗତ କେତେ ବର୍ଷ ଭିତରେ ପ୍ରଥମ ଦୁଇ ସଂସ୍କରଣର ଲେଖା ସହିତ ଆଉ କେତୋଟି ଲେଖା ଯୋଗ କରି କେତେକ ପ୍ରକାଶକ ମଧୁସୂଦନ-ଗ୍ରନ୍ଥାବଳୀ ପ୍ରକାଶ କରିଥିବାର ଦେଖିବାକୁ ମିଳେ । *'ଗ୍ରନ୍ଥାବଳୀ'*ର ପ୍ରଥମ ଦୁଇଟି ସଂସ୍କରଣକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ମଧୁସୂଦନଙ୍କ ସୁଯୋଗ୍ୟ ଶିଷ୍ୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଯେଉଁ ଗଭୀର ଅଧ୍ୟୟନ ଓ ଅଧ୍ୟବସାୟ କରିଥିଲେ ତା'ର କୌଣସି ସଙ୍କେତ ଶେଷୋକ୍ତ ଗ୍ରନ୍ଥାବଳୀମାନଙ୍କରେ ନଥିବାରେ ଆଶ୍ଚର୍ଯ୍ୟ କିଛି ନାହିଁ *'ଉତ୍କଳ ସାହିତ୍ୟ'* ପତ୍ରିକାରେ ଧାରାବାହିକ ଭାବେ ପ୍ରକାଶିତ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଅମର ଲେଖନୀ ପ୍ରସୂତ *'ବ୍ରହ୍ମଜ୍ଞ ମଧୁସୂଦନ'* ପ୍ରବନ୍ଧ ଓ ବହୁ ଉପାଦାନ-ସମନ୍ୱିତ ଏଇ ଗ୍ରନ୍ଥାବଳୀ ନଥିଲେ ମଧୁସୂଦନଙ୍କ ଜୀବନୀ, ତାଙ୍କ ଧର୍ମଦର୍ଶନ ଓ ସାହିତ୍ୟ ଉପରେ ଆଜି ପର୍ଯ୍ୟନ୍ତ ଓଡ଼ିଆରେ ଯାହା କିଛି ଆଲୋଚନା ହୋଇଯାଇଛି, ସେ ସବୁ ସମ୍ଭବପର ହୋଇ ପାରିଥାନ୍ତା ବୋଲି ମନେହୁଏ ନାହିଁ । ଏ କ୍ଷେତ୍ରରେ ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ଅଧ୍ୟବସାୟ ଯେପରି ଅଭିନନ୍ଦନୀୟ, ତାଙ୍କର ଅବଦାନ ସେଇପରି ଏକାନ୍ତ ଅନତିକ୍ରାନ୍ତ ।

ତଥାପି ଏଠାରେ ଆମେ ଅତି ବିନମ୍ର ଭାବରେ ଉଲ୍ଲେଖ କରୁଛୁ ଯେ ଜୀବନର ଦୀର୍ଘ ଚାଳିଶ ବର୍ଷ (**୧୮୭୩ ସାଲର 'ଉତ୍କଳଦର୍ପଣ' ଠାରୁ ୧୯୧୨ ସାଲର ମୃତ୍ୟୁ ପର୍ଯ୍ୟନ୍ତ**) ଧରି ମଧୁସୂଦନ ନିଜ ସାହିତ୍ୟ କ୍ଷେତ୍ରରେ ଯାହା କିଛି ଲେଖିଯାଇଛନ୍ତି ସେ

ସମସ୍ତ ଗ୍ରନ୍ଥାବଳୀରେ ପଣ୍ଡିତ ମୃତ୍ୟୁଞ୍ଜୟ ସଂଗ୍ରହ କରିପାରି ନାହାନ୍ତି । ଏପରି କି, ମଧୁସୂଦନଙ୍କ ପାଠ୍ୟପୁସ୍ତକକୁ ବାଦ ଦେଲେ ମଧ ଯାହା ଯଥାର୍ଥ ସାହିତ୍ୟ ପଦବାଚ୍ୟ ଓ ଯାହା ତାଙ୍କ ଚିନ୍ତା-ଧାରା ତଥା ସାହିତ୍ୟ ଅବବୋଧ ଦିଗରେ ଏକାନ୍ତ ଅପରିହାର୍ଯ୍ୟ, ସେ ସମସ୍ତ ରଚନା **'ଗ୍ରନ୍ଥାବଳୀ'**ରେ ସ୍ଥାନ ପାଇ ନାହାନ୍ତି । ତେଣୁ, ମଧୁସୂଦନଙ୍କ ସାହିତ୍ୟ ଅବବୋଧ ତଥା ସମୀକ୍ଷା ଦିଗରେ ଏପରି ଅସମ୍ପୂର୍ଣ୍ଣ ଗ୍ରନ୍ଥାବଳୀ ଯେ କେତେକ ପରିମାଣରେ ପ୍ରତିବନ୍ଧକ ସୃଷ୍ଟି କରୁଛି ତାହା ଅସ୍ୱୀକାର କରାଯାଇନପାରେ । ପୁନଶ୍ଚ, **'ଗ୍ରନ୍ଥାବଳୀ'**ରେ ଥିବା ପଣ୍ଡିତ ମୃତ୍ୟୁଞ୍ଜୟଙ୍କ ପ୍ରଦତ୍ତ ମଧୁସୂଦନଙ୍କ ସଂକ୍ଷିପ୍ତ **'ଜୀବନବୃତ୍ତାନ୍ତ'**ରେ ମଧୁସୂଦନଙ୍କ ରଚନାଗୁଡ଼ିକର ପ୍ରକାଶ-ସମୟ ଯାହା ଦିଆଯାଇଛି ତାହା ମଧ ବହୁ ସ୍ଥଳରେ ସଠିକ ଓ ପରିପୂର୍ଣ୍ଣ ନୁହେଁ । ବହୁ ସ୍ଥଳରେ ଅନୁଲ୍ଲିଖିତ, ଅନ୍ୟ କେତେକ ସ୍ଥଳରେ ପ୍ରମାଦପରିପୂର୍ଣ୍ଣ ଯେଉଁ **'ସମୟ'**ର ନିର୍ଦ୍ଦେଶ ଦିଆଯାଇଛି, ଆଜି ପର୍ଯ୍ୟନ୍ତ ଏ ଦେଶର ମଧୁସୂଦନ-ସାହିତ୍ୟ-ସମୀକ୍ଷକମାନେ ତା'ର କେବଳ ଅନ୍ଧାନୁସରଣ କରିଆସୁଛନ୍ତି । ତାଙ୍କ ସାରସ୍ୱତ ସମ୍ପଦର ଏକ ପରିପୂର୍ଣ୍ଣ ଚିତ୍ର ପ୍ରଦାନ ତଥା ତାଙ୍କ ରଚନାର ସଠିକ ପ୍ରକାଶ ସମୟ ଉପସ୍ଥାପନ ଉଦ୍ଦେଶ୍ୟରେ ବର୍ତ୍ତମାନ ପ୍ରବନ୍ଧଟି ଆମେ ମଧୁସୂଦନ-ସାହିତ୍ୟ-ପ୍ରେମୀଙ୍କ ପାଇଁ ପ୍ରସ୍ତୁତ କରିଛୁ । ତଥାପି ଆମେ ସ୍ପଷ୍ଟ ସ୍ୱୀକାର କରି ନେଉଛୁ ଯେ ଆମର ଉପାଦାନ-ସଂଗ୍ରହ ମଧ ପରିପୂର୍ଣ୍ଣ ନୁହେଁ । କିନ୍ତୁ ପରବର୍ତ୍ତୀ ଗବେଷକମାନଙ୍କୁ ଏହା କେତେକ ପରିମାଣରେ ସାହାଯ୍ୟ କରି ପାରିଲେ ଏ ଦିଗରେ ଆମର ସମସ୍ତ ଶ୍ରମ ସାର୍ଥକ ହୋଇଛି ବୋଲି ଆମେ ଅନୁଭବ କରିବୁଁ ।

'ଉତ୍କଳ ଦର୍ପଣ'ର ପ୍ରଥମ ଦୁଇ ବର୍ଷରେ (୧୮୭୩ ଓ ୧୮୭୪ ସାଲ) ରାଧାନାଥ ଓ ମଧୁସୂଦନଙ୍କ ନିମ୍ନଲିଖିତ ରଚନାମାନ ପ୍ରକାଶ ପାଇଥିଲେ ବୋଲି ପଣ୍ଡିତ ମୃତ୍ୟୁଞ୍ଜୟ କହନ୍ତି । ଯଥା :— *ରାଧାନାଥଙ୍କର ମେଘଦୂତ, ପବନ, ଇଟାଲୀୟ ଯୁବା, ବିବେକୀ, କାଳିଦାସ ପ୍ରଭୃତି ଲେଖା ଓ ମଧୁସୂଦନଙ୍କର ଶ୍ମଶାନ, ନିଶୀଥଚିନ୍ତା, ନିର୍ବାସିତର ବିଳାପ, ଅଯୋଧ୍ୟା ପ୍ରତ୍ୟାଗମନ, ବୁଦ୍ଧଦେବ, ସୂର୍ଯ୍ୟ, ଉଲ୍‌କାପିଣ୍ଡ, ଶାସନ ପ୍ରଣାଳୀ, ଚନ୍ଦ୍ର ଓ ତାରା, ପିତୃଭକ୍ତି, ପ୍ରଣୟର ଅଦ୍ଭୁତ ପରିଣାମ ପ୍ରଭୃତି ଲେଖା (ଉତ୍କଳ ସାହିତ୍ୟ ୨୩।୮ ସଂଖ୍ୟା ଅର୍ଥାତ୍ ୧୯୧୯ ନଭେମ୍ବରରେ ପ୍ରକାଶିତ 'ଊନବିଂଶ ଶତାବ୍ଦୀର ଉତ୍କଳ ପତ୍ରିକା' ପ୍ରବନ୍ଧ ।)*

'ଉତ୍କଳପୁତ୍ର'ର ତା ୧୬।୮।୧୮୭୩ ସଂଖ୍ୟାରେ ଅଛି, ***''ଗତ ସଂଖ୍ୟା ଉତ୍କଳ ଦର୍ପଣ ପାଠ କରି ବଡ଼ ଆହ୍ଲାଦିତ ହେଲୁଁ । ଏହାର ଭାଷା ପୂର୍ବାପେକ୍ଷା ଅନେକ ଉନ୍ନତି ଲାଭ କରିଅଛି । 'ଚନ୍ଦ୍ର ଓ ତାରା' ନାମକ ପ୍ରବନ୍ଧଟି ଭାବପୂର୍ଣ୍ଣ ଓ ସୁନ୍ଦର ଅଟେ । 'ଶାସନ***

*ପ୍ରଣାଳୀ' ନାମରେ ଯେଉଁ ପ୍ରସ୍ତାବ ପ୍ରକାଶିତ ହୋଇଅଛି ତାହା ଦାର୍ଶନିକ ଓ ଧର୍ମନୈତିକ ସୂତ୍ରରେ ଲିଖିତ ହେବାର ଜଣାଯାଏ । କିନ୍ତୁ ରାଜନୈତିକ ସୂତ୍ର ଏପରି ପ୍ରସ୍ତାବମାନଙ୍କର ପ୍ରାଣ ଅଟଇ । 'ମେଘଦୂତ'ର ଅନୁବାଦ (ଇତିପୂର୍ବେ ଯାହା ବୋଧଦାୟିନୀରେ ମୁଦ୍ରିତ ହେଉଥିଲା) ମଧ ମନ୍ଦ ନୁହେଁ । 'ଇଟାଲୀୟ ଯୁବା' ସମ୍ବନ୍ଧରେ ବର୍ତ୍ତମାନ କିଛି ବକ୍ତବ୍ୟ ନାହିଁ । ସ୍ଥଳରେ ଗତ ସଂଖ୍ୟା ସାହିତ୍ୟିକ ସୁଷ୍ଠତା ସମ୍ଯୋଗ କରିଅଛି ।''* ଏଠାରେ 'ଚନ୍ଦ୍ର ଓ ତାରା' ଏକ ପ୍ରବନ୍ଧ ବୋଲି ଗ୍ରହଣ କରାଯାଇଥିଲେ ହେଁ 'ପ୍ରବନ୍ଧମାଳା'ରେ ତାହା ଏକ ଉପନ୍ୟାସ ବୋଲି ଗୃହୀତ ହୋଇଛି । ବାଲେଶ୍ୱର ସମ୍ବାଦ ବାହିକାର ତା ୧-୧-୧୮୭୫ ସଂଖ୍ୟାରେ ଅଛି, *''ଗତ ସଂଖ୍ୟକ ଦର୍ପଣରେ ପ୍ରକାଶିତ ହେନରି-ମାଟିଲ୍ଡ଼ାଙ୍କ ପ୍ରଣୟ-ବିଷୟକ ଉପନ୍ୟାସ ଯେଉଁ ବ୍ୟକ୍ତି ମନୋଯୋଗ ସହିତ ପାଠ କରିବ, ସେ ସହୃଦୟ ଓ ଭାବୁକ ନୋହିଥିଲେ ହେଁ ଦର୍ପଣର ଅନ୍ୟ ଆକାର ଧାରଣକୁ ଅବଶ୍ୟ କଷ୍ଟକର ବୋଲି ମଣିବେ ।''* ଏହାହିଁ ମଧୁସୂଦନଙ୍କ 'ପ୍ରଣୟର ଅଦ୍ଭୁତ ପରିଣାମ' ଉପନ୍ୟାସ । ଦର୍ପଣରେ ମଧୁସୂଦନଙ୍କ ପ୍ରକାଶିତ ପ୍ରବନ୍ଧ ଓ କବିତା ପରବର୍ତ୍ତୀ ସମୟରେ 'ପ୍ରବନ୍ଧମାଳା' ଓ 'କବିତାବଳୀ'ରେ ସଂଗୃହୀତ । ତାଙ୍କର ଅନ୍ୟାନ୍ୟ ରଚନା ସହିତ ଏଇ ଉଭୟ ପୁସ୍ତକର ପରିଚୟ ଆମେ ବର୍ତ୍ତମାନ ଉପସ୍ଥାପନା କରୁଛୁଁ ।

**(୧) କବିତାବଳୀ :** ରାଧାନାଥ ଓ ମଧୁସୂଦନଙ୍କ କେତୋଟି କବିତାର ସଂଗ୍ରହ ପୁସ୍ତକ । ପ୍ରଥମ ପ୍ରକାଶ କାଳ ୧୮୭୬ ସାଲ ଓ ଦ୍ୱିତୀୟ ସଂସ୍କରଣର ସମୟ ୧୮୭୮ ସାଲ । ପ୍ରଥମ ସଂସ୍କରଣ ଉପରେ ବାଲେଶ୍ୱର ସମ୍ବାଦ ବାହିକା ତା ୧୬-୧୧-୧୮୭୬ ସଂଖ୍ୟା କହେ, *''ପ୍ରଶଂସିତ କାବ୍ୟରେ ଯେବେ କି ଅମିତ୍ରାକ୍ଷର ଛନ୍ଦର କବିତାମାନ ସଂଯୋଜିତ ହୋଇଅଛି, ତଥାଚ ସେମାନ ସଂସ୍କୃତ ଓ ଇଂରାଜୀ ଉତ୍କୃଷ୍ଟ କବିତାର ଛନ୍ଦମାନଙ୍କରୁ ବାହାର ନୋହେ ।''* ଯଥାର୍ଥତଃ, କବିତାବଳୀର ଅମିତ୍ରାକ୍ଷର ଛନ୍ଦର କୌଣସି କବିତା ନାହିଁ । ସ୍ପେନ୍‌ସରିଆନ୍ ଷ୍ଟାଞ୍ଜାରେ ଲିଖିତ ମଧୁସୂଦନଙ୍କ **'ନିଶୀଥ ଚିନ୍ତା'** ଓ **'ଭାରତୀବନ୍ଦନା'**ର କେତେକ ପାଦର ମେଳହୀନତା ଥିବା ହେତୁ 'ବାହିକା'ର ଲେଖକ ଏ ଉଭୟକୁ ଅମିତ୍ରାକ୍ଷର ଛନ୍ଦର କବିତା ବୋଲି ଭ୍ରମବଶତଃ ଗ୍ରହଣ କରି ନେଇଛନ୍ତି ମାତ୍ର ।

'ଉତ୍କଳଦୀପିକା'ର ତା ୧୫-୫-୧୮୯୦ ସଂଖ୍ୟାରେ ଜନୈକ ଲେଖକ କହିଛନ୍ତି, *''ଆମ୍ଭେମାନେ ଦେଖୁଅଛୁ ଯେ ୧୮୭୬ରେ ସ୍ୱତ୍ୱ ବିକ୍ରୟ ହୋଇଥିଲେ ସୁଦ୍ଧା ସନ ୧୮୭୮ ସାଲରେ ଉକ୍ତ ପୁସ୍ତକର (କବିତାବଳୀର) ଯେଉଁ ଦ୍ୱିତୀୟ ସଂସ୍କରଣ ବାହାରିଲା, ତହିଁର ବିଜ୍ଞାପନରେ ପ୍ରକାଶକ କୁମାର ବୈକୁଣ୍ଠନାଥ ଦେ ଉକ୍ତ ପୁସ୍ତକକୁ ରାଧାନାଥ ବାବୁ ସଂଶୋଧନ ଓ ପରିବର୍ଦ୍ଧନ କରିଥିବାର ସ୍ୱୀକୃତ କରିଅଛନ୍ତି । ତହିଁ*

*ଉତ୍ତାରୁ ୧୮୮୪-୮୫ରେ ଉକ୍ତ ପୁସ୍ତକ ଦୁଇ ଭାଗରେ ବିଭକ୍ତ ହେଲା ଏବଂ ଅନ୍ତତଃ ଯୋଡ଼ିଏ ନୂତନ କବିତା ସନ୍ନିବେଶିତ ହେଲା । ଦୁଇଭାଗରେ ପ୍ରକାଶିତ କବିତାବଳୀରେ କୌଣସି ଭାଗରେ ବିଭାଗ କରିବାର କାରଣ କିମ୍ବା ନୂତନ କବିତାର ରଚକ ସମ୍ପର୍କରେ କିଛି ଲେଖା ନାହିଁ। ସେ ସବୁ ରାଧାନାଥ ବାବୁ ଲେଖି ଦେଇଥିବାର ସମ୍ଭବ କଲେ କିପରି ଅସଙ୍ଗତ ହେବ ଜଣା ଯାଉନାହିଁ।''* କବିତାବଳୀ ଦ୍ୱିତୀୟ ଭାଗର ଏଇ ଦୁଇଟି କବିତା ଯେ ରାଧାନାଥଙ୍କର ନୁହେଁ, ତାହା ମଧୁସୂଦନଙ୍କର, ସେ ବିଷୟ ପରେ ଦେଖାଇ ଦିଆଯାଉଛି ।

କବିତାବଳୀ ୧ମ ଭାଗ ଦ୍ୱିତୀୟ ସଂସ୍କରଣ (ପ୍ରକାଶ ସମୟ ଦିଆଯାଇନି)ରେ ନିମ୍ନଲିଖିତ କବିତାମାନ ସ୍ଥାନ ପାଇଛନ୍ତି । ଯଥା :—

୧ । **ମଧୁସୂଦନଙ୍କର କବିତା : ସ୍ତୋତ୍ର, ଭାରତୀ ବନ୍ଦନା, ନିର୍ବାସିତର ବିଳାପ, ଶ୍ମଶାନ, ଶରତ ପ୍ରଭାତ, ସୀତାବନବାସ, ନିଶୀଥଚିନ୍ତା ।**

୨ । ରାଧାନାଥଙ୍କର କବିତା : ନିଜ ସୈନ୍ୟ ପ୍ରତି ଶିବାଜୀ ଓ ପବନ ଏଇପରି ସମୁଦାୟ ୯ଟି କବିତା ।

ଦ୍ୱିତୀୟ ଭାଗ କବିତାବଳୀ (୧୮୮୬)ରେ ସ୍ଥାନ ପାଇଥିବା କବିତା :—

୧ । **ମଧୁସୂଦନଙ୍କର : ଆକାଶ ପ୍ରତି, ଜୀବନଚିନ୍ତା, ଅଯୋଧ୍ୟା ପ୍ରତ୍ୟାଗମନ ।**

୨ । ରାଧାନାଥଙ୍କର : ଭାରତ-ଈଶ୍ୱରୀ, ବେଣୀ ସଂହାର ଏଇପରି ସମୁଦାୟ ୫ଟି କବିତା ।

ଉଭୟ ଭାଗର କବିତା-ସଂଖ୍ୟା ହେଉଛି ୧୪ (୯+୫) ।

କବିତାବଳୀର ପ୍ରଥମ ଦୁଇଟି ସଂସ୍କରଣରେ କେଉଁ କେଉଁ କବିତା ଥିଲେ, ଏ ଉଭୟ ପୁସ୍ତକର ଅଭାବ ହେତୁ, ତାହା ନିର୍ଣ୍ଣୟ କରିବା ସହଜ ନୁହେଁ । ତେବେ 'ସାହିତ୍ୟ ବିଷୟକ ଆଦର୍ଶ ପ୍ରଶ୍ନାବଳୀ' (୧୮୭୯ ସାଲ) ପୁସ୍ତକର ପ୍ରଶ୍ନାବଳୀ ସାହାଯ୍ୟରେ ଦ୍ୱିତୀୟ ସଂସ୍କରଣ (୧୮୭୮)ସ୍ଥ କବିତାମାନଙ୍କୁ କେତେକ ପରିମାଣରେ ଜାଣିହୁଏ । ସେ ପ୍ରଶ୍ନ ସବୁ ହେଉଛନ୍ତି :—

*୧) ସ୍ତୋତ୍ର କେଉଁ ଛନ୍ଦରେ ରଚିତ ? ୨) ସୀତାବନବାସ କେଉଁ ଛନ୍ଦରେ ବିରଚିତ । ୩) ବେଣୀ ସଂହାର କେଉଁ ରସାତ୍ମକ । ୪) ଶିବାଜୀଙ୍କର ଉତ୍ସାହ ବାକ୍ୟ*

*କେଉଁ ରସାତ୍ମକ । ୫) କାଳିଦାସଙ୍କୁ ଭାରତ ବର୍ଷର ଭୂଗୋଳ ଉତ୍ତମ ରୂପେ ଜଣାଥିବାର ପ୍ରମାଣ ଅଯୋଧ୍ୟା ପ୍ରତ୍ୟାଗମନରୁ ମିଳେ କି ନାହିଁ ? ୬) ସେ ଛବି ରସିକ ରସନାବଳେ— ଏହି ପଙ୍‌କ୍ତିରେ ଅର୍ଥ ସହଜ ଭାଷାରେ ବୁଝାଇଦିଅ ।* (ଏହି ପଦ୍ୟାଂଶଟି 'ପବନ' କବିତାରୁ ଉଦ୍ଧୃତ ।) *୭) "କଳ୍ପନା ଚିତ୍ରିଲା କେତେ ଛବି ଚିତ୍ର-ପଟେ"*— କଳ୍ପନାର ଅର୍ଥ କି ? (ଏହି ପଦ୍ୟାଂଶଟି ଶ୍ମଶାନ କବିତାରୁ ଉଦ୍ଧୃତ ।)

'ଆଦର୍ଶ ପ୍ରଶ୍ନାବଳୀ'ରେ ଅଛି, "ଶାନ୍ତି ରସାତ୍ମକ କୌଣସି କବିତା କବିତାବଳୀରୁ ଉଦ୍ଧୃତ କର ।" ଏହା ବୋଧହୁଏ 'ଶରତ ପ୍ରଭାତ' କବିତାକୁ ଲକ୍ଷ୍ୟ କରାଯାଇଛି ।

ଯେଉଁ ଦୁଇଟି ନୂତନ କବିତା ୨ୟ ଭାଗରେ ସଂଯୋଜିତ ହୋଇଛି ବୋଲି ପୂର୍ବରୁ କୁହାଯାଇଛି, ସେ ସବୁ ହେଉଛନ୍ତି ମଧୁସୂଦନଙ୍କର କବିତା । ଯଥା :—

(କ) ଜୀବନଚିନ୍ତା : ଉତ୍କଳ ମଧୁପ ୧।୬ ଓ ୧।୭ (=ସେପ୍‌ଟେମ୍ବର, ଅକ୍ଟୋବର, ୧୮୭୯) ।

(ଖ) ଆକାଶପ୍ରତି : ପ୍ରଦୀପ ୧।୮ ଅଗଷ୍ଟ, ୧୮୮୫ ସାଲ । ପୁନର୍ବାର ଏହି କବିତାଟି ଶିକ୍ଷାବନ୍ଧୁ ୧।୮, ୯ ଭାଦ୍ର, ଆଶ୍ୱିନ ୧୨୯୨ ସାଲ (=ଅଗଷ୍ଟ, ସେପ୍‌ଟେମ୍ବର, ୧୮୮୫ ସାଲ)ରେ ମୁଦ୍ରିତ ।

କବିତାବଳୀର କବିତା କିପରି ଭିନ୍ନ ଭିନ୍ନ ସଂସ୍କରଣରେ ସ୍ଥାନ ପାଇଛନ୍ତି ତାହା ଦେଖନ୍ତୁ ।

(କ) ୧୮୭୮ ସାଲର ଦ୍ୱିତୀୟ ସଂସ୍କରଣ : *ସ୍ତୋତ୍ର, ସୀତାବନବାସ, ବେଣୀସଂହାର, ନିଜ ସୈନ୍ୟପ୍ରତି ଶିବାଜୀ, ଅଯୋଧ୍ୟା ପ୍ରତ୍ୟାଗମନ, ପବନ, ଶ୍ମଶାନ, ନିଶୀଥଚିନ୍ତା, ଭାରତୀବନ୍ଦନା, ନିର୍ବାସିତର ବିଳାପ* (ଉତ୍କଳ ଦର୍ପଣରେ ପ୍ରକାଶିତ ବୋଲି ପଣ୍ଡିତ ମୃତ୍ୟୁଞ୍ଜୟ କହନ୍ତି ।) *ଓ ଶରତ ପ୍ରଭାତ* = ୧୧ଟି କବିତା ।

(ଖ) ୧୮୮୪-୮୫ ସାଲର ଦ୍ୱିତୀୟ ଭାଗରେ ଦୁଇଟି ନୂତନ କବିତା : *ଜୀବନଚିନ୍ତା ଓ ଆକାଶପ୍ରତି ।*

(ଗ) ୧୮୮୬ ସାଲର ଦ୍ୱିତୀୟ ଭାଗରେ ଅନ୍ୟ ଏକ ନୂତନ କବିତା : *ଭାରତ-ଈଶ୍ୱରୀ ।*

'ତାରକା ଓ ଶୁଭବାର୍ତ୍ତା'ର ଜାନୁୟାରୀ ୧୮୮୭ ସାଲ ସଂଖ୍ୟାରେ କୁହାଯାଇଛି ଯେ ଭାରତେଶ୍ୱରୀ ଭିକ୍ଟୋରିୟାଙ୍କ ରାଜତ୍ୱର ଜୁବୁଲି ଉତ୍ସବ ତା ୨୦-୬-୧୮୮୬ ଠାରୁ ତା ୨୦-୬-୧୮୮୭ ପାଳିତ ହୋଇଥିଲା । ରାଧାନାଥଙ୍କ 'ଭାରତ-ଈଶ୍ୱରୀ' କବିତାଟି ଏଇ ଜୁବୁଲି ଉତ୍ସବ ଅବଲମ୍ବନରେ ରଚିତ । ଏ କବିତାର ଶେଷରେ ଥିବା 'ଏକତା ବିରାଜୁ ଏ ଭାରତ ସଦ୍ମେ' ଭାରତ ଜାତୀୟ ମହାସମିତି (୧୮୮୫)କୁ ଲକ୍ଷ୍ୟ କରାଯାଇଛି ।

କେତେକ କାରଣରୁ ପରବର୍ତ୍ତୀ ସଂସ୍କରଣରୁ *'ନିଜ ସୈନ୍ୟପ୍ରତି ଶିବାଜୀ'* କବିତାଟି ଉଠିଯାଇଥିଲା । ତାହା ସ୍ଥାନରେ ରାଧାନାଥଙ୍କ କବିତା *'ତିନିବନ୍ଧୁ'* (ଉତ୍କଳ ସାହିତ୍ୟ ୨।୪ ବୈଶାଖ ୧୩୦୫ ଅର୍ଥାତ୍ ଏପ୍ରିଲ, ୧୮୯୮) ସଂଯୋଜିତ ହୋଇଥିବାର ଦେଖିବାକୁ ମିଳେ ।

**(୨) ପ୍ରବନ୍ଧମାଳା :** ୧୮୮୦ ସାଲରେ ପ୍ରଥମ ସଂସ୍କରଣ । ୧୮୮୬ ସାଲର ଦ୍ୱିତୀୟ ସଂସ୍କରଣରେ ନିମ୍ନଲିଖିତ ପ୍ରବନ୍ଧମାନ ସ୍ଥାନ ପାଇଥିଲେ । ଯଥା– *୧) ରାଣୀ ଦୁର୍ଗାବତୀ, ୨) ଲିସବନ୍ ଭୂମିକମ୍ପ, ୩) ବୁଦ୍ଧଦେବ, ୪) ସାର ଆଇଜାକ୍ ନିଉଟନ, ୫) ଉଲ୍‌କାପିଣ୍ଡ, ୬) ବାୟୁରାଶି, ୭) ସୂର୍ଯ୍ୟ, ୮) ଚନ୍ଦ୍ର ଓ ତାରା, ୯) ନେପୋଲିୟନ, ୧୦) ଆଗ୍ନେୟଗିରି, ୧୧) ଜାତୀୟ ସାହିତ୍ୟ, ୧୨) ପରିଶ୍ରମର ମୁଖ, ୧୩) ଗତି, ୧୪) ଶାସନ ପ୍ରଣାଳୀ, ୧୫) ପୁରୁଷଭାବ ଓ ନାରୀଭାବ, ୧୬) ସୌନ୍ଦର୍ଯ୍ୟ ଓ ରୁଚି, ୧୭) ରାମାୟଣ, ୧୮) ମାନବ ଜାତିର ଉନ୍ନତି ।* ଏଥିରୁ ପ୍ରଥମ ନଅଟି ପ୍ରବନ୍ଧ ଇଂରାଜୀରୁ ସଙ୍କଳିତ ତଥା ଅନୂଦିତ ଓ ଶେଷ ନଅଟି ପ୍ରବନ୍ଧ ସ୍ୱାଧୀନ ଭାବରେ ରଚିତ । *'ବାଲେଶ୍ୱର ସମ୍ବାଦ ବାହିକା'ର ତା ୭-୧୦-୧୮୮୦ ଅତିରିକ୍ତ ସଂଖ୍ୟାରେ* ରାଧାନାଥ ଏଇ ପୁସ୍ତକ ଉପରେ ଏକ ଦୀର୍ଘ ସମାଲୋଚନାତ୍ମକ ପ୍ରବନ୍ଧ ପ୍ରକାଶ କରନ୍ତି । ତାହାଙ୍କ ଆଲୋଚନାରେ ଏ ପୁସ୍ତକର ପ୍ରଥମ ସଂସ୍କରଣରେ ନିମ୍ନଲିଖିତ ପ୍ରବନ୍ଧ ସୂଚିତ ହୋଇଛନ୍ତି । *ଯଥା– ବୁଦ୍ଧଦେବ, ଚନ୍ଦ୍ର ଓ ତାରା, ଶାସନ ପ୍ରଣାଳୀ, ସୌନ୍ଦର୍ଯ୍ୟ ଓ ରୁଚି, ରାମାୟଣ, ମାନବ ଜାତିର ଉନ୍ନତି ।* ଆହୁରି ମଧ୍ୟ ଇତିହାସ, ଜୀବନୀ, ମନୋବିଜ୍ଞାନ, ଜଡ଼ବିଜ୍ଞାନ, ପ୍ରାକୃତିକ ଭୂଗୋଳ, ଧର୍ମବୀର, ଜ୍ଞାନବୀର, ଯୁଦ୍ଧବୀର, ବୈଜ୍ଞାନିକ ତତ୍ତ୍ୱମୂଳକ ବିଷୟର ପ୍ରବନ୍ଧ ଏଥିରେ ଥିବାର ସେ ନିଜ ଆଲୋଚନାରେ ଦେଖାଇ ଦେଇଛନ୍ତି । ଏସବୁ ବିଚାର କଲେ ପ୍ରବନ୍ଧମାଳାର ପ୍ରଥମ ଦୁଇଟି ସଂସ୍କରଣରେ ପ୍ରବନ୍ଧଗତ କୌଣସି ପରିବର୍ତ୍ତନ ହୋଇଛି ବୋଲି ମନେହୁଏ ନାହିଁ । *'ସୌନ୍ଦର୍ଯ୍ୟ ଓ ରୁଚି'* ଓ *'ମାନବ ଜାତିର ଉନ୍ନତି'* ପ୍ରବନ୍ଧ ଛାତ୍ରମାନଙ୍କ ପକ୍ଷରେ ଦୁର୍ବୋଧ ହେଉଥିବାର ଅଭିଯୋଗ ହେବାରୁ ଏ ଉଭୟ

ପ୍ରବନ୍ଧ ପରବର୍ତ୍ତୀ ସଂସ୍କରଣକୁ ଉଠିଯାଇଥିଲା । ଏମାନଙ୍କ ସ୍ଥାନରେ ଅଶୋକ (ଉତ୍କଳ ସାହିତ୍ୟ ୨।୧୦ ଅର୍ଥାତ୍ ଅକ୍ଟୋବର, ୧୮୯୮ ସାଲ), ଜଳରାଶି, ବାରାଣସୀ, ବ୍ରହ୍ମାଣ୍ଡ କିପ୍ରକାଣ୍ଡ ଓ ଧର୍ମନୀତି– ଏଇ ପାଞ୍ଚୋଟି ପ୍ରବନ୍ଧ ସଞ୍ଜୋଜିତ ହୋଇଥିଲେ ।

**(୩) ଅବଧାନ ବନ୍ଧୁ :** ୧୮୮୩ ସାଲରେ କଟକ ପ୍ରିଣ୍ଟିଂ କମ୍ପାନୀରେ ପ୍ରକାଶିତ । ଏଥିରେ ଥିବା ତା ୨୬-୧୦-୮୩ର ରାଧାନାଥଙ୍କ ପ୍ରଶଂସାପତ୍ରଟି ଅତିଶୟ ଗୁରୁତ୍ୱପୂର୍ଣ୍ଣ । ତାହା ହେଉଛି :

*"The leading principles of school management are here presented to the Abadhans in easy language and in a manner sufficiently simple and lucid to suit their requirements and capacities and the short-comings of the indigenous system of teaching are pointed out in detail with many valuable and practical suggestions for improvements. No primary school teacher ought to be without a work of the kind and it is just such a work as I should like to see prescribed as text-book on school management in the Guru Examination."*

**(୪) ଛାନ୍ଦମାଳା (୧ମ ଭାଗ) :** ବାଲେଶ୍ୱର ସମ୍ବାଦ ବାହିକା (ତା ୨୦-୧୧-୮୪)ରେ ଏହା ସମାଲୋଚିତ । ଏଥିରେ ଅଛି, *"ଛାନ୍ଦମାଳାରେ ସ୍ତବ, ପ୍ରଭାତ, ସନ୍ଧ୍ୟା, ଛଅଋତୁ ଏବଂ ଜନ୍ମଭୂମି ପ୍ରତି ଦଶଟି ବିଷୟରେ ଦଶ ପ୍ରକାର ରାଗିଣୀର ଦଶଟି ଛାନ୍ଦ ଅଛି । ପ୍ରତି ଛାନ୍ଦ ଶେଷରେ ଛାନ୍ଦର ଅନ୍ତର୍ଗତ କଠିନ ଶବ୍ଦର ଅର୍ଥ ଦିଆଯାଇଅଛି । ପଦ୍ୟଗୁଡ଼ିକ ସରଳ, ସୁବୋଧ ଏବଂ ପ୍ରସାଦଗୁଣ ବିଶିଷ୍ଟ ହୋଇଅଛି । ଫଳ କଥା ଏହି, ତାହା ପିଲାମାନଙ୍କ ନିମନ୍ତେ ଅତି ଉପଯୁକ୍ତ ହୋଇଅଛି ।"* ଉତ୍କଳ ଦୀପିକା (ତା ୨୨-୧୧-୧୮୮୪) କହନ୍ତି ଯେ ବାଳକମାନଙ୍କ ପାଠ୍ୟପୁସ୍ତକ ଛାନ୍ଦମାଳା ୧୪ଟି ପୃଷ୍ଠା ବିଶିଷ୍ଟ । *'ଏଥି ମଧ୍ୟରୁ ପ୍ରଭାତ ଓ ସନ୍ଧ୍ୟା ବର୍ଣ୍ଣନା ଏଥି ପୂର୍ବେ ପାଠମାଳାରେ ପାଠକମାନେ ଦେଖିଅଛନ୍ତି ।'* ପାଠମାଳା (୧୮୮୩) ଉପରେ ଉତ୍କଳ ଦୀପିକା (ତା ୨୭-୧୨-୧୮୮୪)ରେ ଜନୈକ ଲେଖକ କହିଛନ୍ତି–

*"This book was selected as school book before its publication by the Branch School Committee the members of which consist only of Radhanath Babu and Madhu Babu (vide Director's Report of Public Instruction for 1882-83. P. 95)"* ଛାନ୍ଦମାଳାର ୫ମ ସଂସ୍କରଣ (୧୮୮୮)ରେ ଥିଲା *ପ୍ରଭାତ, ସନ୍ଧ୍ୟା, ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ସ୍ତବ* । ଗ୍ରନ୍ଥାବଳୀର 'ଛାନ୍ଦମାଳା'ରେ ନିମ୍ନଲିଖିତ କବିତାମାନ ଅଛନ୍ତି । ଯଥା– *ପ୍ରଭାତ, ସଂଧ୍ୟା, ୬ଟି ଋତୁର*

*୬ଟି କବିତା, ପୃଥିବୀ ପ୍ରତି, ଜନ୍ମଭୂମି, ମୋ ଜନନୀ, ସ୍ତବ, ଉପଦେଶ, ନାମେ ଭକ୍ତି, ଜୀବେ ଦୟା, ସତ୍ୟବ୍ରତ, ଜନ୍ମ ମରଣ, ପରିବାର, ସଙ୍ଗ, ପରିଶ୍ରମ, ବିଦ୍ୟା, ସୁଶୀଳତା–* ସମୁଦାୟ ୨୨ଟି କବିତା । (ପ୍ରଥମ ସଂସ୍କରଣର ୧୦ଟିକୁ ବାଦ୍ ଦେଲେ ବାକୀ ୧୨ଟି କବିତା ପରବର୍ତ୍ତୀ ସଂସ୍କରଣରେ ସଂଯୋଜିତ । ଏହାର ପରିବର୍ଦ୍ଧିତ ୭ମ ସଂସ୍କରଣଟି ୧୮୯୩ ସାଲରେ ଭିକ୍ଟୋରିୟା ପ୍ରେସ୍‌ରେ ମୁଦ୍ରିତ । ଏଥିରେ ସଂଯୁକ୍ତ ତା ୧-୨-୯୩ରେ ଲିଖିତ ରାଧାନାଥଙ୍କ ମନ୍ତବ୍ୟ ଦେଖନ୍ତୁ । ସେ ଲେଖିଛନ୍ତି–

*"The present revised edition of Chhandamalla is a decided improvement on the other editions. I have no hesitation in stating that it is comparatively the best Poetical Primer in the Oriya language and that its usefulness has been completely enhanced by the introduction of many useful lessons on morality written in language suited to the capacity of Pathasala pupils."*

**(୫) ବର୍ଣ୍ଣବୋଧ :** ଦ୍ୱିତୀୟ ସଂସ୍କରଣ ୧୮୯୬ ସାଲ । 'ସମ୍ବଲପୁର ହିତୈଷିଣୀ'ର ତା ୨୬-୫-୯୬ ସଂଖ୍ୟାରେ ଏହା ଆଲୋଚିତ । ବୋଧହୁଏ ୧୮୯୫ ସାଲରେ ଏହାର ପ୍ରଥମ ସଂସ୍କରଣ ପ୍ରକାଶ ପାଏ । ବର୍ତ୍ତମାନ ସଂସ୍କରଣର ଶେଷରେ ଯେଉଁ କେତୋଟି କବିତା ଅଛି ସେଥିରୁ ଦୁଇଟି କବିତାର ପ୍ରଥମ ପ୍ରକାଶ ସମୟ ଦେଖନ୍ତୁ ।

*(କ) **ସ୍ତବ (କି ସୁନ୍ଦର ଆହା ଇତ୍ୟାଦି)** : ଶିକ୍ଷାବନ୍ଧୁ ୧।୪, ୫ ବୈଶାଖ-ଜ୍ୟେଷ୍ଠ ୧୨୯୨ (=ଏପ୍ରିଲ-ମେ ୧୮୮୫) ପତ୍ରିକାରେ ଏହାର ନାମ ଥିଲା 'ବାଳକର ସ୍ତବ'– ଗ୍ରନ୍ଥାବଳୀର 'ଶିଶୁ-ଗୀତ'ର ୨ୟ କବିତା ।*

*(ଖ) **ପ୍ରଭାତ (ପାହିଲା ଅନ୍ଧାର ରଜନୀ ଇତ୍ୟାଦି)** : ଶିକ୍ଷାବନ୍ଧୁ ୧।୭ ଶ୍ରାବଣ ୧୨୯୨ (=ଜୁଲାଇ, ୧୮୮୫) **'ଶିଶୁ-ଗୀତ'**ର ୪ର୍ଥ କବିତା ।*

**(୬) ସଙ୍ଗୀତମାଳା :** କଟକ ରାୟ ପ୍ରେସରେ ୧୮୯୬ ସାଲରେ ପ୍ରଥମେ ପ୍ରକାଶିତ । ଦ୍ୱିତୀୟ ସଂସ୍କରଣ (ପ୍ରଥମ ଶତକ)ର ସମୟ ୧୯୦୮ ସାଲ । ଗ୍ରନ୍ଥାବଳୀର **'ସଙ୍ଗୀତମାଳା'**ରେ ଅଛି ୧୦୪ଟି ସଙ୍ଗୀତ । ଏ ପୁସ୍ତକର ଆରମ୍ଭରେ ମଧୁବାବୁ ଲେଖିଛନ୍ତି ଯେ ଏହା ବ୍ରାହ୍ମ ସମାଜର ଷଷ୍ଟିତମ ମାଘୋତ୍ସବ (ଜାନୁୟାରୀ, ୧୮୯୬) ଉପଲକ୍ଷରେ ପ୍ରକାଶିତ । ଏଥିରେ ଥିବା ୧୦୦ଟି ସଙ୍ଗୀତ ମଧ୍ୟରୁ ୪୦ଟି ପୂର୍ବରୁ ପ୍ରକାଶିତ । କେତୋଟି କବିତାର ପ୍ରକାଶ ସମୟ ଦେଖନ୍ତୁ ।

*(କ) ନବବର୍ଷର ସଙ୍ଗୀତ : ନବ ସମ୍ବାଦ (ତା ୨୧-୪-୧୮୮୭); ଗ୍ରନ୍ଥାବଳୀର ନଂ ୬୨ କବିତା, ପୃ ୩୫୯ ।*

*(ଖ) ଦୀକ୍ଷାର ସଙ୍ଗୀତ : ନବ ସମ୍ବାଦ (ତା ୧୪-୭-୧୮୮୭); ଗ୍ରନ୍ଥାବଳୀର ନଂ ୬୩ କବିତା, ପୃ ୩୬୦ ।*

*(ଗ) ଏକମାତ୍ର ଈଶ୍ୱର : ନବ ସମ୍ବାଦ (ତା ୭-୪-୧୮୮୭); ଗ୍ରନ୍ଥାବଳୀର ନଂ ୧୦୦ କବିତା, ପୃ ୩୮୧ ଇତ୍ୟାଦି ।*

ଉତ୍କଳ ସାହିତ୍ୟ ୧।୧ (=ଜାନୁୟାରୀ, ୧୮୯୭)ର ଗୋଟିଏ **'ବିଜ୍ଞାପନ'**ରେ **'ସଙ୍ଗୀତ ମାଳା'** ଓ **'ବର୍ଣ୍ଣବୋଧ'**ର ପରିବର୍ଦ୍ଧିତ ସଂସ୍କରଣ ସ୍ଥାନ ପାଇଛନ୍ତି ।

**(୭) ଛାନ୍ଦମାଳା (୨ୟ ଭାଗ)** : ୩ୟ ସଂସ୍କରଣ (୧୯୦୦) : ଅରୁଣୋଦୟ ପ୍ରେସରେ ମୁଦ୍ରିତ । ତା ୧୨-୧୨-୯୮ରେ ଲିଖିତ ମଧୁସୂଦନଙ୍କ **'ବିଜ୍ଞାପନ'**ରେ ଅଛି, *"ଉଚ୍ଚ ପ୍ରାଥମିକ ଓ ମଧ୍ୟଶ୍ରେଣୀ ବିଦ୍ୟାଳୟମାନଙ୍କରେ ବ୍ୟବହାର ନିମନ୍ତେ ଏହି କ୍ଷୁଦ୍ର ଗ୍ରନ୍ଥ ପ୍ରକାଶିତ ହେଲା । ଆଶାକରେ ଏହା ସାଧାରଣ ପାଠକମାନଙ୍କର ମଧ୍ୟ ଅନାଦରଣୀୟ ବୋଲି ବିବେଚିତ ହେବ ନାହିଁ ।*

ଗ୍ରନ୍ଥ ମଧ୍ୟରେ ୮ଟି କବିତା ସନ୍ନିବେଶିତ ହୋଇଅଛି । ସେଥିମଧ୍ୟରୁ ତିନିଗୋଟି ପୂର୍ବେ କୌଣସି କୌଣସି ପତ୍ରିକାରେ ପ୍ରକାଶିତ ହୋଇଥିଲା ।" ଦେଖିବାର କଥା, 'ଗ୍ରନ୍ଥାବଳୀ'ରେ ଏ 'ବିଜ୍ଞାପନ'ଟି ନାହିଁ । ୩ୟ ସଂସ୍କରଣ ତଥା **'ଗ୍ରନ୍ଥାବଳୀ'**ର ୮ଟି କବିତା ଅଛି । ଯଥା– *ସ୍ତବ, ଶ୍ରୀରାମ ବନବାସ, ନଦୀପ୍ରତି, ଶୋଭା, ଧ୍ୱନି, ବିଧିବିଧାନ, ପଦ୍ମ, କର୍ଣ୍ଣବଧ ।* ନିମ୍ନ ଦୁଇଟି କବିତା ପତ୍ରିକାରେ ପ୍ରକାଶିତ ହୋଇଥିବାର ଆମ ଦୃଷ୍ଟିକି ଆସିଛି ।

*(କ) ଶ୍ରୀରାମ ବନବାସ : ଉତ୍କଳପ୍ରଭା ୩।୩, ୪ (=ଜୁନ୍-ଜୁଲାଇ, ୧୮୯୩) ।*

*(ଖ) ନଦୀପ୍ରତି : ଉତ୍କଳ ସାହିତ୍ୟ ୨।୧୧ (=ନଭେମ୍ବର, ୧୮୯୮) ।*

ଉତ୍କଳ ସାହିତ୍ୟ ୨।୧୨ (=ଡିସେମ୍ବର, ୧୮୯୮)ରେ 'ସାହିତ୍ୟ' ସମ୍ପାଦକ ଏ ପୁସ୍ତକକୁ ଏଇପରି ସମାଲୋଚନା କରିଛନ୍ତି, *"ସମାଲୋଚ୍ୟ ପୁସ୍ତକ ଖଣ୍ଡିକ କବି ପ୍ରଧାନତଃ ବିଦ୍ୟାଳୟର ବାଳକ ବାଳିକାମାନଙ୍କ ନିମନ୍ତେ ଲେଖିଅଛନ୍ତି । ମାତ୍ର ଏହି ଅତ୍ୟୁତ୍କୃଷ୍ଟ କବିତାଗୁଡ଼ିକ ଯେ ସାଧାରଣ ପାଠକମଣ୍ଡଳୀର ଅତ୍ୟନ୍ତ ଉପଯୋଗୀ ତାହା ବୋଲିବା ବାହୁଲ୍ୟ ମାତ୍ର । ସାଧାରଣ ପାଠକ ଯେ ଏହି କବିତାମାନଙ୍କରୁ ପ୍ରଭୂତ*

*ଆନନ୍ଦ ଓ ଶିକ୍ଷା ଲାଭ କରିପାରିବେ, ତଦ୍ ବିଷୟରେ ସନ୍ଦେହ ମାତ୍ର ନାହିଁ ।''* ପୁନର୍ବାର ସେ ଲେଖିଛନ୍ତି, *'ସମାଲୋଚ୍ୟ ପୁସ୍ତକ ଖଣ୍ଡି ଯେ ଅବଶ୍ୟ ଉଚ୍ଚ ପ୍ରାଥମିକ ପରୀକ୍ଷାର ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହେବ, ସେ ବିଷୟରେ ଆମ୍ଭମାନଙ୍କର କୌଣସି ସନ୍ଦେହ ନାହିଁ ଦୁଃଖର ବିଷୟ ଅଧିକାଂଶ ଉଚ୍ଚ ପ୍ରାଥମିକ ଶିକ୍ଷକ କବିତାର 'କ' ଅକ୍ଷର ଜାଣନ୍ତି ନାହିଁ । ସେମାନଙ୍କର କବିତା-ଜ୍ଞାନ 'ଶୁଣ ପରୀକ୍ଷ ନରନାଥ'ରେ ପର୍ଯ୍ୟବସିତ ଏହି ଉତ୍କୃଷ୍ଟ କବିତାଗୁଡ଼ିକର ନୈତିକ ଭାବମାନ କୋମଳମତି ବାଳକ ବାଳିକାମାନଙ୍କ ହୃଦୟରେ ଦୃଢ଼ରୂପେ ମୁଦ୍ରିତ କରିପାରିବା ପକ୍ଷେ ସେମାନେ କେତେଦୂର ପାରଗ ସେ ବିଷୟରେ ଆମ୍ଭମାନଙ୍କର ଗଭୀର ସନ୍ଦେହ ଅଛି । ଉଚ୍ଚ ପ୍ରାଥମିକ ଶିକ୍ଷକମାନଙ୍କ ଉନ୍ନତି ପ୍ରତି ଆମ୍ଭେମାନେ କର୍ତ୍ତୃପକ୍ଷମାନଙ୍କର ତୀବ୍ରଦୃଷ୍ଟି ଆକର୍ଷଣ କରୁଅଛୁଁ ।*

(୮) ବସନ୍ତ ଗାଥା : ଭୂମିକାରେ ସମୟ ୨୩ ଫାଲଗୁନ ଶକାବ୍ଦ ୧୮୨୩ (=ଫେବୃୟାରୀ, ୧୯୦୨ ସାଲ । ଉତ୍କଳ ସାହିତ୍ୟ ୫।୧୨ (=ମାର୍ଚ୍ଚ, ୧୯୦୨)ରେ ଏହା ସମାଲୋଚିତ । ଏଥିରେ ଅଛି ୪୦ଟି ସନେଟ ବା ଚତୁର୍ଦ୍ଦଶପଦୀ କବିତା । ଏଥିରୁ କେତୋଟିର ପ୍ରଥମ ପ୍ରକାଶ – ସମୟ ଦେଖନ୍ତୁ ।

*(କ) ନବଜାତ ଶିଶୁ ଦର୍ଶନରେ : ବ୍ରାହ୍ମ ୩।୩ (=ମାର୍ଚ୍ଚ, ୧୮୯୫) ।*

*(ଖ) ପରମ ପ୍ରମାଣ (୨ଟି ସନେଟ) : ସାହିତ୍ୟ ୧।୧୧ (=ନଭେମ୍ବର, ୧୮୯୭) ।*

*(ଗ) କାଳିଦାସ : ସାହିତ୍ୟ ୧।୧୨ (=ଡିସେମ୍ବର, ୧୮୯୭) ।*

*(ଘ) ନରନାରୀ (ଦୁଇଟି ସନେଟ) : ସାହିତ୍ୟ ୧।୧୨ (=ଡିସେମ୍ବର, ୧୮୯୭) ।*

*(ଙ) ନବବର୍ଷ (ଦୁଇଟି ସନେଟ) : ସାହିତ୍ୟ ୨।୧ (=ଜାନୁୟାରୀ, ୧୮୯୮) ।*

*(ଚ) ଶ୍ରୀପଞ୍ଚମୀ (ଦୁଇଟି ସନେଟ) : ସାହିତ୍ୟ ୨।୧ (=ଜାନୁୟାରୀ, ୧୮୯୮) ।*

*(ଛ) ଜରା ଆକ୍ରମଣ (ଦୁଇଟି ସନେଟ) : ସାହିତ୍ୟ ୫।୮ (=ନଭେମ୍ବର, ୧୯୦୧) ।*

*(ଜ) ବିଚ୍ଛେଦେ : ସାହିତ୍ୟ ୫।୧୦ (ଜାନୁୟାରୀ, ୧୯୦୨) ।*

ଶ୍ରୀମତୀ ନଗେନ୍ଦ୍ର ବାଳା ସରସ୍ୱତୀ ବଙ୍ଗ ଭାଷାରେ *'ବସନ୍ତ ଗାଥା'* ଅନୁବାଦ କରି ପ୍ରକାଶ କରିଥିବାର ସମ୍ବାଦ *ସାହିତ୍ୟ ୯।୩ (=ଜୁନ୍, ୧୯୦୫)*ରେ ଆମେ ଦେଖିବାକୁ ପାଉଁ ।

**(୯) ଉତ୍କଳ ଗାଥା :** *ଉତ୍ସର୍ଗର ସମୟ ତା ୨୦-୧୨-୧୯୦୩ ।* ଉତ୍କଳ ସାହିତ୍ୟ ୭।୧୦ (ଜାନୁୟାରୀ, ୧୯୦୪)ରେ ସମାଲୋଚିତ । ଦ୍ୱିତୀୟ ସଂସ୍କରଣ ୧୯୦୮ ସାଲ ସମ୍ମିଳନୀ ପ୍ରେସରେ ମୁଦ୍ରିତ । ଗ୍ରନ୍ଥାବଳୀରେ ଥିବା ***'ଉତ୍କଳ ଗାଥା'***ର ପ୍ରଥମ ସାତୋଟି ସଙ୍ଗୀତ ଓ କବିତା ମଧ୍ୟରୁ ତିନୋଟିର ପ୍ରଥମ ପ୍ରକାଶ ସମୟ ଦେଖନ୍ତୁ ।

*(କ) ନବଯୁଗ : ନବସମ୍ବାଦ (ତା ୨୧-୧-୧୮୮୭ ସାଲ) । ପତ୍ରିକାରେ ଏହାର ନାମ ଥିଲା 'ନବସମ୍ବାଦ') ।*

*(ଖ) ଉତ୍କଳ ବନ୍ଦନା : ସାହିତ୍ୟ ୬।୧୨ (=ମାର୍ଚ୍ଚ ୧୯୦୩) ।*

*(ଗ) ଉତ୍କଳ ଜନନୀ ପ୍ରତି : ସାହିତ୍ୟ ୫।୧୨ (=ମେ, ୧୯୦୧) ।*

ଗ୍ରନ୍ଥାବଳୀର ଉତ୍କଳ ଗାଥାରେ ଦୁଇ ସଂସ୍କରଣର ପାଠ ସ୍ଥାନ ପାଇଛି । **'ଜାତୀୟ ସଙ୍ଗୀତ'** ଶିରୋନାମାରେ ଯେଉଁ ୭ଟି ସଙ୍ଗୀତ ଅଛି ସେ ସବୁ ଦ୍ୱିତୀୟ ସଂସ୍କରଣ (୧୯୦୮)ରେ ସଂଯୋଜିତ । ଅନ୍ୟଗୁଡ଼ିକ ବୋଧହୁଏ ପ୍ରଥମ ସଂସ୍କରଣର ।

**'ଜାତୀୟ ସଙ୍ଗୀତ'**ରୁ କେତୋଟି ସଙ୍ଗୀତର ପ୍ରଥମ ପ୍ରକାଶ-କାଳ ଦେଖନ୍ତୁ ।

*(କ) ନ. ୪ (ଉଠ ହେ ଉତ୍କଳବାସୀ) : ସାହିତ୍ୟ ୧୦।୧୨ (=ମାର୍ଚ୍ଚ, ୧୯୦୭) ।*

*(ଖ) ନ. ୬ (ଏ କେ ମହାଦେବୀ) ; ସାହିତ୍ୟ ୯।୧୨ (=ମାର୍ଚ୍ଚ, ୧୯୦୬) ।*

*(ଗ) ନ. ୭ (ବାଣୀବରଦେ) : ସାହିତ୍ୟ ୮।୧୦ (=ଜାନୁୟାରୀ, ୧୯୦୫) ।*

**(୧୦) କୁସୁମାଞ୍ଜଳି :** ୧୯୦୩ ସାଲରେ ଅରୁଣୋଦୟ ପ୍ରେସରେ ଶ୍ରୀ ନିତ୍ୟାନନ୍ଦ ସାହୁଙ୍କ ଦ୍ୱାରା ପ୍ରକାଶିତ ରାଧାନାଥଙ୍କ ଉତ୍ସର୍ଗର ସମୟ ୨୫।୧୨।୧୯୦୩ । ଏହାର 'ବିଜ୍ଞାପନ'ରେ ଅଛି, ***"ଏହି କ୍ଷୁଦ୍ର ଗ୍ରନ୍ଥରେ ସନ୍ନିବେଶିତ କବିତାଗୁଡ଼ିକ ମଧ୍ୟରୁ ଗୋଟିଏ କବିତା ଛଡ଼ା ଅବଶିଷ୍ଟ ଭିନ୍ନ ଭିନ୍ନ ସାହିତ୍ୟ ପତ୍ରିକାରେ ପ୍ରକାଶିତ ହୋଇଥିଲା ବର୍ତ୍ତମାନ ସବୁଗୁଡ଼ିକ ଏକତ୍ରିତ ହୋଇ 'କୁସୁମାଞ୍ଜଳି' ନାମରେ ପ୍ରକାଶିତ ହେଲା ।"*** ଏହି 'ବିଜ୍ଞାପନ'ଟି ଗ୍ରନ୍ଥାବଳୀରେ ସ୍ଥାନ ପାଇନାହିଁ । ଗ୍ରନ୍ଥାବଳୀ ତଥା ପ୍ରଥମ ସଂସ୍କରଣରେ ଥିବା କବିତାଗୁଡ଼ିକର ପ୍ରକାଶ ସମୟ ଦେଖନ୍ତୁ ।

(କ) ନବବସନ୍ତ ଭାବନା : ଉତ୍କଳ ସାହିତ୍ୟ ୩।୧, ମାଘ ୧୩୦୬ (ଜାନୁୟାରୀ, ୧୮୯୯)।

(ଖ) ଏ ସୃଷ୍ଟି ଅମୃତମୟ ହେ : ସାହିତ୍ୟ ୫।୪ (=ଜୁଲାଇ, ୧୯୦୧)।

(ଗ) ନବଯୁଗର ଅଭିଷେକ : ସାହିତ୍ୟ ୫।୧ (=ଏପ୍ରିଲ, ୧୯୦୧)।

(ଘ) ଧରଣୀ ପ୍ରତି ସମୁଦ୍ରର ଉକ୍ତି : ସାହିତ୍ୟ ୪।୧ (=ଅଗଷ୍ଟ, ୧୯୦୦)।

(ଙ) ଆଶା : 'ଆଶା' ମାସିକ ୧।୧ (=ଅକ୍ଟୋବର, ୧୮୮୮)

ବାଲେଶ୍ୱର ସଂବାଦବାହିକା (ତା ୧-୧୧-୧୮୮୮)ରେ 'ଆଶା' ପତ୍ରିକା ସମାଲୋଚିତ।

(ଚ) ଆତ୍ମସମର୍ପଣ : ସାହିତ୍ୟ ୧।୭ (ଜୁଲାଇ, ୧୮୯୭)। ପତ୍ରିକାରେ ଏହାର ନାମକରଣ କରାଯାଇଥିଲା 'ସଙ୍ଗୀତ'। ଏହାର ପାଦଟୀକାରେ ଅଛି, 'ଗୋଟିଏ ଇଂରାଜୀ କବିତାର ଅନୁକରଣରେ।'

(ଛ) ଭାରତଭାବନା : ସେବକ, ପ୍ରଥମ ବର୍ଷ ପ୍ରଥମ ଓ ଦ୍ୱିତୀୟ ସଂଖ୍ୟା (ସେପ୍ଟେମ୍ବର ଓ ଅକ୍ଟୋବର, ୧୮୮୩)– ଦୁଇଟି ସଂଖ୍ୟାରେ ପ୍ରକାଶିତ। ଶେଷରେ ଲେଖକ 'ଶ୍ରୀ-ମ' ବୋଲି ଲେଖାଯାଇଅଛି। ଦ୍ୱିତୀୟ ସଂଖ୍ୟାରେ କବିତାର ଶେଷରେ 'କ୍ରମଶଃ' ଲେଖାଅଛି ବୋଧହୁଏ ଏ କବିତାଟି ଅସମ୍ପୂର୍ଣ୍ଣ ଅବସ୍ଥାରେ ଯାହା ପତ୍ରିକାରେ ପ୍ରକାଶିତ ହୋଇଥିଲା ତାହାହିଁ ପ୍ରଥମ ସଂସ୍କରଣ ଓ ଗ୍ରନ୍ଥାବଳୀରେ ସଂଗୃହୀତ ହୋଇଅଛି।

(ଜ) ଉଦ୍‌ବୋଧନ : ଉତ୍କଳପ୍ରଭା ୧।୮ ମାର୍ଗଶୀର ୧୨୯୯ (=ନଭେମ୍ବର, ୧୮୯୧)।

(ଝ) ଋଷିପ୍ରାଣେ ଦେବାବତରଣ : ଉତ୍କଳପ୍ରଭା ୧।୮ (=ନଭେମ୍ବର, ୧୮୯୧)। 'କୁସୁମାଞ୍ଜଳି'ର ପ୍ରଥମ ସଂସ୍କରଣରେ ଉପର ଦୁଇଟି କବିତା– ଉଦ୍‌ବୋଧନ ଓ ଋଷିପ୍ରାଣେ ଦେବାବତରଣ ସ୍ୱତନ୍ତ୍ର ଦୁଇଟି କବିତା ରୂପରେ ଉପସ୍ଥାପିତ ହୋଇଛନ୍ତି। ଗ୍ରନ୍ଥାବଳୀ ତା'ର ଅନ୍ଧାନୁସରଣ କରିଛି ମାତ୍ର। ପତ୍ରିକାରେ, କିନ୍ତୁ, ଏ ଉଭୟଙ୍କୁ ଏକତ୍ର ସ୍ଥାନ ଦିଆଯାଇଛି। ଯଥାର୍ଥତଃ, ଏମାନେ ଦୁଇଟି ପୃଥକ୍ କବିତା ନୁହଁନ୍ତି, ଗୋଟିଏ ମାତ୍ର। ପ୍ରଥମଟି ଦ୍ୱିତୀୟଟିର ପ୍ରାରମ୍ଭିକ ଅଂଶ। ପ୍ରଥମଟିର ଶେଷାଂଶରେ ଅଛି, "ଆର୍ଯ୍ୟ-ଋଷି-ମୁଗ୍ଧ ପ୍ରାଣେ ଦେବାବତରଣ।" ଦ୍ୱିତୀୟଟି ଏଇ ଦେବାବତରଣର କାବ୍ୟିକ ପରିପ୍ରକାଶ ମାତ୍ର।

(୭) ମହାଦେବୀ ଭିକ୍ଟୋରିୟା : ସାହିତ୍ୟ ୪।୧୦ (=ଅକ୍ଟୋବର, ୧୯୦୦) ।

(୮) ଶୋକଲହରୀ : ବୋଧହୁଏ ଏଇ ଗୋଟିଏ କବିତା ପ୍ରଥମ ସଂସ୍କରଣ (୧୯୦୩) ପୂର୍ବରୁ ପତ୍ରିକାରେ ପ୍ରକାଶ ପାଇନଥିଲା । "ସୁଢ଼ଳଦେବ ଆଉ ନାହାନ୍ତି" ଏଇ ଶୋକ ସଂବାଦ ଉତ୍କଳ ସାହିତ୍ୟ ୭।୯ (=ଡିସେମ୍ବର ୧୯୦୩) ପରିବେଷଣ କରନ୍ତି । ସୁଢ଼ଳଦେବଙ୍କ ଦେହାବସାନ ଘଟଣାର ସମୟ ହେଉଛି ତା ୧୯-୧୧-୧୯୦୩ ସାଲ ।

(୧୧) ହେମମାଳା (କ୍ଷୁଦ୍ରଗଳ୍ପ) : ସାହିତ୍ୟ ୧।୬ ଆଷାଢ଼ ୧୩୦୪ (=ଜୁନ୍, ୧୮୯୭) ।

ପତ୍ରିକାରେ ଏହା ଏକ 'କ୍ଷୁଦ୍ର ଉପନ୍ୟାସ' ବୋଲି ଥିଲା ।

(୧୨) ହିମାଚଳେ ଉଦୟ ଉତ୍ସବ : ସାହିତ୍ୟ ୧୫।୧, ୨ (=ଏପ୍ରିଲ୍, ମେ ୧୯୧୧ ସାଲ ।)

(୧୩) ଶୋକ-ଶ୍ଳୋକ : ସାହିତ୍ୟ ୧୫।୧୧, ୧୨ (=ଫେବୃୟାରୀ, ମାର୍ଚ୍ଚ ୧୯୧୨ ସାଲ ।

(୧୪) ମହର୍ଷି ଦେବେନ୍ଦ୍ରନାଥ ଠାକୁର : ସାହିତ୍ୟ ୧୧।୧ (ଏପ୍ରିଲ, ୧୯୦୭) ।

(୧୫) ବିବିଧ କବିତା–

(କ) ନବବର୍ଷ : ମୁକୁର ୭।୧ ବୈଶାଖ ୧୩୧୯ (=ଏପ୍ରିଲ୍, ୧୯୧୨ ସାଲ) ।

(ଖ) ସଂସାରର ଧର୍ମ : ସାହିତ୍ୟ ୧୬।୫,୬(=ଅଗଷ୍ଟ, ସେପ୍ଟେମ୍ବର, ୧୯୧୨)

(ଗ) ପୁରୀଜିଲାର ଶିକ୍ଷା ସମ୍ମିଳନୀ ଉପଲକ୍ଷେ : ସାହିତ୍ୟ ୧୬।୧,୨(= ଏପ୍ରିଲ, ମେ ୧୯୧୨) ପତ୍ରିକାରେ ଏହାର ନାମ ହେଉଛି 'ସଙ୍ଗୀତ' । ଏହି ସଂଖ୍ୟାରେ ମଧ୍ୟ ଅଛି 'ଶିକ୍ଷା-ସମସ୍ୟା' । ତା ୧୬-୬-୧୯୧୨ରେ ସତ୍ୟବାଦୀଠାରେ ଅନୁଷ୍ଠିତ ପୁରୀଜିଲା ଶିକ୍ଷା-ସମ୍ମିଳନୀରେ ପଠିତ ସଭାପତି ମଧୁସୂଦନଙ୍କ ବକ୍ତୃତା ।

*(୧୬) ବ୍ୟଙ୍ଗ କବିତା–*

*(କ) ସାବାସ ସାହିତ୍ୟ ଚର୍ଚ୍ଚା ସାବାସ୍ ସାବାସ୍; ବାଲେଶ୍ୱର ସମ୍ବାଦବାହିକା (୨୪ ଅଗଷ୍ଟ, ୧୮୯୩) ପୃ: ୧୩୬ରେ 'ମୁରାରି' ଛଦ୍ମ ନାମରେ ପ୍ରକାଶିତ । ଲେଖାର ସମୟ ତା ୨୨-୮-୯୩ ।*

*(ଖ) ଭଣ୍ଡରସାୟନ କାବ୍ୟ (ପ୍ରଥମ ସର୍ଗ) : ଓଡ଼ିଆ ଓ ନବସମ୍ବାଦ (୧୮-୧୦-୯୩) ପୃ:୧୮୯ । ଏଥିରେ ଲେଖକଙ୍କର ନାମ ନଥିଲା । ଏଇ ପ୍ରଥମ ସର୍ଗଟି ମାତ୍ର ପତ୍ରିକାରେ ପ୍ରକାଶିତ ଓ ଗ୍ରନ୍ଥାବଳୀରେ ସଙ୍ଗୃହୀତ । ମନେହୁଏ ଏହା ଏକ ଅସମ୍ପୂର୍ଣ୍ଣ କାବ୍ୟ ।*

(୧୭) ଉତ୍ତର ରାମଚରିତ (ଅନୁବାଦ) : ଚତୁର୍ଥ ଅଙ୍କର ପ୍ରଥମ ଦୃଶ୍ୟ '*ଋଷିକୁମାର ଦ୍ୱୟଙ୍କର ଆଳାପ*' ନାମରେ ପ୍ରଥମେ ଶିକ୍ଷାବନ୍ଧୁ ୧।୮, ୯ ଭାଦ୍ର ଆଶ୍ୱିନ ୧୨୯୨ (=ଅଗଷ୍ଟ, ସେପ୍ଟେମ୍ବର ୧୮୮୫)ରେ ପ୍ରକାଶ ପାଇଥିଲା । ଏଥିରେ ଏଇ ନିର୍ଦ୍ଦେଶଟି ଥିଲା, "*ଉତ୍ତର ରାମଚରିତ ନାଟକରୁ ଅନୁବାଦିତ ।*" ଚତୁର୍ଥ ଅଙ୍କର ସମୁଦାୟ ଦ୍ୱିତୀୟ ଦୃଶ୍ୟଟି ମୁକୁର ୭।୪, ୫ (= ଜୁଲାଇ, ଅଗଷ୍ଟ ୧୯୧୨) ସଂଖ୍ୟାରେ ପ୍ରକାଶିତ । ଏଥିରେ '*ପୂର୍ବପ୍ରକାଶିତ ଉତ୍ତାରୁ*' ବୋଲି ଲେଖାଅଛି । ଏହାର '*ପାଦ-ଟୀକା*'ରେ ଅଛି, "*ଏହାର ପ୍ରଥମାଂଶ ମୁକୁର ୧ମ ଓ ୨ୟ ଭାଗରେ ପ୍ରକାଶିତ ହୋଇଥିଲା ।*" ମୁକୁରର ପ୍ରଥମ ଭାଗ ପ୍ରଥମ ସଂଖ୍ୟାର ପ୍ରକାଶ ସମୟ ହେଉଛି ୧୯୦୬ ସାଲ ଏପ୍ରିଲ । ମୁକୁରର ୧ମ ଭାଗ ୮ମ ସଂଖ୍ୟା ଅର୍ଥାତ୍ ୧୯୦୬ ନଭେମ୍ବରରୁ ଏ ଅନୁବାଦ ଆରମ୍ଭ । ପଞ୍ଚମ ଅଙ୍କର **"*ସଦର୍ପ ପଦ-ବିକ୍ଷେପରେ ଲବର ସତ୍ୱର ପ୍ରବେଶ*"** ପର୍ଯ୍ୟନ୍ତ ମୁକୁର ୭।୯ (= ଡିସେମ୍ବର, ୧୯୧୨)ରେ ପ୍ରକାଶିତ । ଏହାପରେ ମଧୁସୂଦନ ଆଉ ଏ ନାଟକ ଅନୁବାଦ କରିନାହାନ୍ତି । ଏହିଠାରୁ ଶେଷ ପର୍ଯ୍ୟନ୍ତ ପଣ୍ଡିତ ମୃତ୍ୟୁଞ୍ଜୟ ଅନୁବାଦ କରି ପ୍ରକାଶ କରିଛନ୍ତି ଓ ତାହାହିଁ ଗ୍ରନ୍ଥାବଳୀରେ ସ୍ଥାନ ପାଇଛି । ମୁକୁର ୭।୯ (ଡିସେମ୍ବର, ୧୯୧୨)ର ପାଦଟୀକାରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଲେଖିଛନ୍ତି, **"*ସ୍ୱର୍ଗତ ଗୁରୁଦେବ ଭକ୍ତକବି ମଧୁସୂଦନ ରାଓ ମହୋଦୟ 'ସଦର୍ପେ' (୪୬୩ ପୃ : ) – ଏହି ପର୍ଯ୍ୟନ୍ତ ପରଲୋକଗମନ ପୂର୍ବେ ଅନୁବାଦ କରିଥିଲେ । ଏଥି ପୂର୍ବର ଅନୁବାଦ ପ୍ରାୟ ଛଅ ବର୍ଷ ପୂର୍ବେ ପ୍ରକାଶିତ ହୋଇଥିଲା । ସେ ଯେପରି ପବିତ୍ର ଭାବରେ ଉତ୍ତର ରାମଚରିତର ସର୍ବାଙ୍ଗ ସୁନ୍ଦର ଅନୁବାଦ କରିଅଛନ୍ତି ତାହା କେବଳ ତାଙ୍କରି ପକ୍ଷେ ସମ୍ଭବ । କିନ୍ତୁ ଅନ୍ୟ କଥା ଭିନ୍ନ, ନାଟକ ବା ଉପନ୍ୟାସ ଅସମ୍ପୂର୍ଣ୍ଣ ରହିଗଲେ ପାଠକ ସମାଜର ମନରେ ବଡ଼ କଷ୍ଟ ହୁଏ । ପୁଷ୍ପ ସ୍ରଷ୍ଟାଙ୍କୁ ପୁଷ୍ପ ଦ୍ୱାରା ପୂଜା କଲାପରି ଏ ଅନୁବାଦ ସ୍ରଷ୍ଟାଙ୍କୁ ଅନୁବାଦ ଦ୍ୱାରା ପୂଜା କରିବା ସଙ୍ଗତ ମଣି ମୁଁ ଅବଶିଷ୍ଟାଂଶର ଅନୁବାଦ କଲି । ବିଜ୍ଞ ପାଠକମାନେ*

*ମୋହର ଏ ଧୃଷ୍ଟତା କ୍ଷମା କରିବେ । ଏହାଦ୍ୱାରା ସେହି ଅସମ୍ପୂର୍ଣ୍ଣତା ଦୋଷ କଟି ପାରିଲେ ମୋହର ଶ୍ରମ ସାର୍ଥକ ହେବ ।''*

ଗ୍ରନ୍ଥାବଳୀରେ ସଂଗୃହୀତ ଯେଉଁ ଲେଖାଗୁଡ଼ିକର ପ୍ରଥମ ପ୍ରକାଶ ସମୟ ଉପରେ ଆମର ସ୍ପଷ୍ଟ ଧାରଣା ହୋଇଛି ତାହାହିଁ ଆମେ ଏପର୍ଯ୍ୟନ୍ତ ଦେଖାଇ ଆସିଲୁ । ***ବାଳରାମାୟଣ*** (ଏହା ଅସଂପୂର୍ଣ୍ଣ ରୂପରେ ୧୯୦୧ ସାଲରେ ଲିଖିତ ବୋଲି ପଣ୍ଡିତ ମୃତ୍ୟୁଞ୍ଜୟ କହନ୍ତି ।) ***ବିବିଧ କବିତା*** (୧୯୦୮ରୁ ୧୯୧୨ ମଧ୍ୟରେ ଲିଖିତ ବୋଲି ସେ ମଧ୍ୟ କହନ୍ତି), ***ବାମଣ୍ଡା ରାଜପ୍ରଶସ୍ତି*** (୧୯୧୨) ପ୍ରଭୃତି ପରି ଯେଉଁ ଲେଖାଗୁଡ଼ିକର ପ୍ରକାଶକାଳ ଆମେ ଦେଖିବାକୁ ପାଇନାହୁଁ ସେ ସମସ୍ତଙ୍କୁ ଆମର ପୂର୍ବୋକ୍ତ ତାଲିକାରେ ଅନ୍ତର୍ଭୁକ୍ତ କରିନାହୁଁ ।

ଆମେ ପୂର୍ବରୁ କହିରଖିଛୁ ଯେ ଗ୍ରନ୍ଥାବଳୀରେ ମଧୁସୂଦନଙ୍କ ସମସ୍ତ ଲେଖା ସଙ୍ଗୃହୀତ ହୋଇ ନାହାନ୍ତି । ମଧୁସୂଦନ-ସାହିତ୍ୟର ଅନ୍ତର୍ନିହିତ ଚିନ୍ତାରାଶିର ଅନୁଶୀଳନ ପାଇଁ ତାଙ୍କ ଲିଖିତ ବହୁ ପ୍ରବନ୍ଧ ଏକାନ୍ତ ଅପରିହାର୍ଯ୍ୟ; ଏ ପ୍ରବନ୍ଧଗୁଡ଼ିକ ଗ୍ରନ୍ଥାବଳୀରେ ସ୍ଥାନ ପାଇନାହାନ୍ତି । ଗ୍ରନ୍ଥାବଳୀରେ ସ୍ଥାନ ନ ପାଇଥିବା କେତେକ ଲେଖାର ପରିଚୟ ଦେଖନ୍ତୁ ।

***୧ । ଭାରତୀୟ ସମାଜ (ପ୍ରବନ୍ଧ) :*** ସେବକ ୧।୧୦ ( = ଜୁନ, ୧୮୮୪) ଏଥିରେ ଲେଖକ 'ଶ୍ରୀମ—' ବୋଲି ଲେଖା ଯାଇଛି ।

***୨ । ଅନନ୍ତ—ଆମ୍ଭମାନଙ୍କର ଆଦର୍ଶ (ପ୍ରବନ୍ଧ) :*** ପ୍ରଦୀପ ୧।୧ (=ଜାନୁୟାରୀ, ୧୮୮୫) ।

୩ । 'ଶିକ୍ଷାବନ୍ଧୁ' ପତ୍ରିକାରେ ସାହିତ୍ୟ-ଅଧ୍ୟୟନକୁ କେନ୍ଦ୍ରକରି କେତେଗୁଡ଼ିଏ ଉଚ୍ଚକୋଟୀର ପ୍ରବନ୍ଧ ପ୍ରକାଶିତ ହୋଇଛି । ଏଥିରେ ଲେଖକଙ୍କର ନାମୋଲ୍ଲେଖ ନଥିଲେ ସୁଦ୍ଧା ସେଗୁଡ଼ିକ ଯେ ମଧୁସୂଦନଙ୍କର ଲେଖନୀ-ନିଃସୃତ ତାହା ବିଶ୍ୱାସ କରିବାକୁ ଇଚ୍ଛା ହୁଏ । କାରଣ, ଏ ପ୍ରବନ୍ଧଗୁଡ଼ିକର ଭାଷା, ଉଚ୍ଚଚିନ୍ତା ବିଷୟର ପରିଶୀଳନର ଦୃଷ୍ଟିଭଙ୍ଗୀ, ବିଶେଷତଃ ସାହିତ୍ୟିକ ଅଭିରୁଚି ଏପରି ସ୍ୱତନ୍ତ୍ର ଓ ଅନନ୍ୟସାଧାରଣ ଯେ ମଧୁସୂଦନଙ୍କ ଲେଖନୀରେ କେବଳ ସେସବୁ ସମ୍ଭବପର ହୋଇପାରେନ୍ତି । ତେଣୁ ଏମାନଙ୍କୁ ଆମେ ମଧୁସୂଦନ କୃତିରେ ଗଣନା କରିବାକୁ ବାଧ ହେଉଛୁ । ସେଗୁଡ଼ିକ ହେଉଛନ୍ତି :—

*(କ) ପାଠ୍ୟପୁସ୍ତକ ଅଧ୍ୟାପନା :* ଶିକ୍ଷାବନ୍ଧୁ ୧।୨ (= ଫେବୃୟାରୀ, ୧୮୮୫) ।

*(ଖ) ବିଦ୍ୟାଳୟରେ ପଠନ :* ଶିକ୍ଷାବନ୍ଧୁ ୧।୩ (= ମାର୍ଚ୍ଚ, ୧୮୮୫) ।

*(ଗ) ହସ୍ତାକ୍ଷର :* ଶିକ୍ଷାବନ୍ଧୁ ୧।୪, ୫ (= ଏପ୍ରିଲ, ମେ ୧୮୮୫) ।

*(ଘ) ବ୍ୟାକରଣ ଶିକ୍ଷା :* ଶିକ୍ଷାବନ୍ଧୁ ୧।୬ (= ଜୁନ, ୧୮୮୫) ।

*(ଙ) ବର୍ତ୍ତମାନ ଶିକ୍ଷାପ୍ରଣାଳୀ :* ଶିକ୍ଷାବନ୍ଧୁ ୧।୮, ୯ (= ଅଗଷ୍ଟ, ସେପ୍‌ଟେମ୍ବର, ୧୮୮୫) ।

*(ଚ) କବିତା ଅଧ୍ୟୟନ :* ଶିକ୍ଷାବନ୍ଧୁ ୨।୧ (= ଜାନୁୟାରୀ, ୧୮୮୬) ।

*୪ । ଅଳଙ୍କାର ବୋଧୋଦୟର ସମାଲୋଚନା :* ଶିକ୍ଷାବନ୍ଧୁ ୨।୬, ୭ (= ଜୁନ, ଜୁଲାଇ ୧୮୮୬) ।

*୫ । ଧର୍ମରବଳ (ପ୍ରବନ୍ଧ) :* ନବସମ୍ବାଦ (୧୩।୨।୧୮୮୭) । ଏଥିରେ ଲେଖକଙ୍କର ନାମ ନ ଥିଲେ ସୁଦ୍ଧା ଏହାର ଭାଷା ଓ ଧର୍ମଭାବ ସମନ୍ୱିତ ଚିନ୍ତାଧାରା ମଧୁସୂଦନୀ ଶୈଳୀ ମୁଦ୍ରା ବହନ କରିଥିବାର ଦେଖିବାକୁ ମିଳେ ।

*୬ । ପୂର୍ଣ୍ଣଧର୍ମ (ପ୍ରବନ୍ଧ) :* ନବସମ୍ବାଦ (୨୮।୪।୧୮୮୭) । ପ୍ରବନ୍ଧର ଶେଷରେ ଅଛି ଲେଖକ 'ଶ୍ରୀମ—' ।

*୭ । ନୂତନ ସଙ୍ଗୀତ (କବିତା) :* ସମ୍ବଲପୁର ହିତୈଷିଣୀ (୧୧।୧୧।୧୮୯୬) । ଏହା ହେଉଛି ୯ଟି ପଦର ଗୋଟିଏ କବିତା । ଏହାର ଅରମ୍ଭ ଏମିତି –

*"ଅହିଂସା ପରମଧର୍ମ ପୁଣ୍ୟ ମନ୍ତ୍ର ଉଚ୍ଚାରି*
*ଧନ୍ୟ ହୁଅ ନରନାରୀ ଜୀବହିଂସା ନିବାରି ।"*

*୮ । ମାନବ ଶିଶୁ (ପ୍ରବନ୍ଧ) :* ଶିକ୍ଷାବନ୍ଧୁ ୧।୩ ( = ମାର୍ଚ୍ଚ, ୧୮୯୪) ।

*୯ । ଅଧ୍ୟାତ୍ମ ତତ୍ତ୍ୱଚିନ୍ତା (ପ୍ରବନ୍ଧ) :* ଉତ୍କଳ ସାହିତ୍ୟ ୧।୧ (= ଜାନୁୟାରୀ, ୧୮୯୭) ।

*୧୦ । ଓଡ଼ିଆ ଭାଷା (ପ୍ରବନ୍ଧ) :* ସାହିତ୍ୟ ୧।୨ (= ଫେବୃୟାରୀ, ୧୮୯୭) ବଙ୍ଗଳାରୁ ଅନୁବାଦ ବୋଲି ପାଦଟୀକାରେ ଲେଖା ଅଛି ।

*୧୧ । ଭାଇଭଗିନୀ ସରବେ* (କବିତା)* ସାହିତ୍ୟ : ୧।୭ ( = ଜୁଲାଇ, ୧୮୯୭) ।

*. 'ଉତ୍କଳ ସାହିତ୍ୟ'ରେ ଏହା 'ସଙ୍ଗୀତ' ନାମରେ ପ୍ରକାଶ ପାଇଥିଲା । (ସଂ)

ଏହା ଗ୍ରନ୍ଥାବଳୀରେ ନାହିଁ ।

*୧୨ । ପରଲୋକଗତ ଶ୍ରୀ ଜଗନ୍ମୋହନ ରାୟ (ପ୍ରବନ୍ଧ) :* ସାହିତ୍ୟ ୨।୧୧ (=ନଭେମ୍ବର, ୧୮୯୮) । ଏହାର ଲେଖକ ମଧୁସୂଦନ ବୋଲି 'ବିବିଧ ପ୍ରସଙ୍ଗ'ରେ ବିଶ୍ୱନାଥ କର ସ୍ୱୀକାର କରିଛନ୍ତି (ପୃ : ୨୬୩) ।

ମଧୁସୂଦନ-ସାହିତ୍ୟ-ପରିଶୀଳନ କ୍ଷେତ୍ରରେ ଯେଉଁ ଲେଖାଗୁଡ଼ିକ ଏକାନ୍ତ ଉପଯୋଗୀ, ଆମେ ଏ ପର୍ଯ୍ୟନ୍ତ ସେଇମାନଙ୍କ ପ୍ରକାଶ-ସମୟ ଉପରେ ଦୃଷ୍ଟି ଦେଇ ଆସିଛୁ । ତାଙ୍କ ଲିଖିତ ବିଭିନ୍ନ ପାଠ୍ୟପୁସ୍ତକ ଉପରେ କୌଣସି ଗୁରୁତ୍ୱ ଦେଇ ନାହୁଁ । ତଥାପି, ତାଙ୍କ ଲିଖିତ ପାଠ୍ୟପୁସ୍ତକ ଯାହା ଆମ ନଜରକୁ ଆସିଛି ସେଗୁଡ଼ିକର ପରିଚୟ ଦେଖନ୍ତୁ । ଯଥା :—

*୧ । Oriya New Code Literature,* For Standards III and IV– ଉଚ୍ଚ-ପ୍ରାଥମିକ ସାହିତ୍ୟ କୁସୁମ (୩ୟ ଓ ୪ର୍ଥ ମାନ ନିମନ୍ତେ) । ମାକ୍‌ମିଲାନ କୋଃ ଦ୍ୱାରା ପ୍ରକାଶିତ । ଏଥିରେ କେତେକ ଗଦ୍ୟ ଓ ପଦ୍ୟ ଅଛି ଯଥା : — *ପରମେଶ୍ୱର, ଧର୍ମ, ବିଦ୍ୟା, ସୁଶୀଳତା, ପରିବାର, ଜନ୍ମମରଣ, ଗ୍ରୀଷ୍ମ, ବର୍ଷା, ଶରତ, ହେମନ୍ତ, ଶିଶିର, ଉତ୍କଳବନ୍ଦନା, ଜନ୍ମଭୂମି, ପୃଥିବୀ ପ୍ରତି, ବିଧିବିଧାନ, ଦୃଷ୍ଟାନ୍ତମାଳା, ସ୍ତବ, ଶ୍ରୀରାମ ବନବାସ ।* ଦେଖିବାର କଥା ଏ କବିତାଗୁଡ଼ିକରୁ ଅଧିକାଂଶ 'ଛାନ୍ଦମାଳା' (୧ମ ଭାଗ)ରେ ଅଛି ।

*୨ । ବାଲବୋଧ (୧୯୧୭ ସାଲ ସଂସ୍କରଣ)* – ୧ମ ଓ ୨ୟ ମାନ ନିମନ୍ତେ । ମାକ୍‌ମିଲାନ କୋଃ ଦ୍ୱାରା ପ୍ରକାଶିତ ।

*୩ । Oriya New Code Literature,* For Standards V and VI ଉଚ୍ଚ ପ୍ରାଥମିକ ସାହିତ୍ୟ କୁସୁମ (୫ମ ଓ ୬ଷ୍ଠ ମାନ ନିମନ୍ତେ) ।

*୪ । ସାହିତ୍ୟ ମଞ୍ଜରୀ* (ଉଚ୍ଚ ପ୍ରାଥମିକ ସାହିତ୍ୟ ପୁସ୍ତକ) : ମଧୁସୂଦନ ଓ ଅବନ୍ତୀ ଦେବୀ । ୧୯୦୨ ସାଲରେ ମାକ୍‌ମିଲାନ କୋଃ ଦ୍ୱାରା ପ୍ରକାଶିତ ।

*୫ । Oriya Middle Vernacular Geography Reader* (Trans) ମଧ୍ୟ ଛାତ୍ରବୃତ୍ତି ପରୀକ୍ଷାରେ ଭୌଗୋଳିକ ପାଠ (ଅନୁବାଦ) । ମାକ୍‌ମିଲାନଙ୍କ ଦ୍ୱାରା ପ୍ରକାଶିତ ।

୬ । *ଅଙ୍କ ପୁସ୍ତକ (୧ମ ଭାଗ)* – ୧ମ ଓ ୨ୟ ଷ୍ଟାଣ୍ଡାର୍ଡ଼ ନିମିତ୍ତ । ଲେଖକ – ମଧୁସୂଦନ ରାଓ ଓ ମଧୁସୂଦନ ଦାଶ । କଟକ ମିଶନ ପ୍ରେସରେ ମୁଦ୍ରିତ – ୧୯୦୧ ସାଲ ।

୭ । *ଅଙ୍କ ପୁସ୍ତକ (୨ୟ ଭାଗ)* – ୩ୟ ଠାରୁ ୬ଷ୍ଠ ଷ୍ଟାଣ୍ଡାର୍ଡ଼ ପର୍ଯ୍ୟନ୍ତ । ଲେଖକ – ମଧୁସୂଦନ ରାଓ ଓ ମଧୁସୂଦନ ଦାଶ । ୧୯୦୧ ସାଲ ।

୮ । *ଉଚ୍ଚ-ପ୍ରାଥମିକ ଅଙ୍କ ପୁସ୍ତକ* ( ୩ୟ ଓ ୪ର୍ଥ ମାନ ନିମିତ୍ତ) ମାକ୍‌ମିଲାନଙ୍କ ଦ୍ୱାରା ପ୍ରକାଶିତ ।

୯ । *ନିମ୍ନ ଶିକ୍ଷକ ସୁହୃଦ :* Edited on behalf of the Education Dept. Bengal, 1910.

୧୦ । *ଉଚ୍ଚ ଶିକ୍ଷକ ସୁହୃଦ :* (୧୯୧୨ ସାଲ) ଇତ୍ୟାଦି ।

ଖୋଜି ବସିଲେ ହୁଏତ ମଧୁସୂଦନଙ୍କ ଆଉ କିଛି ପାଠ୍ୟପୁସ୍ତକ ମିଳିଯାଇପାରେ । କିନ୍ତୁ ତାଙ୍କର ସାହିତ୍ୟ-କୃତି ଉପରେ ଆମର ଦୃଷ୍ଟି ଥିବାରୁ ଏପରି ପାଠ୍ୟ-ପୁସ୍ତକ ଆମ ଆଖିରେ ବିଶେଷ ମୂଲ୍ୟବାନ ବୋଲି ଅନୁଭୂତ ହୁଏ ନାହିଁ । 'ଉଚ୍ଚ ପ୍ରାଥମିକ ସାହିତ୍ୟ କୁସୁମ' (ଦୁଇ ଭାଗ), ବାଳବୋଧ ଓ ସାହିତ୍ୟ ମଞ୍ଜରୀ – ଏ ଚାରୋଟି ପୁସ୍ତକ ଯଥାର୍ଥ ସାହିତ୍ୟର ଅଧିକ ନିକଟବର୍ତ୍ତୀ ।

(ଏହି ପ୍ରବନ୍ଧଟି ଅଧାପକ ନଟବର ସାମନ୍ତରାୟଙ୍କ **'ଓଡ଼ିଆ ସାହିତ୍ୟରେ ସମୀକ୍ଷା ଓ ସଂଗ୍ରହ'**ରୁ ସଂଗୃହୀତ । ଏଥିପାଇଁ ଆମେ ସ୍ୱର୍ଗତ ସାମନ୍ତରାୟଙ୍କ ପରିବାର ନିକଟରେ ଚିରକୃତଜ୍ଞ । –ସମ୍ପାଦକ)



# କେତେକ ଦୁର୍ଲ୍ଲଭ ଫଟୋ ଚିତ୍ର



ଭକ୍ତକବି ମଧୁସୂଦନ ରାଓ



କବିପତ୍ନୀ ପଦ୍ମାବାଈ



ଭାଗୀରଥୀ ରାଓ
(ମଧୁସୂଦନଙ୍କ ପିତା)



ଜଗନ୍ନାଥ ରାଓ
(ମଧୁସୂଦନଙ୍କ ଅନୁଜ)



ରଘୁନାଥ ରାଓ
(ମଧୁସୂଦନଙ୍କ ବୈମାତ୍ରେୟ ଭ୍ରାତା)



ସାଧୁଚରଣ ରାୟ
(ଜଗନ୍ନାଥ ରାଓଙ୍କ ଜାମାତା ତଥା
ନାରୀକବି ରେବା ରାୟଙ୍କ ସ୍ୱାମୀ)



ଦର୍ଶନ ଅଧ୍ୟାପକ ହରନାଥ ଭଟ୍ଟାଚାର୍ଯ୍ୟ
(ଉତ୍କଳ ବ୍ରାହ୍ମ ସମାଜର ପ୍ରତିଷ୍ଠାତା)



ବାଗ୍ମୀ ବିଶ୍ୱନାଥ କର
(ଉତ୍କଳ ସାହିତ୍ୟର ସମ୍ପାଦକ)



ବିଜୟଚନ୍ଦ୍ର ମଜୁମଦାର
(ମଧୁସୂଦନଙ୍କ ଜ୍ୟେଷ୍ଠ ଜାମାତା)



ରାମକୃଷ୍ଣ ରାଓ
(ମଧୁସୂଦନଙ୍କ ଶ୍ୟାଳକ ଓ ଭଗିନୀ ପତି)




# ଅବନ୍ତୀ ଦେବୀ

ଅବନ୍ତୀ ଦେବୀଙ୍କ ଲିଖିତ 'ଭକ୍ତକବି ମଧୁସୂଦନ ଓ ଉତ୍କଳେ ନବଯୁଗ' ପୁସ୍ତକର ଅନ୍ତଃପତ୍ର

# ভক্তকবি মধুসূদন রাও ও উৎকলে নবযুগ

## প্রথম পরিচ্ছেদ

### ঐতিহাসিক পটভূমিকা

( শ্রীদিলীপকুমার বিশ্বাস )

পূর্বভারতের পক্ষে খ্রীষ্টীয় ঊনবিংশ শতক এক স্মরণীয় কাল। প্রতীচ্য শিক্ষা এবং য়ুরোপীয় জ্ঞানবিজ্ঞানের সংস্পর্শ হেতু ভারতীয় চিত্তে সংস্কার-মুক্তির যে দীপশিখাটি এই শতাব্দীতে জ্বলিয়া উঠিয়াছিল, তাহার ব্যাপক ও দীর্ঘস্থায়ী প্রভাব সর্বপ্রথম লক্ষ্য করা যায় ভারতবর্ষের পূর্বাঞ্চলে। আজ একথা ইতিহাসের ছাত্রমাত্রেই স্বীকার করিবেন যে, এই প্রভাবের মূল কেন্দ্র ছিল সাধারণ অর্থে বাঙ্‌লা দেশ, এবং বিশেষ অর্থে তৎকালীন ব্রিটিশ ভারতের রাজধানী এবং বাঙ্‌লা দেশের প্রধান নগরী, কলিকাতা। বাঙ্‌লা দেশের পূর্বে অবস্থিত আসাম ও পশ্চিম ও দক্ষিণ-পশ্চিম অঞ্চলের প্রতিবাসী প্রদেশদ্বয় বিহার ও ওড়িষ্যাতেও মূলতঃ বঙ্গদেশ হইতেই ধীরে ধীরে এই নব ভাবধারা সঞ্চারিত হইয়াছিল। আসাম ও বিহারের কথা বর্তমান প্রসঙ্গে আমাদের আলোচ্য নহে। কিন্তু একথা নিঃসঙ্কোচে বলা যায় ওড়িষ্যার নূতন যুগের সাহিত্যে ভক্তকবি মধুসূদনের আবির্ভাব এই বঙ্গ-প্রভাবেরই অন্যতম শুভকর নিদর্শন। কোনও সঙ্কীর্ণ প্রাদেশিক দৃষ্টিভঙ্গী হইতে একথা বলিতেছি না। কেননা ইহা যে যুগের কথা, তখন পর্যন্ত আঞ্চলিক বা প্রাদেশিক চেতনা আমাদের নবগঠিত জাতীয় মনোভাবকে খণ্ডিত করিতে আরম্ভ করে নাই। পরস্পরকে আমরা তখন প্রসন্ন চিত্তেই গ্রহণ করিতাম। কিন্তু সঙ্গে সঙ্গে ইহাও অবশ্য স্বীকার্য যে, ওড়িষ্যার ও ওড়িয়া সাহিত্যের পূর্বকথিত এই নূতন যুগকে কেবলমাত্র ঊনবিংশ শতকীয় বঙ্গ-প্রভাব-জাত বলিলে সেই উক্তির মধ্যে গুরুতর অসম্পূর্ণতা থাকিয়া যাইবে। বাঙ্‌লা দেশের ন্যায় ওড়িষ্যার ও একটি নিজস্ব অতি প্রাচীন সংস্কৃতি-ধারা আছে। প্রাচীন ও মধ্য যুগে বহু জাতি ও গোষ্ঠী বিভিন্ন সময়ে আসিয়া এখানে বাস করিয়াছে, ব্যবসা বাণিজ্য ধর্মপ্রচার প্রভৃতির মাধ্যমে উত্তর ও দক্ষিণ ভারতের বিভিন্ন অঞ্চলের সহিত ইহার যোগ স্থাপিত হইয়াছে, সমুদ্র-বাণিজ্য ও দক্ষিণ-পূর্ব এসিয়ায় উপনিবেশ

**ଅବନ୍ତୀ ଦେବୀଙ୍କ ଲିଖିତ 'ଭକ୍ତକବି ମଧୁସୂଦନ ଓ ଉତ୍କଳେ ନବଯୁଗ' ପୁସ୍ତକର ପ୍ରଥମ ପୃଷ୍ଠା**



ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ବାଣୀଭୂଷଣ, କାବ୍ୟତୀର୍ଥ, M.R.A.S.
(ମଧୁସୂଦନଙ୍କ ଛାତ୍ର ତଥା 'ବ୍ରହ୍ମଜ୍ଞ ମଧୁସୂଦନ'ର ପ୍ରଣେତା)

# ସଂସ୍କାରକ ଓ ସେବକ ।

ମାସିକପତ୍ର ।

[illegible]

## EDITORIAL NOTES.

Our beloved Viceroy Lord Ripon is going away. He will retire from the viceroyalty of India before the close of the present year. He is entitled to our love and gratitude for his just rule and liberal policy. We therefore sympathise with the movement that is going on among the Natives of Calcutta, having for its object the commemoration of His Excellency's deeds. His Excellency will be succeeded by Lord Dufferin.

We do not sympathise with the article, headed "The threatened Insolvency of Mayurbhooj" that appeared in the columns of our contemporary of the Utkaldarpan on the 14th of October. The allusion to Maharaja's would-be-wife is unbecoming. How could our contemporary know that Mr. Wylly did not mean to invest a large sum in productive public works? It smacks of too much of conservatism to say that money, when in box, is safe and not when invested in productive works or thriving business. It may be "a great pleasure" with our contemporary "to spend another's money", but with Mr. Wylly it is the discharge of a sacred duty, which, we have every reason to hope, he will perform satisfactorily.

A correspondent, named Dinanath Bandopadhya, wrote a letter to the Utkaldipika of 4th October, charging the Cuttack Municipality with neglect of duty, inexperience, incompetency, cruelty and potential murder. We do not know how his attacks, statements and suggestions have been received by the municipal commissioners and their Chairman, but to us the letter betrays egotism and vainness, rarely met with in our journalistic career. We recommend the communication to the notice of

We thankfully acknowledge the receipt of a volume on Orissa Canal oppression, sent to us by the Balasore National Society. We fear there are many exaggerated statements in the book. We have read other communications and articles on the same subject. What we do not understand is that though our contemporaries are busy in collecting facts, pointing out the evils of canal-revenue-administration; they do not care to write anything in favor of the High Level Canal which, we doubt not, will irrigate fields in days of scarcity of rain-water.

We are sorry to part with Mr. Larminie, who was the Commissioner of Orissa Division for about 7 months. Though a little hasty in his decisions in appeal-cases, he was an able and energetic officer. During the last few months, he had become popular among every section of the Native community. His subordinates were always pleased with him, as he never failed to recognise merit. The Cuttack Ice Company, founded by him, will continue to preserve his memory long after his departure from the Cuttack town.

---

[illegible]

ସଂସ୍କାରକ ଓ ସେବକ । - ଦ୍ୱିତୀୟ ଖଣ୍ଡ, ଦ୍ୱିତୀୟ ସଂଖ୍ୟା - ଅକ୍ଟୋବର ୧୮୮୪ ସାଲ

• ୩ୟ ଖଣ୍ଡ ୨ୟ ସଂଖ୍ୟା

# ଆଶା ।

ମାସିକ ପତ୍ରିକା ।

ଫାଲ୍‌ଗୁନ ସନ ୧୨୯୯

"ଉତ୍ସାହେନ ସାଲସ୍ୟ। ନିଶ୍ଚିତ୍ୟାଦପ୍ତ୍ରକେ"

ଭାରତ ଦେବା ଏଣ୍ ସମାଜେ ।

---

ସୂଚୀ



---

ଗ୍ରାହକଙ୍କ ଦ୍ଵାରା ପ୍ରକାଶିତ ।

---

CUTTACK.
PRINTED AT THE VICTORIA PRESS,
ORISSA PRINTING CORPORATION.
1892.

ଆଶା । - ତୃତୀୟ ଖଣ୍ଡ, ଦ୍ଵିତୀୟ ସଂଖ୍ୟା

## ବୃଦ୍ଧଜ ମଧୁସୂଦନ ।

ଗତ ଊନବିଂଶତାବ୍ଦୀରେ ଯେଉଁ ମହାତ୍ମାଙ୍କ ଭଗବତ୍ପ୍ରେମ ଏ ଉତ୍କଳରେ ଗୋଟିଏ ଉଜ୍ଜ୍ୱଳ ଦୃଷ୍ଟାନ୍ତ ହୋଇଅଛି, ଉତ୍କଳୀୟମାନଙ୍କ ଶିକ୍ଷା, ଚରିତ୍ର ଓ ସ୍ୱଧର୍ମାନୁରାଗର ଉନ୍ନତିକଳ୍ପେ ଯେ କଠୋର ତପସ୍ୟା ସାଧନ କରିଅଛନ୍ତି, ଯାହାଙ୍କ ସଦାଶୟ ମହଦାଦର୍ଶ ଚରିତ ପ୍ରଭାବରେ ଉତ୍କଳର ଅନେକ ଅନେକ ଶିକ୍ଷ୍ୟାନୁଶିକ୍ଷ୍ୟଙ୍କ ଜୀବନମାର୍ଗ ପରିବର୍ତ୍ତିତ ଓ ଉନ୍ନତ ହୋଇଅଛି, ଯାହାଙ୍କ ଧର୍ମାନୁପ୍ରାଣିତ ଏକନିଷ୍ଠ ସାହିତ୍ୟସେବା ଫଳରେ ଅଧୁନାତନ ଉତ୍କଳ ସାହିତ୍ୟକୋଷ ଅଦ୍ଭୁତ ଦୀପ୍ତି ଏବଂ ପୁଷ୍ଟି ଲାଭ କରିଅଛି, ସେହି ପୁଣ୍ୟାତ୍ମା ସ୍ୱର୍ଗତ ମଧୁସୂଦନଙ୍କ ଗୁଣକୀର୍ତ୍ତନ ଏ ଲେଖକର ଅଜ୍ଞାତ, ଏ କ୍ଷୀଣପ୍ରାଣର ଅନନ୍ତସ୍ପୃହା ଏବଂ ଏ କ୍ଷୁଦ୍ରଶକ୍ତିର ଅସାଧ୍ୟ ହେଲେହେଁ ନୈଷଧକାବ୍ୟବର୍ତ୍ତିତ "ବାଗ୍‌ଜନ୍ମବୈଫଲ୍ୟମସହ୍ୟଶଲ୍ୟଂ ଗୁଣାଧିକେ ବସ୍ତୁନି ମୌନିତା ଚେତ୍" ଏହି ଉକ୍ତିଟି ସ୍ମରଣ କରି ପ୍ରତ୍ୟବାୟଭାଗୀ ହେବା ଭୟରେ ଯଥାଜ୍ଞାତ ଯତ୍-କିଞ୍ଚିତ୍ ତାହାଙ୍କ ସମ୍ବନ୍ଧରେ ପ୍ରକାଶ କରିବାକୁ ଉଦ୍ୟୋଗୀ ହେଉଅଛି । "ଯାହାଙ୍କ ଯୋଗେ ଏ ଜୀବନ ଧନ୍ୟ ହୋଇଅଛି, ଯାହାଙ୍କୁ ଗୁରୁରୂପେ ଲାଭ କରି ଚିରଜୀବନ ସମ୍ମାନ ହୋଇଅଛି, ତାହାଙ୍କ ପୁଣ୍ୟଚରିତ୍ର ଅଳ୍ପ ଯଥାଶକ୍ତି କୀର୍ତ୍ତନ କଲେ ଏ ଜୀବନ ଅଧିକ କୃତକୃତ୍ୟ ହେବ" ମଣି ମୁଁ ଏ କ୍ଷୁଦ୍ର ପ୍ରବନ୍ଧରେ ମଧୁସୂଦନଙ୍କ ଜୀବନର ସ୍ଥୂଳ ଇତିହାସ ପ୍ରଦାନ କରୁଅଛି ।

ଜନ୍ମ, ବଂଶ ଓ ବାଲ୍ୟାବସ୍ଥା ।

ବ୍ରିଟିଶ ଅଧିକାର ପୂର୍ବେ ଉତ୍କଳ ଅର୍ଦ୍ଧଶତାବ୍ଦୀ-କାଳ ମହାରାଷ୍ଟ୍ର ଜାତିର ଶାସନାଧୀନ ଥିଲା, ଏ କଥା ପାଠକ ସମସ୍ତେ ଅବଶ୍ୟ ଜାଣନ୍ତି । ସେ ସମୟ ମଧ୍ୟରେ ଅଥବା ଖ୍ରୀଷ୍ଟୀୟ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ମହାରାଷ୍ଟ୍ରଦେଶରୁ ବିଶେଷତଃ

'ଉତ୍କଳ ସାହିତ୍ୟ' (ଷୋଡ଼ଶ ଭାଗ/ଦଶମ ସଂଖ୍ୟା, ପୃଷ୍ଠା-୩୦୪)ରେ ପ୍ରକାଶିତ 'ବୃଦ୍ଧଜ ମଧୁସୂଦନ' ପ୍ରଥମ ଅଧ୍ୟାୟର ପ୍ରଥମ ପୃଷ୍ଠା
('ବିଶ୍ୱଭାରତୀ' ସୌଜନ୍ୟରୁ ପ୍ରାପ୍ତ)

ଅବଧାରିତ କର ।" କିନ୍ତୁ ସେହି ଦିନ ସନ୍ଧ୍ୟା ଲୋପ ପାଇ ନ ଥିଲେହେଁ କଥା ବଡ଼ ଅସ୍ପଷ୍ଟ ହୋଇ ପଡ଼ିଲା । ସମସ୍ତେ ବିଶୁଷ୍କହୃଦୟରେ ଅତି ଦୀନ କ୍ଷୀଣ ସ୍ୱରରେ ଆସନ୍ନମରଣର ଆଶଙ୍କା କରି ଉଦ୍‌ବିଗ୍ନ ହୋଇପଡ଼ିଲେ । କେବଳ ସେହି ଏକା ନିରୁଦ୍‌ବେଗରେ ମରଣକୁ ବରଣ କରୁଥିଲେ । ଏହିରୂପେ ଶୋକ ଦୁଃଖରେ ନିସ୍ତବ୍ଧତାରେ ସେ ଦିନଟି କଟିଗଲା । ସେହି ସାଙ୍କେତିକ ୨୮ ତାରିଖ ଆସି ଉପସ୍ଥିତ ହେଲା । ପ୍ରଭାତ ସମୟରେ ଜଗନ୍ନାଥ ବାବୁ କଲିକତାରୁ ଆସି ଉପସ୍ଥିତ ହେଲେ । ପ୍ରାଣପ୍ରିୟ ବନ୍ଧୁଙ୍କୁ ଦେଖିବା ଉତ୍ତାରେ ତାଙ୍କର ଶେଷଶ୍ୱାସ ପ୍ରବାହିତ ହେବାକୁ ଲାଗିଲା । ଅନ୍ତକ୍ଷଣ ଭଗବାନ କୀର୍ତ୍ତନ ସହିତ ନୀରବରେ ରହି ଭକ୍ତ-ସନ୍ତାନ ମଧୁସୂଦନ ବାବୁ ତୋଳି ସେହି ଜନନୀଙ୍କ କୋଳକୁ ଯିବାପାଇଁ ଯେପରି ସଙ୍କେତ କଲେ । ଦେଖୁଁ ଦେଖୁଁ ତାଙ୍କର ଅମର ଆତ୍ମା କ୍ଷଣେ ଦେହକୁ ଦିବ୍ୟ ଜ୍ୟୋତିରେ ଉଦ୍ଭାସିତ କରିଦେଇ ପୁଣ୍ୟଧାମକୁ ପ୍ରସ୍ଥାନ କଲା । ଏହିରୂପେ ମଧୁସୂଦନଙ୍କର ଜୀବନନାଟିକାରେ ଯବନିକା ପତନ ହେଲା ।

ବିଧାତା ଯେଉଁ କାର୍ଯ୍ୟ ସମ୍ପାଦନ ନିମନ୍ତେ ମଧୁସୂଦନଙ୍କୁ ଏ ପୃଥିବୀକୁ ପ୍ରେରଣ କରିଥିଲେ, ତାହା ସମ୍ପନ୍ନ ହୋଇଅଛି । ଏକନିଷ୍ଠଭାବରେ ଜନନୀରୂପିଣୀ ମାତୃଭୂମି ଏବଂ ମାତୃଭାଷାର ସେବା କରି ତାଙ୍କର ଜୀବନ ଧନ୍ୟ ହୋଇଅଛି । ତାଙ୍କର ନଶ୍ୱରଦେହ ଅନ୍ତର୍ହିତ ହୋଇଅଛି ସତ୍ୟ, କିନ୍ତୁ ଅମର ଆତ୍ମା ଏ ଭୂମିରେ ଯେଉଁ ପ୍ରଭାବ ବିସ୍ତାର କରିଅଛି ଏବଂ କରୁଅଛି, ତାହା କଦାପି ଅନ୍ତର୍ହିତ ହେବ ନାହିଁ । ତାହାଙ୍କର ସଦ୍‌ଗୁଣୋଜ୍ଜ୍ୱଳ ଜୀବନ ଶତ ଶତ ହୃଦୟରୁ ମୋହାନ୍ଧକାର କ୍ରମଶଃ ଦୂର କରୁଅଛି ଏବଂ କରିବ । ଆଶାର କଥା, ସେହି ମହାପ୍ରାଣଙ୍କୁ ଆଦର୍ଶ ରଖି କେତେ କେତେ ନୂତନ ମଧୁସୂଦନ ଦିନେ ଏ ଭୂମିରୁ ମସ୍ତକ ଉତ୍ତୋଳନ କରିବେ ଏବଂ ପରଲୋକରେ ତାହାଙ୍କର ଆତ୍ମା ଅନନ୍ତ ଉନ୍ନତିପଥରେ ଅଗ୍ରସର ହେବ । ତାଙ୍କର ଜାତୀୟ ସାହିତ୍ୟ-ସହିତ ମାତୃଭାଷାର ସାହିତ୍ୟକୁ ପବିତ୍ର ଏବଂ ଗୌରବାନ୍ୱିତ କରିଅଛି । ଯେ ପର୍ଯ୍ୟନ୍ତ ଉତ୍କଳଭାଷାର ସତ୍ତା ଥିବ, ସେ କାଳଯାଏ ଏ ଗୌରବ କଦାପି ଲୋପ ପାଇବ ନାହିଁ, ତାହାଙ୍କର ବଳ ଏବଂ ଧର୍ମର ଜ୍ୟୋତିରେ ସେ ଜନ୍ମଭୂମି ଉତ୍କଳର ଯେ ମହୋପକାର ସାଧନ କରିଅଛନ୍ତି, ସେଥିପାଇଁ ସେ ଚିରକାଳ ଉତ୍କଳସନ୍ତାନଙ୍କର ହୃଦୟାରାଧ୍ୟ ହୋଇ ରହିବେ ।

ଆମ୍ଭେମାନେ ଏତିକିରେ ମଧୁସୂଦନଙ୍କ ପୁଣ୍ୟ ଚରିତର ଉପସଂହାର କରୁଅଛୁଁ (ଏଥିରେ କେବଳ ତାଙ୍କର ଗୁଣାବଳୀର ପ୍ରଶଂସା ଦେଖି କାହାରିକୁ ଏପରି କହିବାର ଶୁଣିଅଛୁଁ ଯେ, ମଧୁ ବାବୁଙ୍କର କଣ କିଛି ଦୋଷ ନ ଥିଲା ? ପାଠକମାନେ କ୍ଷମା କରିବେ । ଏ ଦୀନ ଲେଖକ ତାଙ୍କର ଦୋଷ-ଗୁଣର ଖୋଜ ଖୋଜି ସଂଗ୍ରହ କରି ସର୍ବସମକ୍ଷରେ ପ୍ରକାଶ କରିବାପାଇଁ ଲେଖନୀ ଧାରଣ କରି ନାହିଁ । କୌଣସି ଜୀବନଚରିତଲେଖକ ମଧ୍ୟ ତାହା କରି ପାରନ୍ତି ନାହିଁ । ମହାତ୍ମାମାନଙ୍କର ସଦ୍‌ଗୁଣର ଅନୁକରଣ ନିମନ୍ତେ ଲୋକେ ଜୀବନଚରିତ ପାଠ କରିଥାନ୍ତି । ସେଥିରେ ଦଶଟି ଗୋଟିଏ ଦୋଷ ଖୋଜି ଉଚ୍ଚାରି ଆଣି ଦେଖାଇଲେ କି ସୁଫଳ ହେବ, ବୁଝି ପାରିଲୁ ନାହିଁ । ମନୁଷ୍ୟମାତ୍ରେ ଭ୍ରମପ୍ରମାଦ-ପୂର୍ଣ୍ଣ । ମାନବୋଚିତ ଭ୍ରମପ୍ରମାଦ ତାଙ୍କର ନ ଥିଲା, ଏହା ଆମ୍ଭେମାନେ କହୁ ନାହୁଁ । ତାଙ୍କର ସେ ଦୁର୍ବଳତା ଥିଲା, କିନ୍ତୁ ସେ ସବୁ ତ୍ରୁଟିକୁ ସାଧାରଣ ଧରିନେଲେ, ତାଙ୍କ ଜୀବନର ଯାହା ବିଶେଷତ୍ୱ ବା ଯାହା ମହତ୍ତ୍ୱ, ତାହାକୁ ହିଁ ଯଥାର୍ଥ ସାଧାରଣଙ୍କ ସମକ୍ଷରେ ଉପସ୍ଥାପିତ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ଥିଲା । ଲେଖକର ବିଶ୍ୱାସ, ଏତଦ୍ଦ୍ୱାରା ସତ୍ୟର ଅପଳାପ ହୋଇ ନାହିଁ । ଏ ପ୍ରବନ୍ଧରେ ମଧୁସୂଦନଙ୍କ ସାହିତ୍ୟସେବା ସମ୍ବନ୍ଧରେ କିଛି ଆଲୋଚନା କରିବାକୁ ଇଚ୍ଛା କରିଥିଲୁ, କିନ୍ତୁ ନାନା କାରଣରୁ ସେ ପ୍ରସଙ୍ଗ ଏହିକ୍ଷଣି ବର୍ଜନ କରି ସହୃଦୟ ପାଠକମାନଙ୍କଠାରୁ ବିଦାୟ ଗ୍ରହଣ କରୁଅଛୁଁ ।

—:o:—

ଶ୍ରୀ ମୃତ୍ୟୁଞ୍ଜୟ ରଥ ।

‘ଉତ୍କଳ ସାହିତ୍ୟ’ (ଅଷ୍ଟାଦଶ ଭାଗ/ଦ୍ୱାଦଶ ସଂଖ୍ୟା, ପୃଷ୍ଠା-୫୦୭)ରେ ପ୍ରକାଶିତ ‘ବ୍ରହ୍ମଜ୍ଞ ମଧୁସୂଦନ’ ଅନ୍ତିମ ଅଧ୍ୟାୟର ଶେଷ ପୃଷ୍ଠା

(‘ବିଶ୍ୱଭାରତୀ’ ସୌଜନ୍ୟରୁ ପ୍ରାପ୍ତ)

ମଧୁସୂଦନ ପ୍ରବନ୍ଧରେ ଜୀବନୀ ଅପେକ୍ଷା ପୃଷ୍ଠଭୂମିର ବୈଚିତ୍ର୍ୟ ଏକାନ୍ତ ଲକ୍ଷଣୀୟ ବିଷୟ। ଏହାଙ୍କ ଜୀବନୀ ସହିତ ଊନବିଂଶ ଶତାବ୍ଦୀର ଅଜସ୍ର ଘଟଣା ଓ ବ୍ୟକ୍ତିବିଶେଷଙ୍କ ପରିଚୟ ଉପସ୍ଥାପିତ ହେବାଦ୍ୱାରା ଏ ପ୍ରବନ୍ଧର ସାମଗ୍ରିକ ରୂପରେ ବହୁ ବୈଚିତ୍ର୍ୟର ସମାବେଶ ସମ୍ଭବପର ହୋଇପାରିଅଛି। ମଧୁସୂଦନଙ୍କ ବାଲ୍ୟ ଜୀବନଠାରୁ ଅବସର ଗ୍ରହଣ ସମୟ ପର୍ଯ୍ୟନ୍ତ ଜୀବନ ଭିତରେ ବହୁ ଛୋଟବଡ଼ ଘଟଣାର ଉଲ୍ଲେଖ, ଏପରିକି ତାଙ୍କ ପୁତ୍ରକନ୍ୟାଙ୍କ ଜନ୍ମବିବାହର ସମୟ, ବ୍ରାହ୍ମଧର୍ମ ପ୍ରଚାର, ସାଧୁରାୟ, ପ୍ୟାରୀମୋହନଙ୍କ ଜୀବନୀ– ଏହିପରି ବହୁ ବିଷୟ ଏଥିରେ ସ୍ଥାନ ପାଇଥିବାରୁ ପ୍ରବନ୍ଧଟିର ଗୁରୁତ୍ୱ ଓ ପ୍ରାଧାନ୍ୟ ସ୍ୱତଃ ଅନୁଭୂତ ହୋଇଥାଏ। ପରବର୍ତ୍ତୀ ସମୟରେ ଯେଉଁମାନେ ମଧୁସୂଦନଙ୍କ ଜୀବନୀ ତଥା ତାଙ୍କ ସାହିତ୍ୟ ଉପରେ କିଛି ଆଲୋଚନା କରିଅଛନ୍ତି, କିମ୍ବା ଯେଉଁମାନେ ଆଧୁନିକ ସାହିତ୍ୟର ମୂଲ୍ୟବୋଧ-ପରିମାପ ଦିଗରେ ତା'ର ପୃଷ୍ଠଭୂମିର ଚିତ୍ର ଦେଇଅଛନ୍ତି, ସେମାନଙ୍କ ମଧ୍ୟରୁ ପ୍ରାୟ ଅଧିକାଂଶ ଏହି ପ୍ରବନ୍ଧଠାରେ ଋଣୀଥିବାର ଦେଖିବାକୁ ମିଳେ।

ନଟବର ସାମନ୍ତରାୟ





ଫ୍ରେଣ୍ଡସ୍ ପବ୍ଲିଶର୍ସ